# ଚତୁର ବିନୋଦ

ବ୍ରଜନାଥ ବଡ଼ଜେନା

ସଂପାଦନା:
ଅଧ୍ୟାପକ ଡକ୍ଟର ଦେବେନ୍ଦ୍ର ମହାନ୍ତି



# ଚତୁର ବିନୋଦ

ସମ୍ପାଦନା

ଡକ୍ଟର ଦେବେନ୍ଦ୍ର ମହାନ୍ତି



ଚତୁର ବିନୋଦ

ସମ୍ପାଦନା :
ଡକ୍ଟର ଦେବେନ୍ଦ୍ର ମହାନ୍ତି

ପ୍ରକାଶକ :
ସହଦେବ ପ୍ରଧାନ
ଫ୍ରେଣ୍ଡସ୍ ପବ୍ଲିଶର୍ସ
ବିନୋଦ ବିହାରୀ, କଟକ-୨

ନୂତନ ସଂସ୍କରଣ
୧୯୭୮

ପ୍ରଚ୍ଛଦପଟ :
ଶ୍ରୀ ଉଦୟନାରାୟଣ ଜେନା

ମୁଦ୍ରାକର :
ଦି' ଆରିଷ୍ଟୋ ପ୍ରିଣ୍ଟ
କଟକ-୨

ମୂଲ୍ୟ ଆଠଟଙ୍କା ମାତ୍ର

CHATURA BINODA

Editor :
**Dr. Debendra Mohanty**

Publisher :
**Sahadev Pradhan**
Friend's Publishers
Binodbehari, Cuttack-2

First Edition
1978

Cover Design:
**Udayanarayan Jena**

Printer :
**The Aristo Print**
Cuttack-2

Price Rs. 8-00 only

# ସୂଚୀ

# ଭୂମିକା

**ଅଷ୍ଟାଦଶ ଶତାବ୍ଦୀ ଓ କବି ବ୍ରଜନାଥ :—** କଳାର ନିରବଚ୍ଛିନ୍ନ ଓ ଅଖଣ୍ଡ ପ୍ରବାହକୁ ଖଣ୍ଡ ଖଣ୍ଡ କରି ଯୁଗ ଓ ଶତାବ୍ଦୀର ପରିକଳ୍ପନା । ରାଜନୈତିକ ଓ ସାହିତ୍ୟିକ ପ୍ରକୃତି ଓ ପ୍ରବୃତ୍ତିକୁ ବିଚାର କରି ଯୁଗର ପ୍ରତିଷ୍ଠା କରାଯାଇଥାଏ । ଅଷ୍ଟାଦଶ ଶତାବ୍ଦୀରେ ରାଜନୈତିକ ଚେତନା ଅପେକ୍ଷା ସାହିତ୍ୟିକ ସୌଷ୍ଠବ ବିଶେଷ ଭାବରେ ପ୍ରକାଶ ଲାଭ କରି ଯୁଗର ନିୟାମକ ହୋଇ ପାରିଥିଲା । ଅଷ୍ଟାଦଶ ଶତାବ୍ଦୀର କାବ୍ୟ ସାହିତ୍ୟ ଏକ ଅଳଙ୍କୃତ ରୂପ ସୌନ୍ଦର୍ଯ୍ୟରେ ବିମଣ୍ଡିତ ହୋଇ କାବ୍ୟ ଯୁଗ ବା ରୀତିଯୁଗ ରୂପେ ଅଭିହିତ ହୋଇଥିଲା । ଶବ୍ଦ ବିଭବ ଓ ଅର୍ଥ ଗୌରବର ସାର୍ଥକ ସରଣୀ ନିର୍ମାଣ କରିବାରେ ଅଗ୍ରଣୀ ହେଲେ କାବ୍ୟର କବି ଉପେନ୍ଦ୍ର ଭଞ୍ଜ । ଉପେନ୍ଦ୍ର ସତେ ଯେପରି ବିଦଗ୍ଧ ରସିକମାନଙ୍କର ମନର ବାସନାକୁ ନିଃଶେଷିତ କରି ରୂପ ଦେଇଥିଲେ ତାଙ୍କର ବିଭିନ୍ନ କାବ୍ୟ କବିତାରେ । କଳାକୁଶଳୀ ସ୍ରଷ୍ଟା ଶବ୍ଦର ତୂଳୀକରେ ଭାବର ରଙ୍ଗ ଲେପନ କରି ଅପୂର୍ବ ରସ ସୌନ୍ଦର୍ଯ୍ୟରେ ମଣ୍ଡିତ କରିଥିଲେ ତାଙ୍କର କାବ୍ୟ ସୁନ୍ଦରୀଙ୍କୁ । ପ୍ରତ୍ୟେକ କାବ୍ୟ ଅନ୍ୟଠାରୁ ବଳି ସୁନ୍ଦର । ତଥାପି ଉପେନ୍ଦ୍ର ସାହିତ୍ୟ ହୋଇପଡ଼ିଲା ବୈଚିତ୍ର୍ୟହୀନ । ଗତାନୁଗତିକ । ନାୟକ ନାୟିକାଙ୍କର ରୂପ ଗୁଣରେ ପାର୍ଥକ୍ୟ ନାହିଁ ; ପ୍ରଭେଦ ନାହିଁ ତାଙ୍କର ଜୀବନ ଲିପିରେ । ସବୁ ସମାନ—ସବୁ ସ୍ପନ୍ଦନହୀନ ସୁନାର ପ୍ରତିମା । କିନ୍ତୁ ଶବ୍ଦର ସୌନ୍ଦର୍ଯ୍ୟରେ, ବର୍ଣ୍ଣନାର ବିଳାସ ବିଭବରେ, ଛନ୍ଦ ଓ ରାଗରାଗିଣୀର ମଧୁର ଝଙ୍କାରରେ ଓ ଅଳଙ୍କାରର ମନକିଣା ନିକ୍ୱଣରେ ଭଞ୍ଜ ଏପରି କାବ୍ୟ ନାୟିକା ରଚନା କରିଗଲେ ଯାହା ତାଙ୍କର ଉତ୍ତର ପୁରୁଷକୁ ମଧ୍ୟ ମୁଗ୍ଧ ବିସ୍ମିତ ବିହ୍ୱଳିତ କରି ରଖିଲା ଶତାବ୍ଦୀ ଧରି । ଦୀନକୃଷ୍ଣ, ଅଭିମନ୍ୟୁ, ଭକ୍ତଚରଣ, କବିସୂର୍ଯ୍ୟ, ଯଦୁମଣି ପ୍ରଭୃତି ରୀତିଯୁଗ ବା ଉପେନ୍ଦ୍ର ଯୁଗର ଏକ ଏକ ସୁଯୋଗ୍ୟ ସାହିତ୍ୟ ରଥୀ ।

କାବ୍ୟ ଯୁଗର ପ୍ରତିଷ୍ଠା କାଳରେ ବ୍ରଜନାଥ ବଡ଼ଜେନାଙ୍କର ଆବିର୍ଭାବ । ତେଣୁ ଏଯୁଗର ଚରିତ୍ର ଧର୍ମ ତାଙ୍କ ସୃଷ୍ଟିରେ ପ୍ରତିଫଳିତ ହୋଇଛି ସ୍ୱାଭାବିକ ନିୟମରେ । କିନ୍ତୁ ସେ ଥିଲେ ଅସାମାନ୍ୟ ଶିଳ୍ପୀ । ତାଙ୍କର ଥିଲା ମୌଳିକ ଚେତନା । ତେଣୁ ଯୁଗର ଆକାଂକ୍ଷା ସହିତ ଜୀବନର ଆକାଂକ୍ଷାକୁ ମଧ୍ୟ ସେ ସମାନ ଗୌରବ ପ୍ରଦାନ କରିଛନ୍ତି । ଗତାନୁଗତିକତାର ମସୃଣ ପଥରେ ଚାଲି ଚାଲି ସେ ଅନୈଃଶ୍ୱାସୀ ହୋଇ ପଡ଼ିଛନ୍ତି । ତାଙ୍କର ନିଜସ୍ୱ ହୋଇ ଆପଣାର ହୋଇ ଯେଉଁ ଚିନ୍ତା-ଧନ ରହିଛି, ତାକୁ ସେ ବିତରଣ କରିଛନ୍ତି ଅକୃପଣ ହସ୍ତରେ ନୂତନ ପଥଟିଏ ନିର୍ମାଣ କରି । ଅନିଶ୍ଚିତତାର ଆତଙ୍କରେ ସେ ସଙ୍କୁଚିତ, କିନ୍ତୁ ନୂତନର ପଦ ସଞ୍ଚାରରେ ପରିତୃପ୍ତ । ସେ ଜଣେ ସ୍ରଷ୍ଟା, ମୌଳିକ ସ୍ରଷ୍ଟା, ତାଙ୍କ ସୃଷ୍ଟି ଭିତରେ ତାର ସ୍ୱାକ୍ଷର ଚିହ୍ନିତ ।

**କବି ଜୀବନ ଚିତ୍ର :—** ସୃଷ୍ଟିକୁ ବିଚାର କରିବାକୁ ହେଲେ, ଚିହ୍ନିବାକୁ ହେଲେ ସ୍ରଷ୍ଟାର ପରିଚୟ ଏକାନ୍ତ ପ୍ରୟୋଜନ । ସ୍ରଷ୍ଟା ତା' ସୃଷ୍ଟିକୁ ନିରପେକ୍ଷ ଭାବରେ

ରୂପ ବଦଳେ, ତାର ସୃଷ୍ଟି ଭିତରେ ରହିଯାଏ ନିଜର ସ୍ୱାକ୍ଷର । ଶତଧାରରେ ପ୍ରବାହିତ ଜୀବନ ସ୍ରୋତର ଗୋଟିଏ ଗୋଟିଏ ରୂପ ଆଙ୍କି ହୋଇଯାଏ, ସୃଷ୍ଟି ଭିତରେ । କେଉଁଠି ତାହା ପ୍ରକାଶ୍ୟ, କେଉଁଠି ବା ପ୍ରଚ୍ଛନ୍ନ । ପୁରୁଣା କବିଙ୍କ ରଚନାରେ ବ୍ୟକ୍ତି ପ୍ରଶସ୍ତି ନାହିଁ, ଅଛି ବ୍ୟକ୍ତିତ୍ୱର ରୂପ । କିନ୍ତୁ କାବ୍ୟଯୁଗର କବିଗଣ ନିଜର ଓ ନିଜ ବଂଶର ଇତିବୃତ୍ତ ରଚନା କରି ଯାଇଛନ୍ତି ବିଭିନ୍ନ ରଚନାରେ । ସେମାନଙ୍କ କୃତିରେ ଜୀବନ ଚିତ୍ର ସମ୍ପୂର୍ଣ୍ଣ ନୁହେଁ, ଆଂଶିକ ମାତ୍ର । ପରବର୍ତ୍ତୀ କାଳରେ ତତ୍ତ୍ୱସନ୍ଧିତ୍ସୁ ସମାଲୋଚକଗଣ ତାକୁଇ ଆଧାର କରି, କିମ୍ବଦନ୍ତୀ ଉପରେ ବିଶ୍ୱାସ ରଖି କବିଙ୍କ ଜୀବନୀ ସମ୍ବନ୍ଧରେ ଏକ ଆନୁମାନିକ ଚିତ୍ର ଅଙ୍କନ କରିଥାନ୍ତି । ଏହା ସମ୍ପୂର୍ଣ୍ଣ ସତ୍ୟଭିତ୍ତିକ ନୁହେଁ । କିନ୍ତୁ କେତେକାଂଶରେ ବିଶ୍ୱାସଯୋଗ୍ୟ । କବି ବଡ଼ଜେନା ମଧ୍ୟ ମଧ୍ୟଯୁଗର କବିମାନଙ୍କର ଆଦର୍ଶକୁ ଅନୁସରଣ କରି ବିଭିନ୍ନ କାବ୍ୟ କବିତାରେ ନିଜ ବଂଶ ପରିଚୟ, ଶିକ୍ଷାଦୀକ୍ଷା ସମ୍ବନ୍ଧରେ ମତବ୍ୟକ୍ତ କରିଛନ୍ତି । ତାଙ୍କର ରଚିତ କାବ୍ୟ ଅନୁସରଣ କଲେ ଜଣାଯାଏ ଯେ ସେ ରଘୁ ଅରକ୍ଷିତଙ୍କ ବଂଶଧର । ରଘୁ ଅରକ୍ଷିତ ଷୋଡ଼ଶ ଶତାବ୍ଦୀର ଜଣେ ଖ୍ୟାତନାମା ଭକ୍ତ । କବିଙ୍କ ଭାଷାରେ—

ବର୍ଣ୍ଣରେ ଅଟୁ ଆମ୍ଭେ ଶିଷ୍ଟ କରଣ
ରଘୁ ଅରକ୍ଷିତଙ୍କ ବଂଶେ ନିପୁଣ ଯେ ।

(କେଳି କଳାନିଧି, ୧୬ଶ ଛାନ୍ଦ)

ବସତି ସ୍ଥଳ ସେ ଢେଙ୍କାନାଳ    କରି କେବଳ ଥାଇଁ ନିଶ୍ଚଳ
ହୋଇ ଶ୍ରୀବଳ-ଭଦ୍ର ଗୋପାଳ ମୋହର ବଳ ଯେ ।

(ବିଚକ୍ଷଣା, ୯ମ ଛାନ୍ଦ)

ବ୍ରଜନାଥ ବୋଲିଣ ମୋର ଯେ ନାଁ ।
ରାଜପଦ ଅଟଇ ବଡ଼ଜେନା । (ଗୋପୀବିଳାପ, ୬ଷ୍ଠ ବୋଲି)

ଶ୍ରୀ ନୀଳାଦ୍ରି ଥିଲି ବାସ    ରଘୁ ଅରକ୍ଷିତ ବଂଶ
ମୁହିଁ ରତ୍ନାକରୁଁ ବିଷ ଜନ୍ମିଲି ଆସେ

(ଶ୍ୟାମ ରାସୋତ୍ସବ, ୧୦ମ ଛାନ୍ଦ)

ବାଲୁକେଶ୍ୱର ପଟ୍ଟନାୟକଙ୍କର । ଭାଗ୍ୟରେ ହେଲୁ ଆମ୍ଭେ ଗୃହକୁମର ଯେ ।
ବୃନ୍ଦେହେଁ ପିତାଙ୍କ ସୁକୃତ ବଳରେ । କବିତା ପ୍ରସରିଲା ନାନା ପ୍ରକାରେ ଯେ ।
ଅଗ୍ରଜ ଗୋପୀନାଥ ପଟ୍ଟନାୟକ । ଗୁଣବନ୍ତରେ ତାଙ୍କୁ ଜାଣନ୍ତି ଲୋକ ଯେ ।
ତାଙ୍କ ସମସ୍ତ ଗଲା ସଦାଚରଣେ । ଅନ୍ତେ ପଶିଲେ ସଦାନନ୍ଦ ଚରଣେ ଯେ ।
ତାଙ୍କ ଅନୁଜ ଜଗନ୍ନାଥ ଯେ ନାମ । ଗୁଣବନ୍ତେ ସେ ରାଜକାର୍ଯ୍ୟକୁ କ୍ଷମ ଯେ ।
କବିଭୂଷଣ ପଟ୍ଟନାୟକ ପଦ । ଏଥୁଁ କବିତା ଶକ୍ତି ଜାଣ କୋବିଦ ଯେ ।
ଲୋକନାଥ ନାମରେ କନିଷ୍ଠ ଭ୍ରାତ । କବିତ୍ୱ ଭକ୍ତି ମାର୍ଗେ ମହାପ୍ରଶସ୍ତ ଯେ ।

(ସମର ତରଙ୍ଗ, ୭ମ ଛାନ୍ଦ)

ଉପରୋକ୍ତ ପଦଗୁଡ଼ିକ ଅନୁଧ୍ୟାନ କଲେ ଜଣାଯାଏ ଶ୍ରୀକ୍ଷେତ୍ରରେ କବିଙ୍କର ପୂର୍ବ ବାସ ଥିଲା । ଦୁର୍ଭାଗ୍ୟବଶତଃ ତାଙ୍କର ପୂର୍ବ ପୁରୁଷଗଣ ପୁରୀ ତ୍ୟାଗ କରି ଖୋର୍ଦ୍ଧାରେ ଆସି ବସବାସ କଲେ ଓ ସେଠାରୁ ଯାଇ ଢେଙ୍କାନାଳରେ ତାଙ୍କର ଷଷ୍ଠ ପୁରୁଷ ବସତି ନିର୍ମାଣ କଲେ । କବି ଏକ ଐତିହାସିକ ବଂଶରେ ଜନ୍ମଗ୍ରହଣ କରିଥିଲେ ବୋଲି ନିଜକୁ ଗୌରବାନ୍ୱିତ ମନେ କରିଛନ୍ତି । ଶିଷ୍ଟ କରଣ କୁଳରେ ତାଙ୍କର ଜନ୍ମ । ପୁଣି ସେ ଥିଲେ ଏକ ସଂସ୍କୃତିଶୀଳ ପରିବାରର ସୁଯୋଗ୍ୟ ସନ୍ତାନ । ତାଙ୍କର ପିତା ବାଲ୍ମିକେଶ୍ୱର ଓ ଜ୍ୟେଷ୍ଠପିତା ଶାରଙ୍ଗଧର ପଟ୍ଟନାୟକ । ବାଲ୍ମିକେଶ୍ୱରଙ୍କର ଚାରିଗୋଟି ପୁତ୍ର ମଧ୍ୟରୁ ଜ୍ୟେଷ୍ଠ ଗୋପିନାଥ ଯେପରି ଗୁଣବାନ୍ ସେହିପରି ଭକ୍ତିମାନ୍ ପୁରୁଷ ଥିଲେ । ଦ୍ୱିତୀୟ ପୁତ୍ର ଜଗନ୍ନାଥ କବିତ୍ୱ ଗୁଣରେ ରାଜାଙ୍କୁ ମୁଗ୍ଧ କରି କବିଭୂଷଣ ଉପାଧି ଲାଭ କରିଥିଲେ । ସର୍ବକନିଷ୍ଠ ଲୋକନାଥ ରାଜାଙ୍କଠାରୁ ରାଉତରାୟ ଉପାଧିରେ ଭୂଷିତ ହୋଇଥିଲେ । ଆଉ ବ୍ରଜନାଥଙ୍କ ରାଜ ଦତ୍ତ ଉପାଧି ଥିଲା ବଡ଼ଜେନା । ଅନୁମାନ କରାଯାଏ ୧୭୩୦ ଖ୍ରୀଷ୍ଟାବ୍ଦରେ ଢେଙ୍କାନାଳର କାଦମ୍ବ ଗ୍ରାମରେ କବିଙ୍କର ଆବିର୍ଭାବ, ଆଉ ତିରୋଭାବ ୧୭୯୫ ଖ୍ରୀଷ୍ଟାବ୍ଦରେ । କବି ଦୀର୍ଘକାଳ ଧରି ଢେଙ୍କାନାଳରାଜାଙ୍କର ଆଶ୍ରିତ ଥିଲେ ବୋଲି ଜଣାଯାଏ ।

କବି ଥିଲେ ଜଣେ ଭାଷା ବିଦଗ୍ଧ ପୁରୁଷ । ବିଭିନ୍ନ ଭାଷାରେ ତାଙ୍କର ପାଣ୍ଡିତ୍ୟ ଥିଲା ଓ ତାର ପ୍ରକାଶ ଘଟିଛି ତାଙ୍କ ରଚିତ କାବ୍ୟ କବିତାରେ । ସଂସ୍କୃତ, ପ୍ରାକୃତ ହିନ୍ଦୁସ୍ତାନି, ବଙ୍ଗଳା, ତେଲେଙ୍ଗୀ ଓ ଓଡ଼ିଆ ଭାଷାରେ ସେ କବିତା ରଚନା କରିଛନ୍ତି ବୋଲି ତାଙ୍କୁ ସୁଧାକର ପଟ୍ଟନାୟକ 'ଷଡ଼ଭାଷା-ବାଣୀ ବିଳାସିନୀ-ଭୁଜଙ୍ଗ' ରୂପେ ଆଖ୍ୟାୟିତ କରିଛନ୍ତି । କେବଳ ସେତିକି ନୁହେଁ, ଲଳିତକଳାରେ ମଧ୍ୟ ସେ ଥିଲେ ପାରଦର୍ଶୀ । ଜୀବନର ଗଭୀର ଓ ବ୍ୟାପକ ଅନୁଭୂତି ସଙ୍ଗେ ବିଭିନ୍ନ ଭାଷା ଓ ଶାସ୍ତ୍ରରେ ତାଙ୍କର ଯେଉଁ ପାଣ୍ଡିତ୍ୟ ଥିଲା, ଉଭୟର ସମନ୍ୱୟରେ ବ୍ରଜନାଥ ବଡ଼ଜେନା ଥିଲେ ଜଣେ ଅନନ୍ୟ ପ୍ରତିଭାଧର କାବ୍ୟ ଶିଳ୍ପୀ ।

ଦାରିଦ୍ର୍ୟ ଥିଲା କବିଙ୍କର ଚିରସଙ୍ଗୀ । କିନ୍ତୁ କବି ମାନସ ଚାହିଁଥିଲା ସ୍ୱାଚ୍ଛନ୍ଦ୍ୟ-ନିରବଚ୍ଛିନ୍ନ ସାହିତ୍ୟ ସାଧନା ପାଇଁ ସାମାନ୍ୟ ସୁଯୋଗ । ଅତଏବ ଅନଟନରେ ନିଷ୍ପେଷିତ ହୋଇ ରାଜ ଅନୁଗ୍ରହର ଆଶ୍ରୟ ଗ୍ରହଣ କରିବାକୁ କବି ବାଧ୍ୟ ହୋଇଥିଲେ । ଢେଙ୍କାନାଳର ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କ ଅନୁରାଗଭାଜନ ହୋଇ କବି ବହୁ କାବ୍ୟ କବିତା ରଚନା କରିଥିଲେ । କିନ୍ତୁ ଏ ଅନୁଗ୍ରହ ଦୀର୍ଘ କାଳ ଭୋଗ କରିବା କବିଙ୍କ ଭାଗ୍ୟରେ ଘଟିନଥିଲା । ନିଜର ନିର୍ଭୀକତା ଓ ସ୍ପଷ୍ଟବାଦିତା ହେତୁ ତାଙ୍କୁ ରାଜନିଗ୍ରହ ଭୋଗ କରିବାକୁ ପଡ଼ିଥିଲା । ସେ ଯାହା ଅନୁଭବ କରିଛନ୍ତି, ତାକୁ ଯଥାରୀତି ପ୍ରକାଶ କରିବାରେ ପରାଙ୍ମୁଖ ହେଉନଥିଲେ । ସେଥିପାଇଁ ରାଜାଙ୍କୁ ସ୍ତୁତି ଓ ପ୍ରଶସ୍ତି କରିବା ସଙ୍ଗେ ସଙ୍ଗେ ସମାଲୋଚନା

କରିବାରେ ମଧ୍ୟ ସେ ଥିଲେ ଧୂରନ୍ଧର । କବିଙ୍କର 'ସମର ତରଙ୍ଗ' ଓ 'ରାଜନନ୍ଦ୍ର ଛଳ ଛନ୍ଦ' ଏହାର ଯଥାର୍ଥ ନିଦର୍ଶନ । କବିଙ୍କର ଦୁଃଖ ଓ ଦୁର୍ଭାଗ୍ୟର ଏହା ମଧ୍ୟ ଅନ୍ୟତମ କାରଣ । ରାଜ ପୃଷ୍ଠପୋଷକତା ଲାଭକରି ସୁଖ ବିଳାସରେ ରହି କାବ୍ୟ ରଚନା କରିବାର ସ୍ୱପ୍ନ ତାଙ୍କର ସଫଳ ହୋଇନଥିଲା । ଉପରନ୍ତୁ ଗୋଟିଏ ରାଜାର ଆଶ୍ରୟ ତ୍ୟାଗ କରି ଅଉ ଜଣଙ୍କ ନିକଟରେ ପ୍ରାର୍ଥୀ ହେବାର ଯନ୍ତ୍ରଣା ମର୍ମେ ମର୍ମେ ଅନୁଭବ କରିବାକୁ ହୋଇଥିଲା । କବି ଢେଙ୍କାନାଳ ରାଜ୍ୟ ତ୍ୟାଗ କରି ଦର୍ପଣୀ ଗଡ଼ରେ ଅବସ୍ଥାନ କରିଥିଲେ । ଉଦ୍ଦେଶ୍ୟ ଚରିତାର୍ଥ ନ ହେବାରୁ ପୁଣି ଫେରି ଆସିଥିଲେ ଢେଙ୍କାନାଳକୁ । କିନ୍ତୁ ଦୀର୍ଘକାଳ ଢେଙ୍କାନାଳରେ ଅବସ୍ଥାନ କରି ମଧ୍ୟ କବିଙ୍କର ଆଶା ପୂରଣ ହୋଇ ନଥିଲା । ସେ ଅର୍ଥଲାଭ ପାଇଁ କେନ୍ଦୁଝରର ରାଜାଙ୍କ ଆଶ୍ରୟ ଭିକ୍ଷା କରିଥିଲେ । ଏପରିକି ମୃତ୍ୟୁର କିଛିକାଳ ପୂର୍ବରୁ ଅନ୍ଧ୍ର ପ୍ରଦେଶର ଭିଲଙ୍ଗି ଗ୍ରାମକୁ ମଧ୍ୟ ଯାଇଥିଲେ । ଗୋଟିଏ ରାଜ ଆଶ୍ରୟ ତ୍ୟାଗ କରି ଅନ୍ୟର ସାହାଯ୍ୟପ୍ରାର୍ଥୀ ହେବାର ମନୋବୃତ୍ତି ସର୍ବଥା ନିନ୍ଦିତ । ବ୍ରଜନାଥଙ୍କୁ ଏ କଥା ଅବିଦିତ ନଥିଲା । ତଥାପି ଦୁଃସହ ଦାରିଦ୍ର୍ୟର ଚାପରେ ଓ ସାହିତ୍ୟ ସୃଷ୍ଟିର ଅଦମ୍ୟ ଆକର୍ଷଣରେ କବିଙ୍କର ଏହି ଆତ୍ମ ନିବେଦନ ମାର୍ଜନୀୟ । କୁହାଯାଇପାରେ ପରିସ୍ଥିତିର ପ୍ରତିକୂଳତା ବିରୁଦ୍ଧରେ ବ୍ରଜନାଥଙ୍କର ଏହା ଏକ ଉଦ୍ୟମଶୀଳ ସଂଗ୍ରାମ, ପରିପୂର୍ଣ୍ଣ ଆତ୍ମ ସମର୍ପଣ ନୁହେଁ ।

ବ୍ରଜନାଥ ବଡ଼ଜେନାଙ୍କର ଥିଲା ପ୍ରଗତିଶୀଳ ଚିନ୍ତାଧାରା । ସେ ଯେପରି ଅତୀତକୁ ମୂର୍ଚ୍ଛି ପାରିନାହାନ୍ତି, ସେହିପରି ସୁଦୂରଦୃଷ୍ଟି ସଂପନ୍ନ ହୋଇ ଆଗାମୀକୁ ଅବ୍ୟାହତି ଦେଇନାହାନ୍ତି । ସର୍ବଧର୍ମର ସମନ୍ୱୟବାଦୀ ଭାବରେ କାଳକାଳକୁ ଧର୍ମର ଆନ୍ତର ସତ୍ତାକୁ ପ୍ରତିଷ୍ଠିତ କରି ଯାଇଛନ୍ତି । କାବ୍ୟଯୁଗର ପ୍ରଭାବକୁ ଯେପରି ଅସ୍ୱୀକାର କରି ନାହାନ୍ତି, ସେଇମିତି ଗଦ୍ୟଯୁଗର ଅବଶ୍ୟମ୍ଭାବୀ ଆଗମନୀକୁ ଅବହେଳା କରିନାହାନ୍ତି । ଜୀବନରେ ଦୁଃଖ ଓ ଅଭାବର ବିଷଜ୍ୱାଳା ଯେପରି ଅନୁଭବ କରିଛନ୍ତି, ସୁଖ ଓ ସଦ୍‌ଭାବର ଅମୃତ ମଧ୍ୟ ଆସ୍ୱାଦନ କରିଛନ୍ତି ।

କଥାକାରଙ୍କ କାବ୍ୟକୃତି—କାବ୍ୟଯୁଗର ମଧ୍ୟାହ୍ନରେ ବ୍ରଜନାଥଙ୍କ ଆବିର୍ଭାବ । ଏ ଯୁଗ ନିୟମର ଯୁଗ, ଶୃଙ୍ଖଳାର ଯୁଗ । ଶବ୍ଦର କାରସାଦ ଓ ଅଳଙ୍କାରର କାରିଗରି ଭିତରେ କବି ଚିତ୍ତର ସହଜ ରସ ଉଲ୍ଲାସ ପ୍ରକାଶ ପାଇବା ସମ୍ଭବ ନଥିଲା । କାବ୍ୟବିଧାନର ବେହରୀ ଅତିକ୍ରମ କରିବାର ସାଧ୍ୟ ନଥିଲା କଳା କୁଶଳୀ ସ୍ରଷ୍ଟାର । ଏ ଯୁଗର ସାହିତ୍ୟିକ ରୁଚିଥିଲା ପାଣ୍ଡିତ୍ୟ ପ୍ରଦର୍ଶନ, ପ୍ରତିଭା ନୁହେଁ । ସଂସ୍କୃତ ଓ ପ୍ରାକୃତ ଭାଷାରେ ଦକ୍ଷତା ଅର୍ଜନ ଥିଲା କବିର ସର୍ବାଦୌ କର୍ତ୍ତବ୍ୟ । ବିଭିନ୍ନ କାବ୍ୟଶାସ୍ତ୍ର, ବ୍ୟାକରଣ, ଅଳଙ୍କାର ଶାସ୍ତ୍ର; କାମଶାସ୍ତ୍ର ପ୍ରଭୃତି ଆୟତ୍ତ କରି ରୀତିଯୁଗର ଶାସନ ନୀତିକୁ ସ୍ୱୀକୃତି ଦେବା ଥିଲା କବିର ଧର୍ମ । ପରମ୍ପରାର ଏଇ ବଳିଷ୍ଠ ଓ ପ୍ରତିଷ୍ଠିତ ଆଭିଜାତ୍ୟର ସୁଯୋଗ୍ୟ ସେବକ

ଥିଲେ ବ୍ରଜନାଥ । କିନ୍ତୁ ପରମ୍ପରାର ଅନୁସରଣ ଓ ଅନୁଶୀଳନ ସଙ୍ଗେ ସଙ୍ଗେ ନୂତନର ଆବାହନ ଲାଗି ତାଙ୍କର ଥିଲା ଅକୁଣ୍ଠ ପ୍ରେରଣା । ତେଣୁ ସେ ପୂର୍ବସୂରୀଙ୍କ ଚଳପଥରେ କେବଳ ପରିକ୍ରମା ନ କରି ଗତାନୁଗତିକତାର ପ୍ରାଚୀର ଭାଙ୍ଗି ନିଜସ୍ୱ ରୁଚିକୁ ମର୍ଯ୍ୟାଦା ଦେଇଛନ୍ତି । ନଟବର ସାମନ୍ତରାୟଙ୍କ ଭାଷାରେ—"ଯାହା ସମସ୍ତ ତନ୍ତ୍ରୀର ପୂର୍ଣ୍ଣ ବ୍ୟତିକ୍ରମ ମାତ୍ର ।" ବ୍ରଜନାଥଙ୍କ ବିଭିନ୍ନ କୃତିରେ ଏହି ସତ୍ୟ ପ୍ରମାଣିତ ।

ଭଞ୍ଜୀୟ ପରମ୍ପରାର ଉଦ୍ଧତ ସାଧକ ଭାବରେ ବ୍ରଜନାଥ ତାଙ୍କର କେଳିକଳାନିଧି, ଅମ୍ବିକା ବିଳାସ, ଶ୍ୟାମ ରାସୋତ୍ସବ ଓ ବିଚକ୍ଷଣାର ପରିକଳ୍ପନା କରିଛନ୍ତି । ଶବ୍ଦ ବିଭବ ଛନ୍ଦ ଚମତ୍କାର, ଅଳଙ୍କାର ଚାତୁର୍ଯ୍ୟ, ବର୍ଣ୍ଣନା କୌଶଳରେ ବ୍ରଜନାଥ ଏପରି ଭାବରେ ଗତାନୁଗତିକ ହୋଇପଡ଼ିଛନ୍ତି ଯେ ତାଙ୍କର ସ୍ୱକୀୟ ମୌଳିକତା ଓ ନିଜସ୍ୱ ବଚନ ମାଧୁର୍ଯ୍ୟ ନଷ୍ଟ ହୋଇ ପଡ଼ିଛି ଭଞ୍ଜୀୟ ପ୍ରଭାବରେ । ତାଙ୍କର ରଚନାଗୁଡ଼ିକ ଭଞ୍ଜଙ୍କୁ ବାରମ୍ବାର ସ୍ମରଣ କରାଇଦିଏ ।

୧ । ଶ୍ୟାମ ରାସୋତ୍ସବ :—ଶ୍ରୀମଦ୍ ଭାଗବତର ରାସପଞ୍ଚାଧ୍ୟାୟୀର ବିଷୟବସ୍ତୁ ଉପରେ ଏହି କାବ୍ୟ ଆଧାରିତ । ଭାଗବତରେ ଯାହା ଧାର୍ମିକ ଉଦ୍‌ବୋଧନ ଓ ଭକ୍ତିର ଅନୁପ୍ରେରଣା ଭାବରେ ବର୍ଣ୍ଣିତ, ଏଥିରେ ଶୃଙ୍ଗାରିକତା ଓ ବିଦଗ୍ଧତା ମଧ୍ୟରେ ତାହା ପ୍ରଦର୍ଶିତ । ଉପେନ୍ଦ୍ର ଭଞ୍ଜଙ୍କ ଛାନ୍ଦ ଭୂଷଣରେ ଶ୍ରୀକୃଷ୍ଣଙ୍କ ସମସ୍ତ ଲୀଳା ବର୍ଣ୍ଣନା କରାଯିବା ସ୍ଥଳେ ଶ୍ୟାମ ରାସୋତ୍ସବରେ କବି କେବଳ ଶରତ୍ ରାସର ବର୍ଣ୍ଣନା କରିଛନ୍ତି । ଶ୍ରୀକୃଷ୍ଣଙ୍କର ରତିକ୍ରୀଡ଼ା ବର୍ଣ୍ଣନା କବିଙ୍କର ପ୍ରଧାନ ଲକ୍ଷ୍ୟ । 'ସ'କାର ନିୟମରେ ରଚିତ ଉପେନ୍ଦ୍ରଙ୍କର 'ସୁଭଦ୍ରା ପରିଣୟ' ପରି ଏହା 'ଶ' ବର୍ଣ୍ଣ ନିୟମରେ ପରିକଳ୍ପିତ ।

୨ । ବିଚକ୍ଷଣା :—କବିଙ୍କର ଏହି କାବ୍ୟଟି ଅସମ୍ପୂର୍ଣ୍ଣ । ରାଜସଭାରେ ବର୍ଣ୍ଣିତ ବିବରଣୀରୁ ଜଣାଯାଏ ଏହା ପନ୍ଦର ଛାନ୍ଦ ବିଶିଷ୍ଟ । କିନ୍ତୁ ମିଳିଥିବା ପାଣ୍ଡୁଲିପିରେ ମାତ୍ର ଦଶଟି ଛାନ୍ଦ ରହିଛି ଓ ଦଶମ ଛାନ୍ଦଟି ମଧ୍ୟ ଅସମ୍ପୂର୍ଣ୍ଣ । ଭଞ୍ଜୀୟ ଆଦର୍ଶରେ ବୈଦେହୀଶ ବିଳାସପରି 'ବ' ଅକ୍ଷରରେ ରଚିତ ନ ହୋଇ ବିଚକ୍ଷଣା ବ, ବ, ବା, ବଂ, ବେ, ବୃ, ବୈ, ବୋ, ବ ପ୍ରଭୃତି ଆଦ୍ୟ ବର୍ଣ୍ଣରେ ପରିକଳ୍ପିତ । ବିଷୟବସ୍ତୁ ଗତାନୁଗତିକ । ମଧ୍ୟଯୁଗୀୟ କାବ୍ୟଗୁଡ଼ିକ ଆଦିରସ ପ୍ରଧାନ । ବିଚକ୍ଷଣାରେ ତାର ବ୍ୟତିକ୍ରମ ଘଟିନାହିଁ । ଏହା କେବଳ ଚିତ୍ରାତ୍ମକ ବୃତ୍ତାନ୍ତରେ ରଚିତ । ଏଥିରେ ପାଣ୍ଡିତ୍ୟ ଓ ଶବ୍ଦ ବିଳାସ ଯେପରି ରହିଛି; ଅର୍ଥଗାମ୍ଭୀର୍ଯ୍ୟ ଓ କବିତ୍ୱର ସହଜ ଭାବସୌନ୍ଦର୍ଯ୍ୟ ଆଦୌ ନାହିଁ କହିଲେ ଚଳେ । ରୀତିର ନିଗଡ଼କୁ ଅତିକ୍ରମ କରି ଭାବର ପ୍ରାଙ୍ଗଣରେ ବ୍ରଜନାଥ ପଦଚାଳନା କରି ପାରିନାହାନ୍ତି । ବିଚକ୍ଷଣା ତାଙ୍କର କାବ୍ୟିକ ଜୀବନର ପ୍ରଥମ ପର୍ଯ୍ୟାୟର ରଚନା । ଅସମ୍ପୂର୍ଣ୍ଣ ଦଶମ ଛାନ୍ଦରେ କବିଙ୍କର ସୂଚନା ମାତ୍ର ଦିଆଯାଇଛି ।

୩ । କେଳି କଳାନିଧି :—ଷଷ୍ଠ ଯୁଗର ସର୍ବଶ୍ରେଷ୍ଠ ପଥିକୃତ୍ ଭଞ୍ଜଙ୍କର 'ପ୍ରେମ-ସୁଧାନିଧି' ଆଦର୍ଶରେ ଏହି କାବ୍ୟର ପରିକଳ୍ପନା କରାଯାଇଛି । କେବଳ ନାମରେ ସାମ୍ୟ ନୁହେଁ, ସାମ୍ୟ ସର୍ବତ୍ର ପରିସ୍ଫୁଟ । ଚନ୍ଦ୍ର ଷୋଳକଳାରେ ପରିପୂର୍ଣ୍ଣ । ସେହିପରି ଏହି କାବ୍ୟ ଷୋଳଛାନ୍ଦରେ ସମାପ୍ତ । ପ୍ରତ୍ୟେକ ଛାନ୍ଦରେ ଆଳଙ୍କାରିକ ବୈଶିଷ୍ଟ୍ୟ ଓ ସୌନ୍ଦର୍ଯ୍ୟ ସମ୍ପାଦିତ । ଆଦ୍ୟଯମକ, ଅବନା, ପ୍ରାନ୍ତଯମକ, ଅଦ୍ଭୁତ-ଉପମା, ବିରୋଧରୂପକ, ଏକା ଯମକ, ସିଂହାବଲୋକନ—ଶୃଙ୍ଖଳା, ନିରୋଷ୍ଠ, ଯୋଷ୍ଠ; ଆଦ୍ୟ-ପ୍ରାନ୍ତ ଯମକ; ଆଶୟୁକ୍ତ ଦୃଷ୍ଟାନ୍ତର; ସଭିଙ୍ଗ; ଆଦ୍ୟପ୍ରାନ୍ତ ଶ୍ଳେଷ—ବିଶ୍ଳେଷ; ଶୃଙ୍ଖଳା; ପ୍ରାନ୍ତଯମକ ପ୍ରଭୃତି ଅଳଙ୍କାର ସଂଯୋଜନାରେ ଓ ଭାଷାର ଆଡ଼ମ୍ବରରେ ଏହି କାବ୍ୟର ଅଙ୍ଗ ରଚିତ ହୋଇଛି । କିନ୍ତୁ ଏସବୁ କାବ୍ୟର ଭୂଷଣ ମାତ୍ର । କବିଙ୍କର ସମୁନ୍ନତ ଚିନ୍ତା ଓ ଆଦର୍ଶ ଏଥିରେ ପ୍ରତିଫଳିତ ହୋଇନାହିଁ । ଅଳଙ୍କାର ଶାସ୍ତ୍ରରେ କବିଙ୍କର କେତେ ଦକ୍ଷତା ଓ ପାରଦର୍ଶିତା ଥିଲା ତାର ଶକ୍ତିମତ୍ତା ଏଥିରେ ପ୍ରକଟିତ । ବହୁ ସ୍ଥଳରେ ଉପେନ୍ଦ୍ରଙ୍କ 'ପ୍ରେମସୁଧାନିଧିର' ଭାବ ଓ ଭାଷାକୁ ଅବିକଳ ଭାବରେ ଅନୁସରଣ କରିଛନ୍ତି ବୋଲି ଜଣାପଡ଼େ । ଏଥିରେ ସେ ନିଜକୁ ପ୍ରକାଶ କରିଛନ୍ତି ପରମ୍ପରାର ଜଣେ ରକ୍ଷକ ଭାବରେ, ନୂତନ ସରଣୀର ସାଧକ ଭାବରେ ନୁହେଁ । କବିଙ୍କର ସ୍ୱତନ୍ତ୍ରତା ଆଦୌ ପରିଲକ୍ଷିତ ହୁଏ ନାହିଁ ।

୪ । ବିଦେଶାନୁଚିନ୍ତା :—ବର୍ଷାକାଳରେ ପ୍ରବାସୀ ନାୟକ ନାୟିକାର ଗୁଣ ସ୍ମରଣ କରି ଅନ୍ତରର ସ୍ମୃତିର ଜ୍ୱାଳାରେ ଅସ୍ଥିରତା ଅନୁଭବ କରିଅଛି । ବର୍ଷାଋତୁ ବିରହୋଦ୍ଦୀପକ । ନାୟିକାଠାରୁ ବିଚ୍ଛିନ୍ନ ହୋଇ ନାୟକ ଏକାନ୍ତରେ ବିରହବର୍ଦ୍ଧିନୀ ପ୍ରିୟତମାର ଦିନ ଦିନକର ରସ କୌତୁକ ପୂର୍ଣ୍ଣ କଥା ଭାବି ଅଧୈର୍ଯ୍ୟ ହୋଇ ପଡ଼ିଛି । ଛପନ ପଦ ବିଶିଷ୍ଟ ନାୟକର ଅନୁଚିନ୍ତା କେବଳ ଶୃଙ୍ଗାରି ଚେତନାରେ ପରିପୂର୍ଣ୍ଣ । ବହୁଛାନ୍ଦ ବିଶିଷ୍ଟ କାବ୍ୟରେ କବିମାନେ ଯେଉଁ ଭାବନାକୁ ବର୍ଣ୍ଣନା କରିଛନ୍ତି, ତାର ଏକ ସାର ସଂକ୍ଷେପ ଅଭିବ୍ୟକ୍ତ ଏହି ବିଦେଶ-ଅନୁଚିନ୍ତା । ରତି-ଭାବନା-ସର୍ବସ୍ୱ ଏହି ରଚନାରେ କବିଙ୍କର ସ୍ୱକୀୟତା ପରିବର୍ତ୍ତେ ସେହିସମୟର ଏକ ବିଳାସୀ ଅଳସ ଶୃଙ୍ଗାର ରସ ଚେତନାହିଁ ପ୍ରକଟିତ ହୋଇଅଛି ।

୫ । ଦଶପୋଇ :—ଶୃଙ୍ଗାର ରସାଶ୍ରିତ ଏହି କବିତା ମୁଖ୍ୟତଃ ରାଧାକୃଷ୍ଣଙ୍କ କେଳିକଳାକୁ ଉପଜୀବ୍ୟ କରି ରଚିତ । ବିରହ ମିଳନର ରୂପାଲେଖ୍ୟରେ ଦଶପୋଇର ପରିକଳ୍ପନା ଯୁଗଧର୍ମକୁ ଅନୁସରଣ କରିଛି । କିନ୍ତୁ ଏହାର ଭାଷା ସରଳ ସହଜ ଓ ସୁଖକର । ଏଥିରେ ଶାବ୍ଦିକ ଗୁରୁତ୍ୱ ବା କ୍ଲିଷ୍ଟ ଭାଷା ଅଥବା ଅଳଙ୍କାରର ଦୁର୍ଭରତା ପ୍ରକାଶ ପାଇଁ କବିଙ୍କର ଆପ୍ରାସଲବ୍ଧ ପ୍ରଚେଷ୍ଟା ନାହିଁ । ଏଠାରେ ରାଧାକୃଷ୍ଣଙ୍କ ରତିକ୍ରୀଡ଼ା ଅପାର୍ଥିବ ଭାବର ଦ୍ୟୋତକ ନ ହୋଇ ଅତି ନଗ୍ନ ସାଧାରଣ ସ୍ତରକୁ ଓହ୍ଲାଇ ଆସିଛି । ରାଧାଙ୍କ ପ୍ରେମର ନିଃସଙ୍କୋଚ ପ୍ରକାଶ ଭାବମୟ ନ ହୋଇ କାମଲକ୍ଷଣ ହୋଇ ପଡ଼ିଛି ।

ପରକୀୟା ପ୍ରୀତିର ଏକ ରସୋଜ୍ଜ୍ୱଳ ମୂର୍ତ୍ତି ଏଥିରେ ପ୍ରକାଶିତ । ଦଶପୋଈ ହୋଇଥିବାରୁ ପ୍ରତ୍ୟେକ ପୋଈରେ ଦଶପଦ ଓ ପ୍ରତ୍ୟେକ ଛାନ୍ଦ ଶେଷରେ ଟେକ୍ରୀ ରାଗର ଦୁଇଟି ପଦ ବର୍ଣ୍ଣିତ ହୋଇଅଛି ।

୬ । ଗୋପୀ-ବିଳାପ:—ଛଅଗୋଟି ବୋଲିରେ ଏହାର ଅଙ୍ଗସଜ୍ଜା କରାଯାଇଛି । କୃଷ୍ଣ-ବିଚ୍ଛେଦ ବିଧୁରା ଛଅ ଜଣ ଗୋପୀ ଏକ ଜ୍ୟୋତ୍ସ୍ନା ଧବଳିତ ରାତ୍ରିରେ କୃଷ୍ଣଙ୍କ ସହିତ ସେମାନଙ୍କର ପ୍ରେମାନୁଭୂତିର ବିସ୍ମୃତିର ଚିତ୍ର ପରିବେଷଣ କରିଛନ୍ତି । କୃଷ୍ଣ ପ୍ରେମରେ ମଜ୍ଜିଲେ ସାମାଜିକ ନିନ୍ଦା, କଳଙ୍କ, ଅପବାଦ ଅନିବାର୍ଯ୍ୟ । କିନ୍ତୁ ଅନ୍ତରର ଶୁଦ୍ଧତାରେ କୃଷ୍ଣଗତପ୍ରାଣା ହୋଇ ପାରିଲେ କୃଷ୍ଣଚନ୍ଦ୍ରଙ୍କର ଅନୁଗ୍ରହ ଲାଭ କରି ସକଳ ଦୁଃଖରୁ ପରିତ୍ରାଣ ଲାଭ ସମ୍ଭବ । ପ୍ରତ୍ୟେକ ବୋଲିରେ ବିରହିଣୀ ଗୋପିକା କଣ୍ଠରେ କୃଷ୍ଣଙ୍କର ସ୍ନେହ ମୂର୍ତ୍ତି ପ୍ରକଟିତ । କୃଷ୍ଣ ପ୍ରୀତିରେ ସତୀ ଅସତୀ ହୁଏ ନାହିଁ, ବରଂ ତାର ସତୀତ୍ୱର ମହିମା ବିଶେଷ ଭାବରେ ପ୍ରକାଶ ପାଏ । ଶ୍ରୀକୃଷ୍ଣଙ୍କର ଭଗବତ୍ତ୍ୱ ଓ ମାହାତ୍ମ୍ୟ ପ୍ରକଟନ ଏହାର ମୁଖ୍ୟ ଉଦ୍ଦେଶ୍ୟ ।

ଗୋପୀ ବିଳାପର ପରିକଳ୍ପନାରେ କବି ଦିନାଇ ଦାସଙ୍କ 'ଗୋପୀଭାଷା'କୁ ଅବିକଳ ଅନୁସରଣ କରିଛନ୍ତି । କବିଙ୍କର ପାଣ୍ଡିତ୍ୟ, କଳ୍ପନା ବୈଚିତ୍ର୍ୟ ଅଥବା କବିତ୍ୱ ସ୍ୱତନ୍ତ୍ରତା କୌଣସି ବିଶିଷ୍ଟ ସଙ୍କେତ ବହନ କରିବାରେ ଏହା ସମର୍ଥ ହୋଇ ପାରିନାହିଁ ।

୭ । ଚଣ୍ଡୀମାଳଶ୍ରୀ :—ଜଗଜ୍ଜନନୀ ଚଣ୍ଡିକାଙ୍କର ଅସୁରଂଦଳନ ଶକ୍ତିର ପ୍ରଶସ୍ତି ଏଗାର ପଦରେ ବର୍ଣ୍ଣିତ । ମହିଷାସୁର, ସୁମ୍ଭ, ନିସୁମ୍ଭଙ୍କ ବଧ ପ୍ରସଙ୍ଗ ବିସ୍ତୃତ ଭାବରେ ବର୍ଣ୍ଣନା କରି ଆଦ୍ୟାଶକ୍ତିଙ୍କ ମହତ୍ତ୍ୱ ପ୍ରକାଶ କରିଛନ୍ତି । କବିଙ୍କ ମତରେ ଲୋକଜନନୀ ଦୁର୍ଗାଙ୍କର କୃପାରେ ପୃଥିବୀରେ ସୁଖ ଶାନ୍ତି ସନ୍ତୋଷ ସମ୍ଭବ । କ୍ଷୁଦ୍ର କବିତା ଖଣ୍ଡରେ ଦୁର୍ଗାଙ୍କୁ କବି ତଦ୍‌ଗତ ପ୍ରାଣରେ ବନ୍ଦନା କରି ତାଙ୍କର ସୃଷ୍ଟି ଓ ସଂହାର ରୂପ ପ୍ରତିଷ୍ଠା କରିଛନ୍ତି ।

୮ । ରାଜନଙ୍କୁ ଛଳ ଉକ୍ତି:—ଏହି ପ୍ରଶସ୍ତି ମୂଳକ ରଚନାରେ କବି ଢେଙ୍କାନାଳର ରାଜା ଶ୍ରୀ ତ୍ରିଲୋଚନ ମହେନ୍ଦ୍ର ବାହାଦୂରଙ୍କ ପ୍ରତି ଛଳ ଉକ୍ତି ପ୍ରକାଶ କରିଛନ୍ତି । ଦୁଃଖ ଦାରିଦ୍ର୍ୟରେ ନିପୀଡ଼ିତ କବି ରାଜାଙ୍କର ଐଶ୍ୱର୍ଯ୍ୟ ସୁଖ ବିଳାସ ଓ ନିଜର ଦୈନ୍ୟ ପରିସର ଚିତ୍ର ସମାନ କଥାରେ ପ୍ରକାଶ କରିଛନ୍ତି । ଏଥିରେ ଉକ୍ତି ଗୁମ୍ଫ ଓ ଶବ୍ଦ ସଂଯୋଜନାରେ କବିଙ୍କର ରସପ୍ରାଣତା ବିଶେଷ ଭାବରେ ପ୍ରଦର୍ଶିତ । ଦୃଷ୍ଟାନ୍ତ ସ୍ୱରୂପ—

ଗୋସାଇଁ ଛ ହାତୀ     ବାସରେ ରଖିଛ
ଦେଇ ତହିଁ କେତେ ଗଣ୍ଡି
ମୋର ଛ ହାତୀ ବା-     ସରେ ରଖିଅଛ
ଦେଇ ତହିଁ କେତେ ଗଣ୍ଡି ।

ଅର୍ଥାତ୍ ମହାରାଜା ଛଅ ଗୋଟି ହସ୍ତୀ କେତେ ଅର୍ଥ ବ୍ୟୟ କରି ପ୍ରତିପାଳନ କରିବା ସମୟରେ କବି ଛତ୍ରାଙ୍ଗ ବସ୍ତ୍ରରେ କେତେ ଗଣ୍ଠି ପକାଇ ପରିଧାନ କରିଛନ୍ତି ।

୯ । ରାଜସ୍ତବ :—ଏହି ମଧ୍ୟ ଢେଙ୍କାନାଳ ରାଜାଙ୍କ ସମ୍ବନ୍ଧରେ ଏକ ସ୍ତୁତିମୂଳକ ରଚନା । କବି ଢେଙ୍କାନାଳର ରାଜା ଓ ରାଜସଭାର ଏକ ଅତିରଞ୍ଜିତ ବର୍ଣ୍ଣନା କରିଛନ୍ତି । କାରଣ ରଚନାଟି ଉଦ୍ଦେଶ୍ୟମୂଳକ । ପୂର୍ବେ ରାଜାମାନେ ପ୍ରଶସ୍ତିମୂଳକ ରଚନା ଶୁଣିଲେ ସ୍ତାବକଙ୍କୁ ବହୁ ଅର୍ଥ ଦାନ କରୁଥିଲେ । ବଡ଼ଜେନା ଏଥିରେ ନିଜର ଦାରିଦ୍ର୍ୟ ଲାଞ୍ଛିତ ଜୀବନର କରୁଣ ରୂପ ବର୍ଣ୍ଣନା କରି ରାଜ ଅନୁଗ୍ରହ ପ୍ରାର୍ଥୀ ହୋଇଛନ୍ତି । ସେ ନିଜର ବଂଶର ଗୁଣ ଗାରିମା ପ୍ରକାଶ କରିବାରେ ଯେପରି ଉଚ୍ଛ୍ୱସିତ ହୋଇ ପଡ଼ିଛନ୍ତି, ଦୁଃଖ ଓ ଅଭାବ ବର୍ଣ୍ଣନାରେ ମଧ୍ୟ ସେତିକି ଅକୁଣ୍ଠ ଭାବ ପୋଷଣ କରିଛନ୍ତି । ଏହି କବିତାଟି କବିଙ୍କର ସୁଖ ଦୁଃଖର ଅଭିବ୍ୟକ୍ତିରେ ପୂର୍ଣ୍ଣ । ଏଥିରେ ସାହିତ୍ୟିକ ଗୌରବ ଅପେକ୍ଷା ଆତ୍ମକାହାଣୀର ସରଳ ବିନ୍ୟାସ ବିଶେଷ ଭାବରେ ଲକ୍ଷିତ ହୁଏ । ୪୩ ପଦ ପରେ ଏକ ଚୂର୍ଣ୍ଣିକ ରଚନା କରି ଅବଶିଷ୍ଟ ୩୭ ପଦର ପରିକଳ୍ପନା କରିଛନ୍ତି ।

୧୦ । ଜଣାଣ ଓ ସଂଗୀତ :—କବି ଭଗବତୀ, ଜଗନ୍ନାଥ, ଆର୍ତ୍ତତ୍ରାଣ, ଶ୍ରୀକୃଷ୍ଣ ପ୍ରଭୃତିଙ୍କ ଉଦ୍ଦେଶ୍ୟରେ ଜଣାଣ ରଚନା କରିଛନ୍ତି । ଏତଦ୍‌ବ୍ୟତୀତ କେତୋଟି ଶୃଙ୍ଗାର ଆଶ୍ରିତ ନାୟକ ନାୟିକାଙ୍କର ପ୍ରେମଲୀଳା ସମ୍ବନ୍ଧୀୟ ସଙ୍ଗୀତ ମଧ୍ୟ ଏଥିରେ ସନ୍ନିବେଶିତ । କିନ୍ତୁ ଏଥିରେ ଥିବା ପଦର ଗୋଟି ରଚନା କବିଙ୍କର କବିତ୍ୱ ସମ୍ବନ୍ଧରେ କୌଣସି ଉଚ୍ଚାଙ୍ଗ ମତ ପ୍ରଦାନ କରେ ନାହିଁ । ଯୁଗୋଚିତ କେତେକ ଆଦିରସାତ୍ମକ ବର୍ଣ୍ଣନା ଓ ଭଗବତ୍ ଭାବ ପୂର୍ଣ୍ଣ ସଙ୍ଗୀତ ରଚନା କବିଙ୍କର ଗୌରବ ବୃଦ୍ଧିରେ ଆଦୌ ସହାୟକ ହୋଇ ପାରିନାହିଁ ।

୧୧ । ଅମ୍ବିକା ବିଳାସ :—'ବ' ଆଦ୍ୟ ବର୍ଣ୍ଣରେ ରଚିତ ଭଞ୍ଜଙ୍କର ବୈଦେହୀଶ ବିଳାସର ଶିଳ୍ପ ଆଦର୍ଶ ଅନୁସରଣ କରି କବି 'ଅମ୍ବିକାବିଳାସ' କାବ୍ୟ ରଚନା କରିଛନ୍ତି । କବିଙ୍କର ଏହି କାବ୍ୟର ବୈଶିଷ୍ଟ୍ୟ ହେଉଛି 'ଅ' ସ୍ୱରବର୍ଣ୍ଣକୁ ପ୍ରତି ପଦର ଆରମ୍ଭରେ ରଖି କାବ୍ୟରଚନାର ପରିକଳ୍ପନା । ବ୍ୟଞ୍ଜନ ବର୍ଣ୍ଣ ଆଦ୍ୟ ଅକ୍ଷର ପଦ୍ଧତି ପରି ଏହା ସହଜସାଧ୍ୟ ନୁହେଁ । ରୀତିଯୁଗର ଅନ୍ୟାନ୍ୟ କାବ୍ୟ ରଚୟିତାଙ୍କ ପ୍ରତି ବଡ଼ଜେନାଙ୍କର ଏହା ଏକ ପ୍ରଚ୍ଛନ୍ନ ଆହ୍ୱାନ । ଅନ୍ୟାନ୍ୟ ବିଷୟରେ କବି କାବ୍ୟଯୁଗର କଳାରୀତିକୁ ସ୍ୱୀକୃତି ଦେଇଛନ୍ତି । ପ୍ରଥମ ଛାନ୍ଦର ବହୁପଦ ଦୁଇ ବା ତତୋଽଧିକ ଅର୍ଥରେ ପ୍ରଯୁକ୍ତ । ପ୍ରଥମ ୬୦ ପଦ ଶିବ ଓ ପାର୍ବତୀଙ୍କ ପ୍ରତି ପ୍ରଯୋଜ୍ୟ । ପୁଣି ଦଶମ ଓ ଏକାଦଶ ପଦ ସାଧୁ ଓ ସାଗର ପ୍ରତି ଲକ୍ଷିତ । ଅଷ୍ଟାଦଶ ପଦରେ ସୂର୍ଯ୍ୟ ଓ ଖଳ ଉଭୟଙ୍କୁ ଉଦ୍ଦେଶ୍ୟ କରି ଦ୍ୱି ଅର୍ଥରେ ପଦ ରଚନା କରାଯାଇଛି । କିନ୍ତୁ ଏସବୁ କବିଙ୍କର ପାଣ୍ଡିତ୍ୟର ପରାକାଷ୍ଠା ପ୍ରଦର୍ଶନ କରେ । କାବ୍ୟର ସଫଳତା ପାଇଁ ଏସବୁର ଅବଦାନ ଆଦୌ ନାହିଁ । ଅମ୍ବିକା

ବିଳାସ ରାତିପୂର୍ଣ୍ଣ ଅନ୍ୟାନ୍ୟ କାବ୍ୟର ସମକକ୍ଷ ହେଲେ ମଧ୍ୟ ଏଥିରେ ବଳିଷ୍ଠ କଥା-ବସ୍ତୁର ଅଭାବ ଅନୁଭୂତ ହୁଏ । ଶିବ ଓ ପାର୍ବତୀଙ୍କ ବିଷୟକୁ ଆଧାର କରି କାବ୍ୟର ପରିକଳ୍ପନା କରାଯାଇଛି କିନ୍ତୁ ଏଥିରେ କଥାବସ୍ତୁର ବଳିଷ୍ଠ ସଂଯୋଜନାର ଅଭାବ ବହୁ ଅଯଥା ଓ ଅପ୍ରୟୋଜନୀୟ ବିଷୟକୁ ଆମନ୍ତ୍ରଣ କରି ଆଣିଛି, ମୂଳ ବିଷୟ ସହିତ ଯାହା ସମ୍ପର୍କହୀନ । ଛତିଶ ଛାନ୍ଦରେ କୁମାରଙ୍କ ଜନ୍ମୋତ୍ସବ ଉପଲକ୍ଷରେ ସୁରାସୁରଙ୍କୁ ନିମନ୍ତ୍ରଣ କରିବା ପାଇଁ ଚଉଦଜଣଙ୍କୁ ଗିରିଙ୍କୁ ପଠାଇଲେ । ତତ୍ପରେ ବିଭିନ୍ନ ବୃତ୍ତରେ ସଂସ୍କୃତରେ ନାରଦ, ବ୍ୟାସ, ବ୍ରହ୍ମା, ଇନ୍ଦ୍ର, ଶୁକଦେବ ପ୍ରଭୃତିଙ୍କ ସ୍ତୁତି ବର୍ଣ୍ଣିତ ହେବା ପରେ ପିଙ୍ଗଳ ଭାଷାରେ ନାଗ ସ୍ତୁତି, ଖୋରଠା ଭାଷାରେ ଅସୁର ସ୍ତୁତି, ବଙ୍ଗଳା ଭାଷାରେ ବଙ୍ଗଦେଶ ସ୍ତୁତି ପ୍ରଭୃତି ବହୁ ଅପ୍ରାସଙ୍ଗିକ ବିଷୟର ଅବାଞ୍ଛିତ ପ୍ରବେଶ ଘଟାଇଛନ୍ତି । ଶେଷ ଛାନ୍ଦରେ ଯୋଇ ଯେପରି ରୀତିରେ ବର୍ଣ୍ଣିତ ରୀତିମୂଳର କୌଣସି କାବ୍ୟରେ ଏପରି ରୀତି ବା ପଦ୍ଧତି ଅନୁସୃତ ହୋଇନାହିଁ । କାବ୍ୟର ଶେଷାଂଶରେ ବର୍ଣ୍ଣିତ ରାଜନୀତି ବର୍ଣ୍ଣନ ଓ କବି ପରିଚୟ ସଂପୂର୍ଣ୍ଣ ଅନାବଶ୍ୟକ ।

ଅମ୍ବିକା ବିଳାସ କାବ୍ୟ କେଉଁଝର ରାଜା ବଳଭଦ୍ର ଭଞ୍ଜଙ୍କ ନାମରେ ଭଣିତା କରାଯାଇଛି । କବି ବ୍ରଜନାଥ ଅର୍ଥୋପାର୍ଜନ ଲକ୍ଷ୍ୟରେ କିଛିକାଳ କେଉଁଝର ରାଜାଙ୍କ ଆଶ୍ରୟ ଗ୍ରହଣ କରିଥିଲେ । ସେହି ସମୟରେ ରାଜାଙ୍କ ଅନୁରୋଧରେ ସେ ଅମ୍ବିକା ବିଳାସ ରୂପାୟିତ କରି ରାଜାଙ୍କ ନାମରେ ରଚନା କରିଥିଲେ ବୋଲି ଶ୍ରୀ ସୁଧାକର ପଟ୍ଟନାୟକ ମତ ବ୍ୟକ୍ତ କରିଛନ୍ତି ।

୧୨ । ଗୁଣ୍ଡିଚା ବିଜେ :—ଓଡ଼ିଆ ଧର୍ମ ଓ ସଂସ୍କୃତିର ସର୍ବଶ୍ରେଷ୍ଠ ଅଭିଜ୍ଞାନ ଗୁଣ୍ଡିଚା ଯାତ୍ରାକୁ କବି ହିନ୍ଦୀ ଭାଷାରେ ରୂପାୟିତ କରିଛନ୍ତି । ଗୁଣ୍ଡିଚା ଯାତ୍ରାର ଏକ ନିଖୁଣ ବର୍ଣ୍ଣନା ଏଥିରେ ଦେଖିବାକୁ ମିଳେ । ଜଗନ୍ନାଥଙ୍କ ମଣୋହି ପାଇଁ ଯେଉଁ ବିପୁଳ ପ୍ରସାଦର ଆୟୋଜନ ରହିଛି, କବି ତାର ଏକ ରୁଚିକର ବର୍ଣ୍ଣନା ପ୍ରଦାନ କରିଛନ୍ତି ।

ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ରଥ ଉପରକୁ ବିଜେ କରିବା ସମୟରେ ସେମାନେ କିପରି ଶୋଭା ପାଉଛନ୍ତି କବି ଉପମା ଅଳଙ୍କାରରେ ତା'ର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିଛନ୍ତି । ଜଗନ୍ନାଥ ଅପୂର୍ବ କାନ୍ତ କନ୍ଦର୍ପ ପରି, ବଳଭଦ୍ର ଉଦୟାଚଳରେ ଉଦିତ ତେଜସ୍ୱୀ ସୂର୍ଯ୍ୟ ସଦୃଶ ଓ ଜଗନ୍ମାତା ସୁଭଦ୍ରା କ୍ଷୀର ନୀର ମଧ୍ୟରେ ପ୍ରକାଶିତ ଚନ୍ଦ୍ରମା ତୁଲ୍ୟ ଶୋଭା ପାଉଛନ୍ତି । ହିନ୍ଦି ଭାଷାରେ କବିଙ୍କର ପାଣ୍ଡିତ୍ୟ ଓ ଦକ୍ଷତାର ଗୁଣ୍ଡିଚା ବିଜେ ଏକ ଅଭ୍ରାନ୍ତ ନିଦର୍ଶନ । ବହୁ ଭାଷାବିତ୍ କବି ବ୍ରଜନାଥ ଜୀବନର ବିସ୍ତୃତ କ୍ଷେତ୍ରରେ ନିଜକୁ ପ୍ରକାଶ କରିବାରେ ଆଗ୍ରହୀ ଥିଲେ ।

୧୩ । ସମର ତରଙ୍ଗ :—ସମର ତରଙ୍ଗ କବିଙ୍କର ଏକ ଅନନ୍ୟ ପରିକଳ୍ପନା । ଶୃଙ୍ଗାର ରସ ଚର୍ଚ୍ଚାର ବହୁଳତା-ଯୁଗରେ ବୀର ରସାତ୍ମକ ସଂପୂର୍ଣ୍ଣ ଭିନ୍ନ ସ୍ୱାଦର ସମର

ତରଙ୍ଗ କବିଙ୍କର ନୂତନ ସୃଷ୍ଟି ପାଇଁ ସୁତୀବ୍ର ଆକାଙ୍‌କ୍ଷାର ଏକ ଅଭ୍ରାନ୍ତ ନିଦର୍ଶନ । ସାତଚୋଟି ଗ୍ରନ୍ଥରେ ଏହା ସଂପୂର୍ଣ୍ଣ । ମରହଟ୍ଟା ସହିତ ଢେଙ୍କାନାଳର ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କ ସଂଗ୍ରାମ ଓ ବିଜୟ, ଇତିହାସ ଓ ସାହିତ୍ୟ ଉଭୟ ଦୃଷ୍ଟିରୁ ଏହା ଏକ ବିସ୍ମୟକର ରଚନା । ଢେଙ୍କାନାଳ ଯେ ଯଥାର୍ଥରେ ଜଣେ ପ୍ରତିଭାଧର ଶିଳ୍ପୀ ତାର ସ୍ୱାକ୍ଷର ସମର ତରଙ୍ଗରେ ଚିହ୍ନିତ । ତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କୁ ଜଣେ କୀର୍ତ୍ତିକଳାପଶାଳୀ ପ୍ରଥିତଯଶା ରାଜା ରୂପେ ପ୍ରଖ୍ୟାପନ କରିବା କବିଙ୍କର ପ୍ରଧାନ ଉଦ୍ଦେଶ୍ୟ । ପରିଶେଷରେ ରାଜ ଅନୁଗ୍ରହ ଭିକ୍ଷା କରି କବି ଏକ ନିଶ୍ଚିନ୍ତ ଜୀବନ ପାଇଁ ବ୍ୟାକୁଳତା ପ୍ରକାଶ କରିଛନ୍ତି ।

ରାମାୟଣ ଓ ମହାଭାରତ ସମର ପ୍ରଧାନ ମହାକାବ୍ୟ । ଏହି ଦୁଇଟି ମହାକାବ୍ୟରେ ଯୁଦ୍ଧର ବର୍ଣ୍ଣନା ଯେପରି ସୁସ୍ପଷ୍ଟ, ତୀକ୍ଷ୍ଣ ଓ ବିସ୍ତୃତ ତାହା କବିଙ୍କର ଅପୂର୍ବ କବିତ୍ୱ ଶକ୍ତିର ନିଦର୍ଶନ । ସାରଳାଦାସଙ୍କ ମହାଭାରତରେ ବର୍ଣ୍ଣିତ ଗଜପତି କପିଳେନ୍ଦ୍ର ଦେବଙ୍କ ଦାକ୍ଷିଣାତ୍ୟ ଯୁଦ୍ଧର ଏକ ଅବିକଳ ଚିତ୍ର ବୋଲି ଐତିହାସିକମାନଙ୍କର ମତ । କିନ୍ତୁ ସବୁ ସ୍ୱାଭାବିକତା ମଧ୍ୟରେ ବି ଅଲୌକିକ, ଅତିମାନବିକ ଶକ୍ତିର ପ୍ରଚ୍ଛନ୍ନ ଆଭାସ ସର୍ବତ୍ର ସୁରକ୍ଷିତ । ଯୁଦ୍ଧ କୌଶଳ ଅପେକ୍ଷା ଦୈବଶକ୍ତିର ପ୍ରଭାବ ବିଶେଷଭାବରେ ଦେଖାଯାଏ । କିନ୍ତୁ ବ୍ରଜନାଥଙ୍କ ସମର ତରଙ୍ଗ ଆଦୌ ପୌରାଣିକ ବା କିମ୍ବଦନ୍ତୀମୂଳକ ନୁହେଁ । ଏହା ବାସ୍ତବ ଓ ପ୍ରତ୍ୟକ୍ଷ ଘଟଣା ସମ୍ଭୂତ । ତେଣୁ ତାଙ୍କର ସମର ବର୍ଣ୍ଣନା ଯେମିତି ଜୀବନ୍ତ ବାସ୍ତବ, ସେମିତି ଚିତ୍ତାକର୍ଷକ ଓ ରୋମାଞ୍ଚକର । କବିଙ୍କ ଭାଷାରେ—

ଦୁଇ ଦଳ ହୋଇଲେ ମିଶାମିଶି
ଷଣ୍ଢେ ଷଣ୍ଢେ କି ମେଣ୍ଢେ ହେଲେ ଆସି ।
ଅଡ଼ି ଭୂଷି ତକ୍ଷଣକୁ ତକ୍ଷଣ
ତନ ଗୁଡ଼ି ହଅନ୍ତି ନେଇ ପୁଣ
ପିଟି ପିଟି ଛାଟିକାଇ ଭୂଷନ୍ତି
କଟି ପାରି ଆଣ୍ଠୁ ଆଇ ବସନ୍ତି ।
ଯୋଖି ରଖିଥାନ୍ତି ଆଖି ଅଖିରେ
ଦେଖି ଦେଖି କେ ତାକ ହାକ ମାରେ ।
ଲାଗି ପଡ଼େ କାହା ହୃଦେ ତକ୍ଷଣ,
ଆଖିବାଟେ ଗୁଡ଼ିଯାଏ ପରାଣ । (ତୃତୀୟ ଗ୍ରନ୍ଥ)

ସମର ତରଙ୍ଗର ଏହି ପଦଗୁଡ଼ିକ କବିଙ୍କର ବାସ୍ତବ ଓ ସ୍ୱାଭାବିକ ରଚନା ପ୍ରତି ଆନ୍ତରିକ ପ୍ରଚେଷ୍ଟାର ସହଜ ନିଦର୍ଶନ । ଅଷ୍ଟାଦଶ ଶତାବ୍ଦୀର କୃତ୍ରିମ ବାଣୀଝଙ୍କାର ଓ ଅଳଙ୍କାର ଦୁର୍ଭର କାବ୍ୟ ସାହିତ୍ୟ ପ୍ରତି କବି ଯେ ବୀତରାଗ ଅଥଚ ସହଜ ସୁନ୍ଦର

ଭୂଷାମଣ୍ଡିତ ସ୍ୱାଭାବିକ ବର୍ଣ୍ଣନା ପ୍ରତି ସଶ୍ରଦ୍ଧ ଏହା ସୁସ୍ପଷ୍ଟ ଭାବରେ ଜଣାଯାଏ । ସମର ବର୍ଣ୍ଣନାର ପ୍ରତ୍ୟେକ ପଦ କବିଙ୍କର ବ୍ୟକ୍ତିଗତ ଅନୁଭୂତିରେ ଉତ୍ତରିଲା, କପୋଳ କଳ୍ପିତ ବର୍ଣ୍ଣନାରେ ଭାରାକ୍ରାନ୍ତ ନୁହେଁ । ଏହି ପ୍ରାଣବନ୍ତ ସମର ଚିତ୍ରକୁ ଓଡ଼ିଆ ସାହିତ୍ୟର ଏକ ଅକ୍ଷିପ୍ତ ଓ ଅମଳିନ ଶୈଳୀକୁଶଳ ସୃଷ୍ଟି ରୂପେ ଗ୍ରହଣ କରାଯାଇପାରେ ।

ଅଭାଗା କବି ପ୍ରତିଭାର ସ୍ୱର୍ଣ୍ଣଶିଖର ଏକ ହସ୍ତରେ ସ୍ପର୍ଶ କରିବା ସଙ୍ଗେ ସଙ୍ଗେ ଅପର ହସ୍ତ ପ୍ରସାରିତ କରିଛନ୍ତି ଅର୍ଥପ୍ରାପ୍ତିର ଏକ ମଳିନ କରୁଣ ନିବେଦନ ନିମିତ୍ତ । ଗୌରବ ରଙ୍ଗ ଚୂଡ଼ାକୁ ଉଠି ପାଦ ବଢ଼ାଉଛନ୍ତି ସ୍ୱାବଲମ୍ବିତାର ପଙ୍କିଲ ପାବଚ୍ଛ ଆଡ଼କୁ । ଏଥିରୁ ସହଜରେ ଅନୁମିତ ହୁଏ ଅଷ୍ଟାଦଶ ଶତାବ୍ଦୀର ଜଣେ ପ୍ରତିଭା ପ୍ରଦୀପ୍ତ ଶିଳ୍ପୀ ଦାରିଦ୍ର୍ୟ ଓ ଅଭାବର କଷାଘାତରେ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ ଯାଇଛି । ସେଇଥିପାଇଁ ସମର ତରଙ୍ଗ ପରି 'ହ୍ରାକୃତିକ କାବ୍ୟ-ବିଭବ' ସୃଷ୍ଟି କରି ସେ ତାର ଶେଷ ଭାଗରେ ନିଜର ଦାରିଦ୍ର୍ୟ କଣ୍ଟକିତ ଜୀବନର ଦସ୍ତଖତ୍ତ ଚିହ୍ନ ରଖି ଯାଇଛନ୍ତି । ସମର ତରଙ୍ଗର ସୃଷ୍ଟି ଅଭିପ୍ରାୟମୂଳକ । ଢେଙ୍କାନାଳର ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କ ତୁଷ୍ଟି ପାଇଁ ଏହାର ସୃଷ୍ଟି ହୋଇଲା । ଏଥିରେ ରାଜାଙ୍କର ପ୍ରଶସ୍ତି ଓ ବିଜୟର କାହାଣୀ ଏବଂ ରାଜାରାମ ପଣ୍ଡିତ ଓ କେନ୍ଦୁଝର ରାଜାଙ୍କ ପରାଜୟର ଗ୍ଲାନିକର ବିବରଣୀ ବିସ୍ତୃତ ଭାବରେ ଉଲ୍ଲେଖିତ । କବିଙ୍କର ଏହି ରଚନା ନୂତନ କାବ୍ୟ ସୌନ୍ଦର୍ଯ୍ୟରେ ମଣ୍ଡିତ ହେଲେହେଁ କାବ୍ୟର ଅନ୍ତିମ ଅଂଶ ରାଜ ଅନୁଗ୍ରହ ଲାଭ ପାଇଁ ବ୍ୟାକୁଳ ଆବେଗରେ ବିକଳାଙ୍ଗ ହୋଇ ପଡ଼ିଛି । ତଥାପି ସମର ତରଙ୍ଗ କବି ଜୀବନର ଏକ ଅମୂଲ୍ୟ କାବ୍ୟରତ୍ନ ।

୧୪ । ଚତୁର ବିନୋଦ :— କବିଙ୍କର ଏକମାତ୍ର ଗଦ୍ୟ ରଚନା ଚତୁର ବିନୋଦ ଏଯୁଗରେ ଏକ ସ୍ମରଣୀୟ ସୃଷ୍ଟି ସମ୍ପଦ । ଘନ ଅରଣ୍ୟେଷ୍ଟିତ ବିଶାଳ ମହୀରୂହ ମଧ୍ୟରେ କାହାର ବିଶେଷତ୍ୱ ଆଖିରେ ପଡ଼େନା । କିନ୍ତୁ ବିଶାଳ ପ୍ରାନ୍ତର ମଧ୍ୟରେ ଦଣ୍ଡାୟମାନ ବୃକ୍ଷଟିଏ ସବୁରି ମନକୁ ଆକର୍ଷଣ କରେ । ସେଇମିତି ଚତୁର-ବିନୋଦ କବି ବ୍ରଜନାଥଙ୍କ କାବ୍ୟ-ସମୁଦ୍ର ମଧ୍ୟରେ ଏକ କଥା-ଦୀପଦଣ୍ଡ । କେବଳ ସେ ସମୟ ପାଇଁ ନୁହେଁ । ଉତ୍ତର କାଳକୁ ପଥ ନିର୍ଦ୍ଦେଶ କରିବାପାଇଁ ଏକ ଆକାଂକ୍ଷିତ ରଚନା । ଚତୁର ବିନୋଦ ରଚନା କରି ବ୍ରଜନାଥ ଦେଖାଇ ଦେଇଛନ୍ତି କବି ମାନସର ସ୍ୱାଧୀନ ଚେତନା କେତେ ସୁଦୂରପ୍ରସାରୀ । ଗତାନୁଗତିକ ସର୍ବସ୍ୱ ହୋଇ କବି ବଞ୍ଚି ପାରେନା । ସେ ନୂତନର ସନ୍ଧାନୀ — ନୂତନତା ମଧ୍ୟରେ ତା' ଜୀବନର ଆତ୍ମୋପଲବ୍ଧି ପ୍ରତିଭାତ ।

## ଓଡ଼ିଆ ଗଦ୍ୟ ସାହିତ୍ୟ ଓ କଥା-କଳା

ବିଶ୍ୱ ସାହିତ୍ୟର ବିସ୍ତୃତ ବିଚରଣ ଭୂମି ଉପରେ ଦଣ୍ଡାୟମାନ ହୋଇ ଗଦ୍ୟ ସାହିତ୍ୟର ସୃଷ୍ଟି ଗୌରବ ପ୍ରତି ଦୃଷ୍ଟିପାତ କଲେ ଜଣାଯାଏଯେ ଏହା ପଦ୍ୟ ସାହିତ୍ୟ ତୁଳନାରେ ଅର୍ବାଚୀନ । ମଣିଷ ମନର ଭାବୋଚ୍ଛ୍ୱାସ କବିତାରେ ଯେତେ ସହଜରେ ପ୍ରକାଶ ଲାଭ କରେ, ଗଦ୍ୟରେ ତାର ଅଭିବ୍ୟକ୍ତି ଆୟାସସାପେକ୍ଷ । ଭାରତର ଆଦି କବି ବାଲ୍ମୀକି କେବଳ ଶ୍ଳୋକରେ ତାଙ୍କର ଶୋକୋଚ୍ଛ୍ୱାସ ପ୍ରକାଶ କରିଥିଲେ, ତା' ନୁହେଁ ; ସମଗ୍ର ପୃଥିବୀର ସାହିତ୍ୟ କବିତାରେ ଆରମ୍ଭ । ଅବଶ୍ୟ ଏହା ଏକ ସ୍ୱୀକୃତ ସତ୍ୟ ଯେ "ଗଦ୍ୟଂ କବୀନାଂ ନିକଷଂ ବଦନ୍ତି" ଅର୍ଥାତ୍ ଗଦ୍ୟ ସାହିତ୍ୟ କବି ପ୍ରତିଭାର କଷଟି ପଥର । ଏଥିରେ ପରୀକ୍ଷିତରେ ଉତ୍ତୀର୍ଣ୍ଣ ହେବା କବି ଶ୍ରେଷ୍ଠକବି ରୂପେ ସ୍ୱୀକୃତି ଲାଭ କରୁଥିଲେ ।

ରେନେସାଂ ବା ଅଭ୍ୟୁଦୟ ଯୁଗ ପୂର୍ବରୁ ଇଂରାଜି ସାହିତ୍ୟରେ ଗଦ୍ୟର ବିଶେଷ ବିକାଶ ସାଧିତ ହୋଇ ପାରିନଥିଲା । ଭାରତର ଅନ୍ୟାନ୍ୟ ଭାଷା ସାହିତ୍ୟ ପରି ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ଗଦ୍ୟ ସାହିତ୍ୟର ବିକାଶ ଅପାଂକ୍ତେୟ । ଶିଳାଲେଖ, ତାମ୍ରଶାସନ, ସନନ୍ଦ ପ୍ରଭୃତିରେ ବ୍ୟବହୃତ ଗଦ୍ୟ ଆଦୌ ସାହିତ୍ୟ ପଦବାଚ୍ୟ ନୁହେଁ । ଏପରିକି ଗଦ୍ୟ ସାହିତ୍ୟର ପ୍ରଥମ ପାଖୁଡ଼ା ରୂପେ ବିବେଚିତ ମାଦଳାପାଞ୍ଜିର ଗଦ୍ୟ ମଧ୍ୟ ସାହିତ୍ୟିକ ମର୍ଯ୍ୟାଦାଭୁକ୍ତ ନୁହେଁ । ପ୍ରାଚୀନ ଗଦ୍ୟର ଅନ୍ୟ ଏକ ନିଦର୍ଶନ ଶିଶୁବେଦ । ମୂଳଗ୍ରନ୍ଥ ପଦ୍ୟରେ ରଚିତ, କିନ୍ତୁ ଏହାର ଟୀକା ଗଦ୍ୟରେ ଲିଖିତ । ଲୌକିକ ଭାଷାରେ ବର୍ଣ୍ଣିତ ଏହି ତନ୍ତ୍ରମୂଳକ ବିଷୟ ଲୌକିକ ଗଦ୍ୟ ରଚନାର ଭିତ୍ତି ସ୍ୱରୂପ । ଏତଦ୍‌ବ୍ୟତୀତ ଜ୍ୟୋତିଷ ଶାସ୍ତ୍ର, ଶିଳ୍ପ ଶାସ୍ତ୍ର, ବୈଦ୍ୟଶାସ୍ତ୍ର ପ୍ରଭୃତିରେ ପ୍ରାଚୀନ ଓଡ଼ିଆ ଗଦ୍ୟ ରଚନା ଦେଖାଯାଏ । ବ୍ରତ ଓ ଓଷାକଥା ପ୍ରଭୃତିରେ ମଧ୍ୟ ପ୍ରାଚୀନ ଓଡ଼ିଆ ଗଦ୍ୟର ଗୋଟିଏ-ଗୋଟିଏ ସଂକେତ ସ୍ୱରୂପ । ବଳରାମ ଦାସଙ୍କ ବ୍ରହ୍ମଗୀତା ଓ ଜଗନ୍ନାଥ ଦାସଙ୍କ ତୁଳା-ଭିଣାର କେତେକ ଗଦ୍ୟାଂଶ ଓଡ଼ିଆ ଗଦ୍ୟର କ୍ଷୀଣ ଅସ୍ତିତ୍ୱ ମାତ୍ର । ଏ ସମୟରେ ଲେଖକ-ମାନେ ପଠନ ଅପେକ୍ଷା ସ୍ମୃତି ଓ ଆବୃତ୍ତି ଉପରେ ନିର୍ଭର କରୁଥିଲେ । ତେଣୁ ମଧ୍ୟ-ଯୁଗରେ ଗଦ୍ୟର ବିକାଶ ବଳିଷ୍ଠ ନୁହେଁ, ଦୁର୍ବଳ ।

ଗଦ୍ୟ ସାହିତ୍ୟ ଆଲୋଚନା ପ୍ରସଙ୍ଗରେ ଉପରୋକ୍ତ ଗଦ୍ୟ ରଚନାର ବିସ୍ତୃତ ବିଚାର ଅନାବଶ୍ୟକ । କାରଣ ଏ ସବୁର ସାହିତ୍ୟିକ ମୂଲ୍ୟବୋଧ ନାହିଁ କହିଲେ ଚଳେ । କେବଳ ଗଦ୍ୟର ବିକାଶ ଦୃଷ୍ଟିରୁ ଏସବୁ ଉଲ୍ଲେଖନୀୟ । କିନ୍ତୁ ସମଗ୍ର ଭାରତୀୟ ଭାଷାରେ ଅଷ୍ଟାଦଶ ଶତାବ୍ଦୀ ଗଦ୍ୟ ସାହିତ୍ୟର ବିକାଶ କାଳ ରୂପେ ବିବେଚିତ । ଓଡ଼ିଆ ଭାଷାରେ ତାର ବ୍ୟତିକ୍ରମ ଘଟି ନାହିଁ । ଓଡ଼ିଆ ସାହିତ୍ୟରେ ସମାଲୋଚକଗଣ ରୁଦ୍ର ସୁଧାନିଧିକୁ ପ୍ରଥମ ଗଦ୍ୟ ସାହିତ୍ୟ ରୂପେ ଗ୍ରହଣ କରିଆନ୍ତି । ଯଥାର୍ଥରେ ରୁଦ୍ର ସୁଧାନିଧି ପଦ୍ୟଧର୍ମୀ

ଗଦ୍ୟ । ଏହାର ପ୍ରଥମ ସ୍ତର ଗଦ୍ୟରେ ରଚିତ-ହେଲେହେଁ ଏହା ସଙ୍ଗୀତାତ୍ମକ ଓ ଛନ୍ଦମୟ । ପୁରାଣ ଓ ଧର୍ମ ସାହିତ୍ୟର ପ୍ରଭାବରେ ଭାବ୍ୟର ସ୍ତରରେ ଯେଉଁ ଗଦ୍ୟର ବିଭବମୂର୍ତ୍ତି ନିର୍ମାଣ କରାଯାଇଛି ତାହା ମୁଖ୍ୟତଃ ଆବେଗ ପ୍ରଧାନ ଓ ଅନୁଭୂତି ରସାଣିତ । ଗଦ୍ୟ ସାହିତ୍ୟରେ ଆବେଗ ଓ ଅନୁଭୂତି ଅପେକ୍ଷା ପ୍ରଜ୍ଞା ଓ ଚିନ୍ତାଶୀଳତାର ପ୍ରାଧାନ୍ୟ ପରିଲକ୍ଷିତ ହୁଏ । ଏହି ଦୃଷ୍ଟିରୁ ପଦ୍ୟମିଶ୍ରିତ ଆଳଙ୍କାରିକ ଗଦ୍ୟ ବୁଧି ସୁଧାନିଧି ମଧ୍ୟ ଓଡ଼ିଆ ଗଦ୍ୟ ସାହିତ୍ୟର ପ୍ରଥମ ପାବଛି ରୂପେ ବିବେଚିତ ହୋଇ ନ ପାରେ । କାରଣ ପଦ୍ୟ ସାହିତ୍ୟର ସମୃଦ୍ଧ ଓ ବିଶାଳ ପରିଧି ମଧ୍ୟରୁ ଏହା ମୁକ୍ତ ହୋଇ ପାରିନାହିଁ । କିନ୍ତୁ ମୁକ୍ତିର ଏକ ସ୍ୱାଦ ପୂର୍ଣ୍ଣ ପ୍ରାଣରେ ଅସ୍ୱାଦନ କରିଛି ଅଷ୍ଟାଦଶ ଶତାବ୍ଦୀର କଥା ସାହିତ୍ୟ 'ଚତୁର ବିନୋଦ' ।

ଗଦ୍ୟ ସାହିତ୍ୟ ବିଚାର ପ୍ରସଙ୍ଗରେ କଥା ସାହିତ୍ୟର ମୂଲ୍ୟାୟନ ଓ ଉପାଦେୟତା ଅନସ୍ୱୀକାର୍ଯ୍ୟ । ପ୍ରତ୍ୟେକ ଦେଶର ସାହିତ୍ୟରେ କଥା ସାହିତ୍ୟର ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି । କଥା ଶୁଣିବାର ଅଭିଳାଷ ମଣିଷ ଭିତରେ ଏକ ଆଦିମ ପିପାସା । ଇତିହାସ ପୂର୍ବ ମଣିଷ ଦୁର୍ଯୋଗର ଘନ ଅନ୍ଧାର ରାତିକୁ ଅତିବାହିତ କରିଛି ଶ୍ରୁତିରଂଜିତ କାହାଣୀର ଅବତାରଣା କରି । ସେ କାଳର ମଣିଷର କାହାଣୀ ଥିଲା ପ୍ରକୃତି ବିରୁଦ୍ଧରେ ସଂଗ୍ରାମର କାହାଣୀ । ରାତି ଆଣିଦିଏ ବିଭୀଷିକା, ଅଭିଶାପ । ତୁଷାର ଓ ହିଂସ୍ର ବନ-ଜନ୍ତୁଙ୍କଠାରୁ ଆତ୍ମରକ୍ଷା କରିବା ପାଇଁ ମଣିଷ ଖୋଜେ ନିରାପଦ ଆଶ୍ରୟ । ସୂର୍ଯ୍ୟ ଉଦୟ ହେଲେ ତୁଷାର ଦ୍ରବୀଭୂତ ହୋଇ ଜଳଧାର ସୃଷ୍ଟି କରେ— ଶ୍ୟାମଳ ସୌନ୍ଦର୍ଯ୍ୟରେ ପୃଥିବୀ ହସି ଉଠେ । ପୁଣି ବନ୍ୟ ପଶୁ ସୂର୍ଯ୍ୟର ପ୍ରଖର ରଶ୍ମିରେ ଘନ ଅରଣ୍ୟରେ ଆତ୍ମ-ଗୋପନ କରେ । ମଣିଷ ହୁଏ ନିରାପଦ, ନିଶଂକ, ଜୀବନ ସନ୍ଧାନୀ । ତେଣୁ ଏଯୁଗର ଗଳ୍ପ ପ୍ରକୃତି ବିରୁଦ୍ଧରେ ମଣିଷର ସମର ଓ ଶକ୍ତିର କାହାଣୀ ନେଇ ରୂପାୟିତ । ଆତ୍ମରକ୍ଷା ପରେ ମଣିଷ ପରିବର୍ତ୍ତନର ଧାରା ନେଇ ପହଞ୍ଚିଲା ଆତ୍ମବିସ୍ତାରର ଯୁଗରେ । ଦୈତ୍ୟ, ଦାନବ ଆଉ ରାକ୍ଷସୀଙ୍କୁ ପରାସ୍ତ କରି ମଣିଷ ନିଜର ଶକ୍ତି ସମ୍ପଦକୁ ପ୍ରତିଷ୍ଠିତ କରିଛି ଆଉ ଗଢ଼ିଛି ଏକ ନୂତନ ସଭ୍ୟତା ଆଉ ସାହିତ୍ୟ । ଏ ଯୁଗ ହେଉଛି ରୂପକଥାର ଯୁଗ ଅତିବାସ୍ତବ କଳ୍ପନାର ଯୁଗ ।

ରୂପକଥାର ଅବାସ୍ତବ କଳ୍ପନା ବିଳାସିତା ଜୀବନ ସତ୍ୟ ମଣ୍ଡିତ ହୋଇ ଭିନ୍ନ ମୂର୍ତ୍ତି ଧାରଣ କରିଛି । ଦୈହିକ ଶକ୍ତିର ପ୍ରତିଷ୍ଠା ପରେ ଆସିଛି ମନର ଉଲ୍ଲାସ । ପ୍ରାଣର ଆବେଗର ସ୍ପର୍ଶ । ମଣିଷ ସାଜିଛି ପ୍ରେମିକ । ଆଉ ପ୍ରେମ ପାଇଁ ଅନେକ ଦୁଃସାହସିକତାର ନିର୍ଭୀକ ସୈନିକ । ତେଣୁ ମଧ୍ୟଯୁଗର ସାହିତ୍ୟ ହେଲା ରୋମାନ୍ସ ପ୍ରଧାନ ଓ ଏ ଯୁଗ ରୋମାଣ୍ଟିକ ଯୁଗ ଭାବରେ ଆଖ୍ୟାୟିତ । ଏ ସବୁ ଭିତରେ କଥା ସାହିତ୍ୟରେ ଆଉ ଗୋଟିଏ ଧାରା ପ୍ରବାହିତ ହେଲା-ନୀତିଶିକ୍ଷାର ସ୍ଥିତିଶୀଳ ତତ୍ତ୍ୱ । ଏହା ରୂପ ତଥା ପରି ଭାବ ଗତ ସ୍ୱକୀୟତାରେ ଉନ୍ନତ ନୁହେଁ—ମଣିଷର ସାମାଜିକ, ପାରିବାରିକ ସ୍ଥିତି-

ମୁଖିନତାର ଉଜ୍ଜ୍ୱଳ ଆଦର୍ଶରେ ଦୀପ୍ତିମନ୍ତ । ଆନନ୍ଦଦାନ ଓ ନୀତିଶିକ୍ଷାର ବଳିଷ୍ଠ ମାଧ୍ୟମ ରୂପେ କଥା ସାହିତ୍ୟ ଏକ ସ୍ୱତନ୍ତ୍ର ସୌନ୍ଦର୍ଯ୍ୟ ଓ ବିଶିଷ୍ଟ ମର୍ଯ୍ୟାଦାରେ ଅଭିଷିକ୍ତ । କଥା ସାହିତ୍ୟର ଏଇ ସମସ୍ତ ସମ୍ପଦରେ ମଣ୍ଡିତ କାବ୍ୟମୁଗର ଏକ ଅନବଦ୍ୟ ବ୍ୟତିକ୍ରମ ହେଉଛି ଓଡ଼ିଆ ଗଦ୍ୟ ସାହିତ୍ୟର ପ୍ରଥମ ସାର୍ଥକ ରସଦବଢ଼ କାହାଣୀ ଚତୁର ବିନୋଦ ।

## ବ୍ରଜନାଥଙ୍କ ବ୍ୟକ୍ତିତ୍ୱ ଓ ପ୍ରତିଭା

ସୃଷ୍ଟି ହେଉଛି ସ୍ରଷ୍ଟାର ପ୍ରତିବିମ୍ବ । ସ୍ରଷ୍ଟାର ବ୍ୟକ୍ତ ଚେତନାର ପରିଚୟ ଲାଭ ପାଇଁ ବିଭିନ୍ନ ରଚନାର ଅନୁଶୀଳନ ଏକାନ୍ତ ଆବଶ୍ୟକ। ପ୍ରକୃତି ମଧ୍ୟରେ କବି ନିଜର ବିଶ୍ୱାସ, ଚିନ୍ତା ଚେତନା, ମନୋବୃତ୍ତି ଓ ନିଜ ଜୀବନର ପ୍ରତିଛବି ଲିପିବଦ୍ଧ କରିଯାଏ । ରାଧାନାଥ ଜଣେ ଦୁଃଖବାଦୀ ଓ ମଧୁସୂଦନ ଆନନ୍ଦବାଦୀ —ଏ କଥା ପ୍ରତିପନ୍ନ ହୁଏ ସେମାନଙ୍କ ରଚନାର ବିଚାର ବିଶ୍ଳେଷଣ ଦ୍ୱାରା । ବ୍ରଜନାଥଙ୍କ ବ୍ୟକ୍ତିତ୍ୱର ପରିଚୟ ତାଙ୍କ କାବ୍ୟ କବିତା ଆଲୋଚନାରୁ ସହଜରେ ମିଳେ । ସେ ଥିଲେ ଜଣେ ପ୍ରତିଭାଧାରୀ କବି । କିନ୍ତୁ ତାଙ୍କ କବି ପ୍ରତିଭା ଅଭାବ ଅନଟନର ଯନ୍ତ୍ରଣା ନିକଟରେ ନତଜାନୁ ହୋଇଥିଲା । ସେ ଥିଲେ ଜୀବନ ସଂଗ୍ରାମର ନିର୍ଭୀକ ସୈନିକ । ଦୁଃଖ ଦାରିଦ୍ର୍ୟର ଅଶେଷ ଲାଞ୍ଛନା ଭିତରେ ସେ ଜୀବନ ପ୍ରତି ବୀତସ୍ପୃହ ନ ହୋଇ ନୂଆ ଉତ୍ସାହ ନେଇ ଆଗେଇ ଯାଇଛନ୍ତି ସୁସ୍ଥ ନିଶ୍ଚିନ୍ତ ଜୀବନ ଉପଭୋଗ ଅଭିପ୍ରାୟରେ । ଯେଉଁଠି ସେ ଦେଖିଛନ୍ତି ରାଜ ଅନୁଗ୍ରହର ଅକୁଣ୍ଠ ପ୍ରକାଶ, ସେଠି ରାଜପ୍ରଶସ୍ତିରେ ହୋଇଛନ୍ତି ନିଃସଙ୍କୋଚ, ଅବଶ୍ୟ ବ୍ରଜନାଥଙ୍କ ବ୍ୟକ୍ତିତ୍ୱ ଏଥିରେ ଖଣ୍ଡିତ ହୋଇପଡ଼ିଛି । ଦୀନକୃଷ୍ଣଙ୍କ ପରି ବ୍ରଜନାଥ ମୂର୍ଖକୁ ସ୍ତୁତି କରିବାଠାରୁ ଅନ୍ନହୀନନ ଶ୍ରେୟସ୍କର ବୋଲି ବିଚାର କରିନାହାନ୍ତି । ବରଂ ମୂର୍ଖର ସ୍ତୁତି କରି ଜୀବିକା ଉପାର୍ଜନର ପଥ ପ୍ରଶସ୍ତ କରିଛନ୍ତି । ଏଥିରେ ତାଙ୍କର ଅନନ୍ୟ ବ୍ୟକ୍ତି ସୌନ୍ଦର୍ଯ୍ୟ ବହୁ ଭାବରେ ମ୍ଳାନ ହୋଇଯାଇଛି । ପୁଣି ଉଦର ପୋଷଣ ପାଇଁ ସେ ଗୋଟିଏ ରାଜାର ଆଶ୍ରୟ ତ୍ୟାଗ କରି ଅନ୍ୟ ଜଣେ ରାଜାଙ୍କର ଆଶ୍ରୟ ପ୍ରାର୍ଥୀ ହୋଇଛନ୍ତି । ଅର୍ଥ ପାଇଁ ତାଙ୍କର ଏଇ ଅସୁସ୍ଥ ମନୋଭାବକୁ 'ଗଣିକା-ବୃତ୍ତି' ଭାବରେ ମଧ୍ୟ ସମାଲୋଚନା କରାଯାଇଛି । ସେ ନିଜେ ମଧ୍ୟ ଏ ସମ୍ବନ୍ଧରେ ସଚେତନ ଥିଲେ ।

କି ହେବ ଏ ଗୁଣ ଥାଇ  ଗ୍ରାମୁରୁ ତ ଦୟା ନାହିଁ
ପର ପୁରୁଷେ କି ଯାଇ ଯୁବତୀ କାଳ
ଶହ ଶହ ଟଙ୍କା ମୋତେ  କେଉଁ ରାଜା ଦେବେ କେତେ
ପ୍ରଭୁ ଆଉଁ ବିଟପୀ ହେଲଟି କେବଳ ।

'ରାଜସଭା'ରେ କବି ନିଜକୁ 'ବିଟପୀ' ବୋଲି ସ୍ପଷ୍ଟ ସ୍ୱୀକାର କରିଛନ୍ତି । ମଣିଷ ଚରିତ୍ରର ଏକ ବିଶେଷ ଦିଗ ଆତ୍ମଶ୍ଳାଘା । ଆତ୍ମବଡ଼ିମା ଓ ପ୍ରଶଂସାରେ ସେ ହୁଏ

ପଞ୍ଚମୁଖ । ବ୍ରଜନାଥ ମଧ୍ୟ ନିଜ ବଂଶ ଓ ତାହାର ଟେକ ସମ୍ବନ୍ଧରେ ଅଭିମାନ ପ୍ରକାଶ କରିଛନ୍ତି ଏକାଧିକ ଭାବ୍ୟରେ । କିନ୍ତୁ ନିଜକୁ ସେ ବିଶ୍ଳେଷଣ କରିଛନ୍ତି । ତାଙ୍କ ବ୍ୟକ୍ତିତ୍ୱର ଏହା ଏକ ମହତ୍ତ୍ୱ ଆଦର୍ଶ ପ୍ରଖ୍ୟାପନ କରେ ।

ପ୍ରତିକୂଳ ପରିବେଶକୁ ଅତିକ୍ରମ କରିବାକୁ ହେଲେ ମଣିଷର ପ୍ରୟୋଜନ ଆତ୍ମବିଶ୍ୱାସ । ବ୍ରଜନାଥଙ୍କର ନିଜ କବି ଶକ୍ତି ସମ୍ବନ୍ଧରେ ପ୍ରଚଣ୍ଡ ଆତ୍ମବିଶ୍ୱାସ ଥିଲା । ସେ ଜାଣିଥିଲେ କବିତ୍ୱ କୁଶଳତାରେ ଯେ କୌଣସି ରାଜସଭାରେ ପ୍ରତିଷ୍ଠା ଅର୍ଜନ ଓ ରାଜାଙ୍କୁ ମୋହିତ କରିବା ତାଙ୍କ ପକ୍ଷରେ ଦୁଃସାଧ୍ୟ କର୍ମ ନୁହେଁ । ସେଥିପାଇଁ ଅନ୍ତଃପୁର ଲଞ୍ଛନା ଭୋଗ କରି କୌଣସି ନିର୍ଦ୍ଦିଷ୍ଟ ରାଜାଙ୍କ ସ୍ତୁତିବାଦ ଭାବରେ ସେ ଜୀବନ ଅତିବାହିତ କରିନାହାନ୍ତି । ତାଙ୍କର ଗୁଣ ସମ୍ବନ୍ଧରେ ସେ ଥିଲେ ସଚେତନ । କିନ୍ତୁ ସେ ବୁଝିଥିଲେ ରାଜପ୍ରଶସ୍ତି ଗାନ କରି ରାଜାଙ୍କୁ ବଶୀଭୂତ କରି ତାଙ୍କ ପୃଷ୍ଠପୋଷକତା ଲାଭ ନ କଲେ ବଞ୍ଚିବା ଦୁଷ୍କର । ତେଣୁ ରାଜାଙ୍କୁ ତାଙ୍କର 'ଦୈବପୁରୁଷ' ରୂପେ ସ୍ୱୀକାର କରିଛନ୍ତି । ତଥାପି ଜଣେ ସ୍ତୁତିକାର ଭାବରେ ରାଜାଙ୍କର ଅନୁଗ୍ରହ ପ୍ରାର୍ଥୀ ହୋଇ ଅଭିଜାତ ଅପଚୟ ଓ ତୁଙ୍ଗ ବ୍ୟକ୍ତିତ୍ୱକୁ ମ୍ଳାନ କରି କବି ଏକ କଳଙ୍କର ଦୃଷ୍ଟାନ୍ତ ରଖିଗଲେ । ଅବଶ୍ୟ ଜଣେ ବସ୍ତୁବାଦୀ ଭାବରେ ରାଜାମାନଙ୍କ ଚରିତ୍ରର ଏକ ସତ୍ୟ ନିପୁଣ ଚିତ୍ର ଅଙ୍କନ କରି-ଯାଇଛନ୍ତି । ରାଜାମାନଙ୍କୁ ସେ ଯେପରି କଠୋର ଭାବରେ ସମାଲୋଚନା କରିଛନ୍ତି ସେ ସବୁ ତାଙ୍କର ଦୁଃସାହସିକ ବ୍ୟକ୍ତିତ୍ୱର ନିଦର୍ଶନ । ଏକ ପକ୍ଷରେ ଅର୍ଥ ଉପାର୍ଜନର ଆକାଂକ୍ଷା ଯେପରି ଥିଲା ପ୍ରବଳ, ଅନ୍ୟପକ୍ଷରେ ଆତ୍ମସମ୍ମାନବୋଧ ଥିଲା ପ୍ରଚଣ୍ଡ ।

ଧର୍ମବିଶ୍ୱାସ ସମ୍ବନ୍ଧରେ ଆଲୋଚନା କଲେ କବିଙ୍କ ବ୍ୟକ୍ତିତ୍ୱର ଆଉ ଏକ ଦ୍ୱାର ଉଦ୍‌ଘାଟିତ ହୁଏ । ତାଙ୍କର ଗ୍ରନ୍ଥର ଆରମ୍ଭରେ ମଙ୍ଗଳାଚରଣ କୌଣସି ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ କରାଯାଇ ନାହିଁ । ବିଶେଷ ଭାବରେ କୃଷ୍ଣଙ୍କ ସମ୍ବନ୍ଧରେ କାବ୍ୟରଚନା କରି ନନ୍ଦନନ୍ଦନ ଶ୍ରୀକୃଷ୍ଣଙ୍କ ଆରାଧନା କରିଛନ୍ତି । କିନ୍ତୁ ବିଚକ୍ଷଣରେ ଶ୍ରୀକ୍ଷେତ୍ରର ଅଧିଷ୍ଠାତ୍ରୀ ଦେବୀ ବିମଳାଙ୍କୁ ନମସ୍କାର କରିଛନ୍ତି । ଅମ୍ବିକା ବିଳାସରେ ଶିବ ଓ ଶିବାଙ୍କୁ ସ୍ତୁତି କରିବା ସଙ୍ଗେ ସଙ୍ଗେ ଚତୁର ବିନୋଦରେ ଗଣେଶଙ୍କୁ ନମସ୍କାର ଜ୍ଞାପନ କରି ମନସ୍କାମନା ସିଦ୍ଧି ପାଇଁ ଶିବଙ୍କୁ ବନ୍ଦନା କରି "ତ୍ରିପୁର-ନାଗର-ନାଗଶ୍ରୀ ଧୃତିଧର" ସକଳ କଳୁଷ ହାରକ ବିଷ୍ଣୁଙ୍କୁ ରକ୍ଷା କରିବା ପାଇଁ ପ୍ରାର୍ଥନା କରିଛନ୍ତି । ତେଣୁ ତାଙ୍କୁ ଉଦାରପନ୍ଥୀ କୁହାଯାଇପାରେ କିନ୍ତୁ ଭ୍ରାନ୍ତି ଭାବରେ ସ୍ୱୀକାର କରିବାର କୌଣସି କାରଣ ନାହିଁ । ତେବେ ଧାନକୃଷ୍ଣ ବା ଅଭିମନ୍ୟୁଙ୍କ ପରି ସେ କୌଣସି ନିର୍ଦ୍ଦିଷ୍ଟ ଦେବତାଙ୍କୁ ଆରାଧନା କରି ନାହାନ୍ତି । ଧର୍ମ ସମ୍ବନ୍ଧରେ ତାଙ୍କର ଏହି ଉଦାର ମତବାଦ ତାଙ୍କର ବ୍ୟକ୍ତିତ୍ୱର ସୌନ୍ଦର୍ଯ୍ୟକୁ ପ୍ରକାଶ କରେ ।

ପରଂପରାର ନିର୍ଦ୍ଦିଷ୍ଟ ମାର୍ଗରେ ଗତି କରୁଥିବା କାବ୍ୟରସିକମାନଙ୍କ ମଧ୍ୟରେ ନିର୍ଭୀକ ବ୍ୟକ୍ତିତ୍ୱ ଓ ମୌଳିକ ଚିନ୍ତାଶକ୍ତିର ଗୋଟିଏ ଅଭ୍ରାନ୍ତ ନମୁନା—ଚତୁର

ବିନୋଦ । ରାଜନଙ୍କ ଛଳୋକ୍ତି, ସୁଣ୍ଡି ଗୁଣ୍ଡିକେ ଓ ସମର ତରଙ୍ଗ-ସୃଷ୍ଟି କରି ବ୍ରଜନାଥ ଏକ ବିସ୍ମୟକର ବ୍ୟକ୍ତିତ୍ୱର ଅଧିକାରୀ ହୋଇ ପାରିଛନ୍ତି ।

ସ୍ରଷ୍ଟା ସମସ୍ତ ଓ ସମାଜର ସଂବେଦକ ଓ ସଂବାହକ । ସମସ୍ତର ଆକାଂକ୍ଷା ଓ ଆବେଦନକୁ ଅସ୍ୱୀକାର କରି ସେ ଅଗ୍ରେଇ ପାରେନାହିଁ । ତାର ବ୍ୟକ୍ତିଗତ ରୁଚି ଓ ଅଭିଳାଷକୁ ସେ ସମସ୍ତର ଚେତନା ଭିତରେ ମିଶାଇ ଦିଏ । ଯୁଗ ନିର୍ଦ୍ଦେଶର ଦେହଳିକୁ ଅତିକ୍ରମ କରିବା ତା'ପକ୍ଷରେ ଦୁଃସାଧ । କିନ୍ତୁ ପ୍ରତିଭାଶାଳୀ ସ୍ରଷ୍ଟା ସମସ୍ତର ନିବିଷ୍ଟ ଆଲିଙ୍ଗନ ପାଖରୁ ମୁକ୍ତି ଲଭି କରି ତାର ସଞ୍ଚଳକ ହୁଏ । ସେ ସୃଷ୍ଟି କରେ ନୂତନ ଆକାଂକ୍ଷା ଅଭି ମଣିଷ ଭିତରେ ଥିବା ଅଶେଷ ଆକୁଳତାର ଅଭିନବ ଅଭିବ୍ୟଞ୍ଜନା । ପୁରାତନର ଘନ ଆଶ୍ଳେଷ ଭିତରେ ଅନନ୍ୟାଶ୍ରୟୀ ହୋଇ ଆତ୍ମସମର୍ପଣ ନ କରି ଯିଏ ବଞ୍ଚି ରହିବାର ସ୍ୱପ୍ନ ସଞ୍ଚାର କରେ, ତାର ସୃଷ୍ଟି ଭିତରେ ଚିହ୍ନିତ ହୋଇ-ଯାଏ ପ୍ରତିଭାର ସ୍ୱାକ୍ଷର । ଗତାନୁଗତିକ ଚିନ୍ତାଧାରାକୁ ସମୂଳ କରି ବିକାଶୋନ୍ମୁଖୀ ଭାବଧାରାକୁ ରେଖାଙ୍କିତ କରିବାରେ ପ୍ରତିଭାର ପ୍ରତିଶ୍ରୁତି । ବ୍ରଜନାଥଙ୍କ କୃତିସମୂହ ଏକ ଭାବର ମୂର୍ଚ୍ଛନା ନୁହେଁ, ସାହିତ୍ୟ ବିପଞ୍ଚିରେ ସେ ଉତ୍ତୋଳନ କରିଛନ୍ତି ବିଭିନ୍ନ ସ୍ୱର ମାଧୁରୀ । ସମସ୍ତର ସମର୍ଥକ ଭାବରେ ଯୁଗଚେତନାର ଅଗ୍ନିରେ ନୂତନ ସ୍ଫୁଲିଙ୍ଗ ସଞ୍ଚାର କରିବାର ନିର୍ଭୀକ ସୈନିକ ବ୍ରଜନାଥ ଓଡ଼ିଆ ସାହିତ୍ୟକୁ ଅଗେଇ ନେଇଛନ୍ତି ବିଭିନ୍ନ ମାର୍ଗରେ । ନୂଆ ବାଟ ନ ଫିଟାଇ ଚର୍ବିତ ଚର୍ବଣରେ ଘାଣ୍ଟି ହେବା ପ୍ରତିଭାର ନିଦର୍ଶନ ନୁହେଁ । ବ୍ରଜନାଥଙ୍କ କବିମାନସ ପୁରାତନକୁ ଗ୍ରହଣ କରିବା ସଙ୍ଗେ ସଙ୍ଗେ ନୂତନକୁ ଅଭିନନ୍ଦନ କରିଛି । ପ୍ରାଚୀନ ଓ ନବୀନର ସମନ୍ୱୟ ଭୂମି ଉପରେ ଦଣ୍ଡାୟମାନ ହୋଇ ତାଙ୍କ ମନ କେବେ ଅତୀତମୁଖୀ ହୋଇଛି ତ କେବେ ହୋଇଛି ପୁରୋଗାମୀ । ତାଙ୍କର ଏଇ କବି ମାନସର ଦୃଷ୍ଟାନ୍ତ ଏକ ପକ୍ଷରେ ଅମ୍ବିକା ବିଳାସ, କେଳି କଳାନିଧି, ଶ୍ୟାମ ରାସୋତ୍ସବ, ପୋଇ, ଚଉତିଶା, ଗୀତ ପଦ—ଅନ୍ୟ ପକ୍ଷରେ ସମର ସାହିତ୍ୟ, ସମର ତରଙ୍ଗ, ବ୍ୟଙ୍ଗ ସାହିତ୍ୟ, ରାଜନ୍ୟଙ୍କ ଛଳୋକ୍ତି, କଥା ସାହିତ୍ୟ ଚତୁର ବିନୋଦ, ହିନ୍ଦୀ କାବ୍ୟ ସୁଣ୍ଡି ଗୁଣ୍ଡି ବିକେ । ଗତାନୁଗତିକ ସୃଷ୍ଟି ସମ୍ଭାର ଓ ପ୍ରାଣଧର୍ମୀ ନୂତନ କୃତିସମୂହ —ପ୍ରତ୍ୟେକରେ ବ୍ରଜନାଥଙ୍କ ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ ପ୍ରକାଶିତ । ବ୍ରଜନାଥ ଅଷ୍ଟାଦଶ ଶତାବ୍ଦୀର କବି । ସେ ସମୟରେ ଯେଉଁ ବିଳାସୀ ଦରବାରୀ ଜୀବନ ତା' ସହିତ ସେ ଓତପ୍ରୋତଃ ଜଡ଼ିତ । ତେଣୁ ତାଙ୍କର ସୃଷ୍ଟି ଚେତନା ସେଇ ପରିବେଶ ଓ ଆଦର୍ଶର ପ୍ରତିଫଳନ । ତତ୍କାଳୀନ ସାହିତ୍ୟର ସୃଷ୍ଟି ଧାରା ତାଙ୍କର ପ୍ରତ୍ୟେକ ରଚନାରେ ସୁସ୍ପଷ୍ଟ । ରୀତିଯୁଗର ମୁଖ୍ୟ ତିନୋଟି ବିଭବ ଶୃଙ୍ଗାରିକତା, ଆଳଙ୍କାରିକତା ଓ ବହୁଶାସ୍ତ୍ର ଦର୍ଶିତା ବଡ଼ଜେନା ସାହିତ୍ୟର ଗୋଟିଏ ଗୋଟିଏ ଅଲଂଘ୍ୟ ସ୍ତମ୍ଭ ; କିନ୍ତୁ ଏହି ପାରଂପାରିକ ସାହିତ୍ୟ ବଡ଼ଜେନାଙ୍କ ମୌଳିକ ପ୍ରତିଭାର ପରିମାପକ ନୁହେଁ । ଯେଉଁଠି ସେ ଦେଇଛନ୍ତି ନୂତନ ପଥର ସନ୍ଧାନ, ସେ ହୋଇଛନ୍ତି ନବୀନ ଭାବରି ଉଦ୍‌ବୋଧକ ସେଇଠି ତାଙ୍କର

ପ୍ରଚ୍ଛଦର-ଶାଣିତ ବ୍ୟଙ୍ଗ ଝଲସି ଉଠିଛି । ଭାବ ବିନୋଦୀ ବ୍ରଜନାଥଙ୍କ ବହୁମୁଖୀ ପ୍ରତିଭାର ଏକ ଦୀପ୍ତ ନିଦର୍ଶନ ଚତୁର ବିନୋଦ । ପୁରାତନ ଜୀର୍ଣ୍ଣ ଅସ୍ପଷ୍ଟ ମୂର୍ତ୍ତିରେ ନୂତନ ପ୍ରଲେପ ଦେଇ ବ୍ରଜନାଥ ଯେଉଁ କଥା ମୂର୍ତ୍ତି ଗଢ଼ି ତୋଳିଛନ୍ତି ତା' ଯେତିକ ପ୍ରାଚୀନ ମୁଦ୍ରା ବହନ କରିଛି ସେତିକ ନୂତନ ଦୀପ୍ତିରେ ଦୀପ୍ୟମାନ । ଏଇଠି ପ୍ରତିଭାର ସର୍ବଶ୍ରେଷ୍ଠ ସ୍ୱାକ୍ଷର ।

## ଚତୁର ବିନୋଦର କଥାରୂପ

ପଦ୍ୟସର୍ବସ୍ୱ ପ୍ରାଚୀନ ସାହିତ୍ୟରେ କଥା ସାହିତ୍ୟ ଚତୁର ବିନୋଦ ଏକ ବିସ୍ମୟକର ରଚନା । ଚତୁରବିନୋଦ ପୂର୍ବରୁ ରୁଦ୍ର ସୁଧାନିଧିକୁ ଗଦ୍ୟ ସାହିତ୍ୟର ପ୍ରଥମ ଦୀପସ୍ତମ୍ଭ ରୂପେ ସମାଲୋଚକମାନେ ଯେତେ ଦୃଢ଼ ଅଭିମତ ପ୍ରକାଶ କଲେହେଁ ଏହା ଯଥାର୍ଥରେ ପଦ୍ୟାତ୍ମକ ଗଦ୍ୟ । ଏହି ଅସମ୍ପୂର୍ଣ୍ଣ ଗଦ୍ୟକାବ୍ୟରେ ଗୋଟିଏ ମାତ୍ର ଗଳ୍ପର ଅବତାରଣା କରାଯାଇଛି ଶିବଙ୍କ ମୁଖରେ । କିନ୍ତୁ ଚତୁର ବିନୋଦରେ ଗୋଟିଏ ବୃକ୍ଷ ଶାଖାପ୍ରଶାଖା ମେଲାଇ ଦେଇ ବିରାଟ ମହୀରୂହ ରୂପେ ଦଣ୍ଡାୟମାନ ହୋଇଛି । ଏ ସମୟରେ ଓଡ଼ିଆ କାବ୍ୟ ସାହିତ୍ୟ ଯଥେଷ୍ଟ ସମୃଦ୍ଧି ଲାଭ କରିଥିଲେ ମଧ୍ୟ ଗଦ୍ୟ ସାହିତ୍ୟ ଅନୁନ୍ନତ ଅବସ୍ଥାରେ ରହିଛି । ଲୋକମୁଖରେ ପ୍ରଚଳିତ କାହାଣୀଗୁଡ଼ିକ ଯୁଗ ଯୁଗ ଧରି ବହୁ ପରିବର୍ତ୍ତନ ମଧ୍ୟ ଦେଇ ଗତି କରି ଆସୁଥିଲେ । ସେମାନଙ୍କର କୌଣସି ନିର୍ଦ୍ଦିଷ୍ଟ ଗୃହିତ୍ରିକ ଲକ୍ଷଣ ନଥିଲା । ସେ କାହାଣୀ ଗୁଡ଼ିକ ସମ୍ବନ୍ଧରେ ବିଭିନ୍ନ ଦୃଷ୍ଟି କୋଣରୁ ବିଚାର ଆଲୋଚନା କରିବାର ଅବକାଶ ନଥିଲା । ଆମର ସାମାଜିକ, ନୈତିକ ଜୀବନ ଉପରେ ତାର ପ୍ରଭାବ କେତେ ବ୍ୟାପକ ସେ ସମ୍ବନ୍ଧରେ ନିର୍ଦ୍ଦିଷ୍ଟ ମତ ବ୍ୟକ୍ତକରିବା ନିଷ୍ପ୍ରୟୋଜନ ନଥିଲା । ହୁଏତ କେତେକାଳ ପରେ କୌଣସି କୌଣସି କାହାଣୀ ବିଲୁପ୍ତ ମଧ୍ୟ ହୋଇ ଯାଉଥିଲା ।

ବିଶ୍ୱାସ ଥିଲା ସାହିତ୍ୟ କେବଳ ବିଦଗ୍ଧର ରସତୃପ୍ତି ପାଇଁ ଅଭିପ୍ରେତ । ମୁଷ୍ଟିମେୟ ସଂଖ୍ୟକ ପଣ୍ଡିତ ବ୍ୟକ୍ତିଙ୍କ ପାଇଁ କାବ୍ୟ କବିତା ରଚିତ ହେଉଥିଲା । ଶ୍ରୁତି ସୁଖକର ପଦ ବିନ୍ୟାସରେ ସାହିତ୍ୟର ମର୍ଯ୍ୟାଦା ନିର୍ଣ୍ଣିତ ହେଉଥିଲା । କିନ୍ତୁ ଲୋକ ସାଧାରଣଙ୍କୁ ଆନନ୍ଦ ଦେବା ପାଇଁ କୌଣସି ସଚେତନ ପ୍ରଚେଷ୍ଟା ନଥିଲା । କେବଳ ଲୋକମୁଖ ପ୍ରଚଳିତ କାହାଣୀଗୁଡ଼ିକ ଆନନ୍ଦ ଦାନ ପାଇଁ ଓ ନୀତି ଉପଦେଶ ପ୍ରଦାନ କରିବା ପାଇଁ ଉଦ୍ଦିଷ୍ଟ ଥିଲା । କିନ୍ତୁ ସେ ସବୁ ସାହିତ୍ୟିକ ଗୌରବ ଲାଭ କରି ପାରିନଥିଲେ । କବି ବ୍ରଜନାଥ ପ୍ରଥମେ ଓଡ଼ିଶାରେ ପ୍ରଚଳିତ କାହାଣୀଗୁଡ଼ିକ ସଂଗ୍ରହ କରି ନିର୍ଦ୍ଦିଷ୍ଟ ଲକ୍ଷ୍ୟର ପରିପୂର୍ତ୍ତି ଦିଗରେ ସହାୟକ କାହାଣୀକୁ ଏକତ୍ର କରି ଗଳ୍ପପେଟିକାଟିଏ ପ୍ରସ୍ତୁତ କରିଛନ୍ତି ।

ପୂର୍ବେ ଗଳ୍ପସାଗରମାନେ ରାଜଦରବାରରେ ଲୋକ ଚିତ୍ତରଞ୍ଜନକାରୀ ଗଳ୍ପ ବା କାହାଣୀ କହି ବିଳାସୀ ଅଳସ ରାଜଚିତ୍ତକୁ ଓ ପାରିଷଦବର୍ଗଙ୍କୁ ଆନନ୍ଦ ଦାନ କରୁଥିଲେ । ଆନୁମାନିକ ଭାବରେ କୁହାଯାଇ ପାରେ ଯେ ହୁଏତ ବ୍ରଜନାଥ ନିଜେ ଏହିପରି

କାହାଣୀଟିରୁ କେଉଁ କେଉଁ ଗଳ୍ପ ସାଗରଠାରୁ ଶୁଣି ତାକୁ ଏକତ୍ର କରି କଥା ସରିତ ସାଗର ବା ପଞ୍ଚତନ୍ତ୍ରର ଢଙ୍ଗରେ କଥକତା ସୁଭଲ ଭଂଗୀ ମିଶାଇ ଏକ ଜୀବନ୍ତ ଶିଳ୍ପ ମୂର୍ତ୍ତି ଗଠନ କରିବାକୁ ଚେଷ୍ଟା କରିଛନ୍ତି । ଚତୁର ବିନୋଦ କବିଙ୍କର ଏହିପରି ଏକ ପ୍ରୟାସ ।

**ଚତୁର ବିନୋଦର କଥାବସ୍ତୁ :—** ରସାଳକାଞ୍ଚନ ନାମକ ନଗରରେ ନେତ୍ରାମୋଦ ନାମରେ ଜଣେ ବୈଶ୍ୟର କନ୍ୟା ଚଞ୍ଚଳାକ୍ଷୀ ଦିନେ ସୁହାଗୀ ନାମ୍ନୀ ସଖୀକୁ ନେଇ ସୁରେଖା ନଦୀକୁ ସ୍ନାନ କରିବାକୁ ଗଲା । ସେଠାରେ ତା' ସହିତ ରାଜକୁମାର ମୋହନାଙ୍ଗର ସାକ୍ଷାତ ହେଲା । ପ୍ରଥମ ଦର୍ଶନରେ ରାଜପୁତ୍ର ସାଧବକୁମାରୀ ପ୍ରତି ଆସକ୍ତ ହୋଇ ପ୍ରେମପ୍ରାର୍ଥୀ ହେଲା । ସନ୍ଧ୍ୟାରେ ପୁରକୁ ଫିବାପାଇଁ ସଖୀଦ୍ୱାରା ସଙ୍କେତ ଦେଇ ଚଞ୍ଚଳାକ୍ଷୀ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲା । ପ୍ରେମ ଚଞ୍ଚଳ ମୋହନାଙ୍ଗ ଯଥା କାଳରେ ଚଞ୍ଚଳାକ୍ଷୀ ସହିତ ଏକାନ୍ତପୁରରେ ସାକ୍ଷାତ କଲା । କିନ୍ତୁ ସେଦିନ ସାଧବ କୁମାରୀର ଗୌରୀବ୍ରତ । ରାତି ଉଜାଗର ରହି ସେ ବ୍ରତ ଉଦ୍‌ଯାପନ କରିବା ପାଇଁ ମୋହନାଙ୍ଗକୁ ହାସରସ କଥାଟିଏ କହିବା ନିମିତ୍ତ ସୁହାଗୀ ଅନୁରୋଧ କଲା । ମୋହନାଙ୍ଗ ହାସବିନୋଦ ରସ ବିନୋଦ, ନୀତି ବିନୋଦ ଓ ପ୍ରୀତି ବିନୋଦ—ଏହିପରି ଚତୁର ବିନୋଦ ଗଳ୍ପର ଅବତାରଣା କରି ଚଞ୍ଚଳାକ୍ଷୀକୁ ବଶୀଭୂତ କରି ପରମ ଆନନ୍ଦ ଲାଭ କଲା ।

**ହାସ ବିନୋଦ :—** ଏଥିରେ ଦୁଇଟି ଗଳ୍ପ ରହିଛି । ହାସ ବିନୋଦ, ଅତି ହାସ ବିନୋଦ । ପ୍ରଥମ ଗଳ୍ପ ହେଉଛି କେଳିନଟ ନଗରର ରାଜା ଅଙ୍ଗଧରଙ୍କର ଧର୍ମବାରଣ ନାମରେ ମନ୍ତ୍ରୀ ଓ କର୍ମଅଦ୍ଧି ନାମରେ ପୁରୋହିତ ଥିଲେ । ପ୍ରଜାମାନେ ଅତ୍ୟନ୍ତ ଦରିଦ୍ର । ରାଜାଙ୍କର ଜାମାତା ସେନାପତି ଚଣ୍ଡଚନ୍ଦ୍ରର ବିଳାପମୁଖୀ କନ୍ୟାକୁ ବର ନ ମିଳିବାରୁ ରାଜା ଦୂତ ପଠାଇ ମାର୍ଜାରମୁଖାକୁ ମୃତ୍ତିକ ଗର୍ତ୍ତରୁ ଆଣିଲେ । ସେ ବିଳାପମୁଖୀ ଗଣ୍ଡରେ ନିଷ୍ଠୁର ଚପେଟାଘାତ କରିବାରୁ ବିଳାପମୁଖୀ ହସିଲା ଓ ଦୁହିଁଙ୍କର ବିବାହ ସମ୍ପନ୍ନ ହେଲା । ବିଳାପମୁଖୀର ଆନନ୍ଦ ପାଇଁ ମାର୍ଜାରମୁଖା ଅତିହାସବିନୋଦ କଥାର ଅବତାରଣା କଲା ।

ମୋତିମାଳା ନାମକ ଏକ ଐଶ୍ୱର୍ଯ୍ୟଶାଳୀ ନଗରରେ କୀର୍ତ୍ତିଚନ୍ଦ୍ର ନାମରେ ଜଣେ ସର୍ବଗୁଣସମ୍ପନ୍ନ ରାଜା ଥିଲେ । ତାଙ୍କ ସଭାକୁ ଦିନେ ଗୁରିଜଣ ବ୍ୟକ୍ତି ଆସି ନିଜ ନିଜ ଗୁଣ ପ୍ରକାଶ କଲେ । ପଣ୍ଡିତ ବେଦ ବିଦ୍ୟାରେ ଏପରି ନିପୁଣ ଯେ, ସେ କୁଳବିଦ୍ୟା ପ୍ରକାଶ କଲେ ପଲ୍ଲବିତ ତରୁ ଶୁଖିଲା କାଠରେ ପରିଣତ ହେବ ଅର୍ଥାତ୍ ଜ୍ଞାନ ବିସ୍ତାର ପରିବର୍ତ୍ତେ ଅଜ୍ଞାନତାକୁ ଲାଭ କରିବ । ବୈଦ୍ୟରାଜ ଆୟୁର୍ବର୍ଦ୍ଧକ ଚୂଡ଼ାମଣି ଜଣାଇଲେ ତାଙ୍କ ହସ୍ତ ସ୍ପର୍ଶ ମାତ୍ରକେ ସମସ୍ତ ରୋଗରୁ ମୁକ୍ତିଲାଭ କରି ରୋଗୀ ମୃତ୍ୟୁ ପଥର ଯାତ୍ରୀ ହେବ । ଜ୍ୟୋତିଷମର୍ଦ୍ଦନ ଗଣକ କହିଲେ ଯେ ତାଙ୍କ ପାଞ୍ଜିରେ ବିବାହରେ ବିଧବାଯୋଗ, ଶ୍ରୀ ସୌଭାଗ୍ୟହାନି ଓ ହସ୍ତପଦ ଭଗ୍ନ ଯୋଗର ବିଧାନ ରହିଛି । ସର୍ବଶେଷରେ ଭଣ୍ଡାରୀ ରକ୍ତହିଲ୍ଲୋଳ ତାର କର୍ମ ନୈପୁଣ୍ୟ ପ୍ରକାଶ କରି କହିଲା ସେ ଯେଉଁ ଗ୍ରାମରେ ସେବା-

କାର୍ଯ୍ୟ କରେ ସେ ଗ୍ରାମ ଶ୍ମଶାନରେ ପରିଣତ ହୁଏ । ସ୍ବର୍ଣକାରଙ୍କର ଏପରି ଅଦ୍ଭୁତ କର୍ମ-ଦକ୍ଷତାର କଥା ଶୁଣି ସବୁ ପରିଷଦଗଣ ଆନନ୍ଦିତ ହେଲେ ଓ ରାଜା ସେମାନଙ୍କୁ ବହୁତ ଧନ ଦାନ କଲେ ।

ମାର୍ଜାରମୁଖୀଠାରୁ ଏ କଥା ଶୁଣି ବିଳାପମୁଖୀ ଝିପିରେ ବୁଡ଼ିବାରୁ ଚତୁର୍ଦ୍ଦିଗରେ ଅନ୍ଧକାର ଘୋଟିଗଲା । ରାଜା ବିଚଳିତ ହୋଇ କନ୍ୟା ଜାମାତାଙ୍କୁ ଯୌତୁକ ଦେଇ ବିଦା କରିଦେଲେ ।

ଏ କଥା ଶୁଣି ଚଞ୍ଚଳାକ୍ଷୀ ଆନନ୍ଦିତା ହୋଇ ଆଉ ଗୋଟିଏ କାହାଣୀ କହିବାକୁ ଅନୁରୋଧ କଲା ।

ରସ ବିନୋଦ—ଏଥିରେ ଚାରିଗୋଟି କାହାଣୀ ବର୍ଣ୍ଣିତ ହୋଇଛି ।

କାଞ୍ଚନବତୀ ନଗରରେ ପୂର୍ଣ୍ଣଚନ୍ଦ୍ର ରାଜାଙ୍କର ଗୋଟିଏ ରୋଗପୀଡ଼ିତା ବ୍ରାହ୍ମଣ ଥିଲା । ତା ନାମ ଚନ୍ଦ୍ରକର ଓ ତାର ରୂପବତୀ କନ୍ୟାର ନାମ ହେମାଙ୍ଗୀ । ମନ୍ତ୍ରୀପୁତ୍ର ତରୁଣକାନ୍ତ ସହିତ ଦିନେ ହେମାଙ୍ଗୀର ପୁରଦ୍ୱାରରେ ସାକ୍ଷାତ ଘଟିଲା ଓ ଦୁହେଁ ପରସ୍ପର ପ୍ରତି ଅନୁରକ୍ତ ହେଲେ । ବିରହରେ ଦୁଇଜଣ ସନ୍ତାପିତ ହେବାରୁ ସେମାନଙ୍କ ପିତାମାତା ଅତ୍ୟନ୍ତ କାତର ହେଲେ । ମନ୍ତ୍ରୀ ବୈଦ୍ୟମାନଙ୍କୁ ଡକାଇ ପୁତ୍ରର ଚିକିତ୍ସା କଲେ । ତନ୍ମଧ୍ୟରୁ ରସଗୁରୁ ନାମକ ବୈଦ୍ୟ କହିଲେ ଯେ ତରୁଣକାନ୍ତ କୌଣସି ରୋଗରେ ପୀଡ଼ିତ ନୁହେଁ, ତା'ର ଅବସ୍ଥା ନର୍ମଦାମୁକ୍ତିକ ପରି ହୋଇଛି । ସମସ୍ତଙ୍କ ଆଗ୍ରହରେ ସେ କଥାଟି ବର୍ଣ୍ଣନା କଲେ ।

ତମାଳକାନ୍ତ ନଗରରେ ରତ୍ନଶେଖର ବଣିଆର ସ୍ତ୍ରୀ ନର୍ମଦା ସ୍ୱାମୀ ପ୍ରବାସୀ ହେବାରୁ କିଶୋର ଚନ୍ଦ୍ରକୁ ନିର୍ଜନରେ ଭେଟିଲା ଓ କାମ ମତ୍ତ ଅବସ୍ଥାରେ ମୁକ୍ତାମାଳା ହରାଇଲା । ଗୃହଲୋକଙ୍କୁ କହିଲା ଯେ ମତ୍ତମୂଷିକ ତାକୁ କ୍ଷତବିକ୍ଷତ କରି ମୁକ୍ତ ମାଳା ନେଇ ଯାଇଛି । କିନ୍ତୁ ମାଳତୀ ନାମ୍ନୀ ଚତୁରା ବ୍ରାହ୍ମଣୀ ସମସ୍ତ ଘଟଣା ପର୍ଯ୍ୟବେକ୍ଷଣ କରି କହିଲା ଗ୍ରୈଷ୍ଠାଦ୍ୱାରୀ ଲାଗି ଯେମିତି ସିଂହଦ୍ୱାର ଜଳିଲା, ସେମିତି ମୂଷିକ ଗର୍ତ୍ତରେ ଖୋଜିଲେ କ'ଣ ମୁକ୍ତାମାଳୀ ମିଳିବ ? ସେ କଥା ଶୁଣିବାକୁ ସମସ୍ତେ ଆଗ୍ରହୀ ହେବାରୁ ମାଳତୀ କହିଲା—

ରସ ସାଗର ନାମରେ ଏକ ନଗର ଅଛି । ସେ ରାଜ୍ୟର ରାଜାଙ୍କ ନାମ ଅମର-ଚନ୍ଦ୍ର । ତାଙ୍କ ନିଆସରେ ରତିପ୍ରିୟା ବୋଲି ଏକ ପୋଷ୍ୟ କନ୍ୟା ଥିଲା । ତାର କଣ୍ଟୁଆଳ ପୁତ୍ର ସୁବଳ ସିଂ ସହିତ ପ୍ରୀତି ଥିଲା । କିନ୍ତୁ ଗ୍ରୈଷ୍ଠାଦ୍ୱାରୀ ପାଇଁ ସେମାନେ ମିଳନରେ ସୁଯୋଗ ଲାଭ କରି ପାରିଲେ ନାହିଁ । ତେଣୁ ସୁବଳ ସିଂ ବିଚାର କରି ସିଂହଦ୍ୱାରରେ ଅଗ୍ନି ସଂଯୋଗ କରି ଗ୍ରୈଷ୍ଠାଦ୍ୱାରୀଙ୍କୁ ରାଜାଙ୍କ ଦ୍ୱାରା ଦଣ୍ଡିତ କଲା । ଗ୍ରୈଷ୍ଠାଦ୍ୱାରୀ ରାଜାଙ୍କୁ କହିଲା ଯେ ଶାରୀ ଓ ଚର୍ମୀ ଯେପରି ନିର୍ଦ୍ଦୋଷରେ ଦଣ୍ଡ ଲାଭ କଲେ ସେପରି ତାର ଅବସ୍ଥା ହେଲା । ରାଜା ସେ କଥା ଶୁଣିବାକୁ ଆଗ୍ରହୀ ହେବାରୁ ସେ ବର୍ଣ୍ଣନା କଲା ।

ସିଂହଳ ଦ୍ୱୀପରେ ନଳସୁନ୍ଦର ଶେଠ ମହାଜନର ମଞ୍ଜରୀ ବୋଲି ପରମା ରୂପବତୀ କନ୍ୟାଟିଏ ଥିଲା । ସେ କୁଞ୍ଜଗଳୀ ଶାରୀଟିଏ ପୋଷିଥିଲା ଓ ଚର୍ମୀ ବୋଲି ତାର ପରିବାରୀ

ଥିଲା । ଏହିକେ ଗିରିଧାରୀ ଦେଉମଞ୍ଜରୀଙ୍କୁ ଦେଖି ବିମୁଗ୍ଧ ହେଲା ଓ କାମଦର୍ପ ମାଲିଣୀର ସହାୟତାରେ ତା'ସହିତ ମିଳିତ ହେଲା । କିନ୍ତୁ କୁଞ୍ଜଗଳୀ ଶାସ୍ତ୍ରୀ ସେମାନଙ୍କ ସାକ୍ଷାତ କଥା କହିବାରୁ ଓ ଚମ୍ପୀ ସେମାନଙ୍କ ମିଳନରେ ପ୍ରତିବନ୍ଧକ ହେବାରୁ ମଞ୍ଜରୀ ଉପାୟ ପାଇଁ ଶାସ୍ତ୍ରୀକୁ ହତ୍ୟା କଲା ଓ ତାର ହତ୍ୟା ଦୋଷରେ ଚମ୍ପୀକୁ ଦୋଷୀ ସାବ୍ୟସ୍ତ କରି ଗୃହରୁ ବିତାଡ଼ିତ କଲା । ଦୁହେଁ ନିଶ୍ଚିନ୍ତ ହେଲେ ।

ରସପୂର ବୈଦ୍ୟଙ୍କ ସହଯୋଗିତାରେ ହେମାଙ୍ଗୀ ଓ ତରୁଣକାନ୍ତର ମିଳନ ସମ୍ଭବ ହେଲା ଓ ଦୁହେଁ ବିରହ ବ୍ୟାଧିରୁ ମୁକ୍ତି ଲାଭ କରି ସନ୍ତୋଷ ହେଲେ ।

ଚଞ୍ଚଳାକ୍ଷୀ ଏ କାହାଣୀ ଶୁଣି ହୃଦୟ ଆନନ୍ଦରେ ପୂର୍ଣ୍ଣ କରି ସୁଖୀ ହେଲା ।

ନୀତି ବିନୋଦ— ଗ୍ରନ୍ଥଟି କଥାରେ ମାତ୍ର ବିନୋଦର କଳେବର ପରିପୁଷ୍ଟ ।

କାନ୍ତିମଣ୍ଡନ ରାଜ୍ୟରେ ଚନ୍ଦ୍ରାଲୋକ ନାମରେ ଅଦ୍ୱିତୀୟ ମାତବାନ୍ ରାଜା ଥିଲେ । ସେ ରାଜ୍ୟରେ କୁଶଳକର୍ମା ବ୍ରାହ୍ମଣର କୁନ୍ଦରେଖା ବୋଲି କନ୍ୟାଟିଏ ଥିଲା । ସେ କୂପ ମଧ୍ୟରେ ପଡ଼ିଯିବାରୁ ତାକୁ ପୁଣ୍ୟଶୀଳ ପଣ୍ଡା ରକ୍ଷା କଲା । କୁନ୍ଦରେଖା ତାକୁ ବିବାହ କରିବାକୁ ସତ୍ୟ କଲା, କିନ୍ତୁ ତାର ପିତା ଗୋପକଦମ୍ବ ନାମରେ ଏକ ବ୍ରାହ୍ମଣଙ୍କୁ ଓ ମାତା ଚନ୍ଦନୀ ନାମରେ ଅନ୍ୟଜଣଙ୍କୁ କନ୍ୟାଦାନ କରିବା ପାଇଁ ଠିକ୍ କଲେ । କୁନ୍ଦରେଖାକୁ ବିବାହ କରିବା ପାଇଁ ଏ ତିନିଜଣ ବିବାଦ କରିବାରୁ ବିମ୍ବଓଷ୍ଠ ଗୋଟିଏ କାହାଣୀର ଅବତାରଣା କଲା ।

କେଳିକାଞ୍ଚନ ନଗରର ରାଜା ମୂଣଗୌର । ତାଙ୍କ ରାଜ୍ୟକୁ ଆସିଥିବା ମଞ୍ଜୁଳରୂପ ବୈଶ୍ୟର ଧନଗଣ୍ଠି ଶବର ଲୁଣ୍ଠନ କରି ବନ୍ଧୁଲୁ ରଖିବାକୁ ଦେଲା । କୁଟୁଆଳ ଭ୍ରମଣ ସିଂ ତାକୁ ଅପହରଣ କରି ନିଜ ଘର ଖଟ ତଳେ ରଖିଲା । କୁଟୁଆଳପତ୍ନୀ ରତ୍ନପ୍ରଭାକୁ ରାଜପୁତ୍ର କେତେକ ଅଳଙ୍କାର ଉପହାର ଦେଇଥିଲା । ରତ୍ନପ୍ରଭା ଭ୍ରମଣ ସିଂ ଆଣିଥିବା ଧନଗଣ୍ଠିକୁ ଭୟରେ ବାହାରକୁ ଫିଙ୍ଗିଦେଲା । ମଞ୍ଜୁଳରୂପ ବୈଶ୍ୟ ଗବାକ୍ଷ ତଳେ ଦୁଃଖରେ ବସିଥିଲା । ସେ ନିଜ ଧନଗଣ୍ଠି ପାଇ ଖୁସିରେ ଚାଲିଗଲା । ଭ୍ରମଣ ସିଂ ଅଳଙ୍କାର ପୁଡ଼ାକୁ ମନ୍ତ୍ରୀଙ୍କୁ ଓ ମନ୍ତ୍ରୀ ରାଜାଙ୍କୁ ଦେବାରୁ ରାଜା ନିଜ ନବରରୁ ରାଜପୁତ୍ର ନେଇଥିବା ଅଳଙ୍କାର ଫେରି ପାଇଲେ ଓ କୁଟୁଆଳର ଶିର ଛେଦନ ପାଇଁ ଆଦେଶ ଦେଲେ । ଭ୍ରମଣ ସିଂର ମୃତ୍ୟୁ ପାଇଁ ଦାୟୀ କିଏ ? ଏହି ନ୍ୟାୟ ବିଚାର କରିବା ଅବକାଶରେ ଚନ୍ଦନକଣ୍ଠିକା ଶାରିକା କହିଲା—

ସରଦ୍ୱୀପ ରାଜ୍ୟର ରାଜପୁତ୍ର ମନ୍ତ୍ରୀପୁତ୍ର, ଓ ସାଧବପୁତ୍ର ମୃଗୟା କରିବାକୁ ଯାଇ ଧ୍ୟାନାନନ୍ଦଙ୍କ ଆଶ୍ରମରେ ପହଞ୍ଚିଲେ । ସେଠାରେ ଚନ୍ଦାଙ୍ଗୀ କନ୍ୟା ସହ ମନ୍ତ୍ରୀପୁତ୍ର ସଙ୍କେତରେ ଭାବ ବିନିମୟ କଲା । ଧ୍ୟାନନନ୍ଦ ତିନିଜଣଙ୍କୁ ଦୁଷ୍ପ୍ରାପ୍ୟ ପୁଷ୍ପ ଆଣିବାକୁ ପଠାଇଲେ । ରାଜପୁତ୍ର ଓ ସାଧବପୁତ୍ର ପୁଷ୍ପ ଉଦ୍ଦେଶ୍ୟରେ, ମନ୍ତ୍ରୀପୁତ୍ର ଚନ୍ଦାଙ୍ଗୀ କନ୍ୟା ନିକଟକୁ ଗଲେ । ସେ ଦୁହେଁ ଏକ ସମୟରେ ଫୁଲ ନେଇ ଓ ମନ୍ତ୍ରୀପୁତ୍ର ଖାଲି ହାତରେ ଆଶ୍ରମରେ ପହଞ୍ଚିଲେ । ଧ୍ୟାନାନନ୍ଦ ଧ୍ୟାନ ଯୋଗରେ ମନ୍ତ୍ରୀପୁତ୍ରକୁ ଚନ୍ଦାଙ୍ଗୀ କନ୍ୟା

ସ୍ୱୟଂମ୍ବରଣ କରିବା କଥା ଜାଣିପାରି କହିଲେ, ଯେ ଏକାସାଙ୍ଗରେ ରାଜପୁତ୍ର, ସାଧବପୁତ୍ର ପ୍ରତ୍ୟାବର୍ତ୍ତନ କରିବାରୁ କନ୍ୟାକୁ କିଏ ବିବାହ କରିବ ? ଏ ସମସ୍ୟାର ସମାଧାନ ଲକ୍ଷ୍ୟରେ ବର୍ଣ୍ଣିତ ଆଉ ଗୋଟିଏ କାହାଣୀ କହିଲ ।

ଗନ୍ଧବକୁଳ ଗୋପାଳର ପତ୍ନୀ ବିନୋଦନୀ ଓ ପୁତ୍ରର ନାମ ବିମ୍ବା । କୃଷ୍ଣଙ୍କ ପ୍ରେମ ପାଇଁ ବିନୋଦନୀ ମାନଦଣ୍ଡ ମହାଜନଙ୍କୁ ବିମ୍ବାକୁ ବନ୍ଧକ କରିଦେଲ । ବିମ୍ବା ଦିନେ ପାତାଳୀ ନଦୀ ସ୍ରୋତରେ ଭାସିଗଲା । ରାଜା ରାଣୀ ତାକୁ ଦେଖି ନାଉରିଆଙ୍କୁ ପଠାଇଲେ । ଏହା ମଧ୍ୟରେ ସାଧବ ତାକୁ ଉଦ୍ଧାର କଲା । ରାଜା ଓ ସାଧବଙ୍କ ମଧ୍ୟରେ ବିବାଦ ଜନ୍ମିଲା । ମାନଦଣ୍ଡ ଓ ଗନ୍ଧବକୁଳ ମଧ୍ୟ ବିମ୍ବାକୁ ନେବାକୁ ଦାବୀ କଲେ । ଏହି ବିଷମ ସମସ୍ୟାକୁ ସମାଧାନ କରି ଶୁଭ ଶାରିକା ଯେଉଁ ନ୍ୟାୟ ଦେଲେ ତଦନୁସାରେ ପୂର୍ଣ୍ଣରାଜ ବେଣ୍ଟା କୁନ୍ଦରେଖାକୁ ବିବାହ କଲା ।

ଏ କଥା ଶୁଣି ଚଞ୍ଚଳାକ୍ଷୀ ଉପାବିଷ୍ଟ ହେଲ ।

ପ୍ରୀତିବିନୋଦ—ପ୍ରୀତିର ଭେଦ ପ୍ରକାଶ କରି ଛଅଟି ପ୍ରୀତି ସମ୍ବନ୍ଧରେ ଦୃଷ୍ଟାନ୍ତ ପ୍ରଦର୍ଶିତ ।

ଶଠପ୍ରୀତି—ଭର୍ମପୁର ବ୍ରାହ୍ମଣ ଗଙ୍ଗାସ୍ନାନ କରିବାକୁ ଯିବା ବାଟରେ ମନମନୁଆଁ ନାମରେ ନାପିତ ଧନ ଉଦ୍ଦେଶ୍ୟରେ ତାଙ୍କ ସଙ୍ଗ ହେଲ । ଗୋସାଇଁ ଘରିସ୍ତ ପ୍ରକାଶ କରିବାରୁ ସେ ପ୍ରସଙ୍ଗଟିଏ କହିଲ ।

ହେମକାଞ୍ଚନ ନଗରର ରାଜା ବୀରଭୁଜଙ୍କ ରାଜଗୁରୁ ଜ୍ୟୋତିପୁଞ୍ଜ ମାଦଳିଆ ଖର୍ବରୂପଙ୍କୁ ଉପହାସ କରିବାରୁ ସେ ବ୍ୟାକୁଳ ପ୍ରାଣରେ ଈଶ୍ୱରଙ୍କୁ ଚିନ୍ତା କଲ । ଈଶ୍ୱରଙ୍କ କୃତ ନିର୍ଦ୍ଦେଶରେ ଖର୍ବରୂପ ବେଶ୍ୟାଦ୍ୱାର ବିତାଡ଼ିତ ହୋଇ ରସରଙ୍ଗ ନଗରରେ ରାଜଗୁରୁ ରୂପେ ସମ୍ମାନିତ ହେଲ ଓ ଜ୍ୟୋତିପୁଞ୍ଜ ବିଧିବାମ ହେବାରୁ ଦୁର୍ବୁଦ୍ଧି ପ୍ରକାଶ କରି ରସରଙ୍ଗପୁରରେ ବେଶ୍ୟାର ମାଦଳିଆ ହୋଇ ରହିଲେ ।

ଏପରି ଏକ ପ୍ରସଙ୍ଗ କହି ଗୋସାଇଁଙ୍କ ବିଶ୍ୱାସଭାଜନ ହୋଇ ମନମନୁଆଁ ଶେଷରେ ତାଙ୍କ ସହିତ ଶଠତା କରି ଅର୍ଥ ଆତ୍ମସାତ୍ କରି ଚାଲିଗଲ । ଶଠପ୍ରୀତି ବାହାରକୁ କିଛି ଜଣାଯାଏ ନାହିଁ, କିନ୍ତୁ ଶେଷରେ ଦଗା ଦିଏ ।

ଦୁଷ୍ଟ ପ୍ରୀତି—କ୍ଷେତ୍ରପାଳ ନାମରେ ଏକ ଦୁଷ୍ଟ ବାଣୁଆ ପଥିକମାନଙ୍କ ଧନଲୁଣ୍ଠନ କରି ବହୁ ଉପଦ୍ରବ ସୃଷ୍ଟି କଲ । ବାଣିଜ୍ୟ ବେପାର ବନ୍ଦ ହେବାରୁ ମହାଜନମାନେ କ୍ଷେତ୍ରପାଳସହ ପ୍ରୀତି କରି ଭୟରେ ତାକୁ ଅପୂର୍ବ ପଦାର୍ଥ ଦେଇ ଅବଶିଷ୍ଟ ନିଜ ପାଇଁ ରଖନ୍ତି । ଦୁଷ୍ଟ ଲୋକ ସହ ପ୍ରୀତି କଲେ ଖରାପ, ନ କଲେ ଚିନ୍ତା ହୁଏ ନାହିଁ । ତେଣୁ ଉପର ମନରେ ପ୍ରୀତି କରିବ ।

ନୀଚପ୍ରୀତ—ଚନ୍ଦ୍ର ଜ୍ୟୋତ ରାଜହଂସକୁ ଦେଖି କୃଶପାଦ ବକ ତା' ପରି ସୁନ୍ଦର ହେବାକୁ ତା' ସହିତ ବନ୍ଧୁତା ସ୍ଥାପନ କଲା । ବକର ଅନୁରୋଧରେ ହଂସ ସୁରଗଙ୍ଗାରୁ ମୃଣାଳ ରସ, ପଦ୍ମମଧୁ ପ୍ରଭୃତି ଆଣିଦେଲା । ବକ ସେ ସବୁ ଖାଇ ପୂର୍ବପରି ରହିବାରୁ ସେ ହଂସକୁ ନିଜ ଉଚ୍ଛିଷ୍ଟ ମୀନ, ବେଙ୍ଗ, ଜୋକ ପ୍ରଭୃତି ଖୁଆଇଲା । ହଂସ ସେ ସବୁ ବନ୍ଧୁତ୍ୱର ମର୍ଯ୍ୟାଦା ରକ୍ଷା କରି ଖାଇ ଅତ୍ୟନ୍ତ ବିକଳ ହେଲା । ଏହିପରି ନୀଚ ଲୋକ ସଙ୍ଗେ ପ୍ରୀତି କଲେ ଉତ୍ତମ ଲୋକ ବିପଦଗ୍ରସ୍ତ ହୁଏ ।

ସହଜ ପ୍ରୀତ—ଧର୍ମପାଳ ରାଜ୍ୟର ରାଜା ଭୂଜବଳ ଓ ତାଙ୍କ ରାଣୀଙ୍କ ନାମ ପଦ୍ମବାସୀ । ତାଙ୍କ ପୁଷ୍କରଣୀରେ ପାଞ୍ଚଟି ଭ୍ରମର ପଦ୍ମମଧୁ ଲୋଭରେ ଥାଆନ୍ତି । ରାଣୀଙ୍କ ମୁଖ ପଦ୍ମ ପରି ବାସ ହେବାରୁ ସେମାନେ ତାଙ୍କୁ ବେଢ଼ି ରହୁଥାନ୍ତି । ରାଣୀ ବିରକ୍ତ ହୋଇ ତାଙ୍କୁ ଧରାଇ ଘନ ଅରଣ୍ୟ ମଧ୍ୟରେ ଛାଡ଼ିଲେ । କିନ୍ତୁ ସେମାନେ ସବୁ ଦୁଃଖ ଭୁଲି ରାଣୀଙ୍କ ପାଖକୁ ଫେରି ଆସିଲେ । ଏହାକୁ ସହଜ ପ୍ରୀତି କହନ୍ତି—ଯେତେ ବିପଦ ପଡ଼ିଲେ ମଧ୍ୟ ଛାଡ଼ ହୁଏ ନାହିଁ ।

କାର୍ଯ୍ୟପେଯୋନା ପ୍ରୀତ —ଷଣ୍ଠିସ୍ୱ ଶଶଧରର ନନ୍ଦିନୀ ବୋଲି ଗାଈ କ୍ଷୀର ଦେବା ପର୍ଯ୍ୟନ୍ତ ସେ ତାର ଯତ୍ନ ନେଉଥିଲା । କିନ୍ତୁ ଧୀରେ ତାର କ୍ଷୀର ଶୁଖି ଯିବାରୁ ଶଶଧର ତାକୁ ଅବହେଳା କଲା ଓ ଶେଷରେ ଘରୁ ମାଡ଼ ମାରି ବାହାର କରିଦେଲା । କାର୍ଯ୍ୟ ସାଉଥିବା ପର୍ଯ୍ୟନ୍ତ ଏ ପ୍ରୀତିର ସ୍ଥିତି ।

ପ୍ରବଳଶଠ ପ୍ରୀତ — ହେମବତୀ ନଗରର ରାଜା କେଳିଗୁପ୍ତ ମନୋହର ବଣିଆର ପତ୍ନୀ ଖଞ୍ଜନାକୁ ଦେଖି ମୋହିତ ହେଲେ ଓ ତାକୁ ପ୍ରାପ୍ତ ହେବା ଅଭିଳାଷରେ ମନୋହରକୁ ଗୃହଗଡ଼ା ଘର ଅଧିକାରୀ କଲେ । ଗୌଣ୍ତ ବ୍ରତ କରି କୁଟବୁଦ୍ଧି ପ୍ରୟୋଗ କରି ଖଞ୍ଜନାକୁ ଭୋଗ କଲେ । ତା'ପରେ ମନୋହରକୁ କାର୍ଯ୍ୟରୁ ବିତାଡ଼ିତ କଲେ । ପ୍ରବଳ ପ୍ରବଞ୍ଚନା ଆଚରଣ କରି ଏ ଯେଉଁ ପ୍ରୀତି ତା ଆଦୌ ଉଚିତ ନୁହଇ ।

ଏ କଥାମାଳା ଶୁଣି ଚଞ୍ଚଳାକ୍ଷୀ ଆନନ୍ଦିତା ହେଲା । ରାତି ପ୍ରଭାତ ହେଲା ।

ଚତୁର ବିନୋଦର କଥାରୂପ ଏଇମିତି ବିଭିନ୍ନ ଢଙ୍ଗରେ ରଚିତ ହୋଇ ଏକ ଅନବଦ୍ୟ କଥା ସାହିତ୍ୟ ନିର୍ମାଣ କରି ପାରିଛି ।

ଚତୁର ବିନୋଦର କଥାରଙ୍ଗ —ପ୍ରାଚୀନ ଓଡ଼ିଆ ସାହିତ୍ୟ ଶୃଙ୍ଗାର ରସ ପ୍ରଧାନ । ଶୃଙ୍ଗାର ରସର ସୂକ୍ଷ୍ମ ବିଭାଗ ଖୁଣ୍ଟିକରି ବିସ୍ତୃତ ବର୍ଣ୍ଣନାରେ କାବ୍ୟ ଅଙ୍ଗ ପରିପୁଷ୍ଟ । ଶୃଙ୍ଗାର ବ୍ୟତୀତ ଅନ୍ୟାନ୍ୟ ରସର ବିଶେଷ ଭାବରେ ହାସ୍ୟରସର ଅଂଶଭାବ ପରିଦୃଷ୍ଟ ହୁଏ । ଏକ ସୁସ୍ଥ ସୁନ୍ଦର ଜୀବନ ପାଇଁ ହାସ୍ୟରସର ଏକାନ୍ତ ପ୍ରୟୋଜନ ଥିବା ସ୍ଥଳେ ଏହାର ଅଭାବ ଗୁରୁ ଗମ୍ଭୀର ବିଷୟ ବହୁଳ ଓଡ଼ିଆ କବି ପକ୍ଷରେ ହୁଏତ

ଅସ୍ୱାଭାବିକ ନୁହେଁ । ତେଣୁ ଓଡ଼ିଆ କାବ୍ୟ କବିତାରେ ହାସ୍ୟରସର ପ୍ରତିଷ୍ଠା ନାହିଁ । କଳସା ଚଉତିଶା, ନ.ବିହେଳି, ରସପଞ୍ଚକ ପ୍ରଭୃତିରେ ଏହି ରସର ଏକ ସୀମିତ ପ୍ରକାଶ ଦେଖାଯାଏ । କାରଣ ପ୍ରାଚୀନ କାବ୍ୟ କବିତାର କଥାବସ୍ତୁରେ ହାସ୍ୟରସ ପାଇଁ ଅନୁକୂଳ—ପରିବେଶ ନଥିଲା । ଚତୁର ବିନୋଦର ସ୍ରଷ୍ଟା ବ୍ରଜନାଥ ଥିଲେ ରାଜସଭାର କବି—ବୁଝିତ ବିଦୂଷକ କବି । ତେଣୁ ରାଜାଙ୍କର ଚିତ୍ତ ବିନୋଦନ ପାଇଁ ହାସ୍ୟରସାତ୍ମକ କବିତା ରଚନା କରିବାରେ ତାଙ୍କର ଦକ୍ଷତା ଥିଲା । ଚତୁର ବିନୋଦରେ ବର୍ଣ୍ଣିତ ହାସ୍ୟରସାତ୍ମକ ବର୍ଣ୍ଣନା ସେଇ ମନୋଭାବର ବ୍ୟାପକ ପରିପ୍ରକାଶ ।

ଜୀବନର ଅସଙ୍ଗତିରୁ ହାସ୍ୟରସର ସ୍ଫୁରଣ । ମଣିଷର କଥା ଓ କାର୍ଯ୍ୟରେ ଅସଙ୍ଗତି, ଉଦ୍ଦେଶ୍ୟ ସହିତ ଉପାୟର ବା ଇଚ୍ଛା ସହିତ ଅବସ୍ଥାର ଅସଙ୍ଗତି ହାସ୍ୟରସର ଉପାଦାନ । ଏହାଛଡ଼ା ମଣିଷର ସ୍ୱାଭାବିକ ଦୈହିକ ଗଠନରେ କୌଣସି ବିକୃତି ଘଟିଲେ ଏହା ହାସ୍ୟକର ପରିବେଶ ସୃଷ୍ଟି କରେ । ଅସ୍ୱାଭାବିକ କଥା ଓ କାର୍ଯ୍ୟ ମଣିଷ ଭିତରେ କୌତୁକ ଭାବ ସଞ୍ଚାର କରେ । ବ୍ରଜନାଥ ମଣିଷ ମନର ଏଇ ସୂକ୍ଷ୍ମ ବିଭବ ପ୍ରତି ଥିଲେ ଏକାନ୍ତ ସଚେତନ । ମଣିଷକୁ ଆନନ୍ଦ ଦେବା ଥିଲା ତାଙ୍କର ପେଷା । କଳୁ ମାର୍ଜିତ ରୁଚିସଙ୍ଗତ ବିଦଗ୍ଧ ରସ ବୋଧରେ ହାସ୍ୟରସିକ ସ୍ରଷ୍ଟା ହୁଏ ଉଚ୍ଚ କୋଟିର ଶିଳ୍ପୀ । ତା' ହୃଦୟକୁ ଆପ୍ଳୁତ କରି ଝରିଯାଏ ଏକ ପ୍ରସନ୍ନ, ଅନାବିଳ ରସଧାରା । ତାର ଦୃଷ୍ଟି ଉଦାରତାରେ କୋମଳ, ପ୍ରାଣ ନିର୍ଦ୍ଦୋଷ ଉଲ୍ଲାସରେ ଚଞ୍ଚଳ । ବ୍ରଜନାଥଙ୍କ ହାସ ବିନୋଦର ହାସ୍ୟରସରେ ଏହି ବିଭାବ ଗୁଡ଼ିକ ଅନୁପସ୍ଥିତ । ସୂକ୍ଷ୍ମ ହାସ୍ୟରସ ଅପେକ୍ଷା ସ୍ଥୂଳ ବିକୃତ ହାସ୍ୟରସ ସୃଷ୍ଟି କରି ସାଧାରଣ ଜନତା ମନରେ ସାମୟିକ ଉଲ୍ଲାସ ସୃଷ୍ଟି କରିବାରେ ତାଙ୍କର ସଯତ୍ନ ପ୍ରୟାସ ଲକ୍ଷଣୀୟ ।

ଚତୁର ବିନୋଦର ବିଷୟବସ୍ତୁ ଉପସ୍ଥାପନରେ ହାସବିନୋଦର ପ୍ରଥମ ଆତ୍ମପ୍ରକାଶ ଏକାନ୍ତ ସଙ୍ଗତ । ପ୍ରଥମେ ମନକୁ ଆନନ୍ଦ ଧାରାରେ ବିଧୌତ କରିବା ପରେ ରସ ସାଗରରେ ବୁଡ଼ି ନୀତିର ପରିଚ୍ଛଦ ଧାରଣ କରି ପ୍ରୀତି ରସ ଆସ୍ୱାଦନ କଲେ ଚରମ ଫଳପ୍ରାପ୍ତି ଘଟେ । ସୋପାନ ପରେ ସୋପାନ ଅତିକ୍ରମ କରି ସର୍ବୋଚ୍ଚ ସୋପାନରେ ଉପନୀତ ହେବା ସମ୍ଭବ । ରସିକ କବି ବ୍ରଜନାଥ ପାଠକ ହୃଦୟକୁ ସେହିପରି କ୍ରମ ବିସ୍ତାରର ପଥରେ ନେଇ ଯାଇଛନ୍ତି । ହାସ ବିନୋଦର ପାତ୍ରପାତ୍ରୀ, ରାଜା, ରାଜ୍ୟ, କଥୋପକଥନ ଭଙ୍ଗୀ, ଦୈହିକ ଗଠନ, ପ୍ରେମ ପ୍ରକାଶ ରୀତି, ଚିନ୍ତା ଓ କର୍ମ—ସବୁ ହାସ୍ୟକର ।

ହାସ ବିନୋଦରେ କେଳିନଟ ନଗରର ରାଜା ଅଙ୍ଗଧର, ତାଙ୍କର ମନ୍ତ୍ରୀ ଧର୍ମବାରଣ ଓ ପୁରୋହିତ କର୍ମଅନ୍ଧ । ପ୍ରଜାପୁଞ୍ଜ ଅନ୍ୟ ଦେଶରୁ ତଣ୍ଡୁଳ ଭିକ୍ଷା କରି ରାଜକୋଷକୁ ପାଞ୍ଚଭାଗ ଦେଇ ନିଜେ ଏକ ଭାଗରେ ଜୀବିକା ନିର୍ବାହ କରନ୍ତି । ରାଜାରାଣୀ ପ୍ରଜାମାନଙ୍କ ସେହି ଭିକ୍ଷାନ୍ନକୁ ଭାଜି ସାମାନ୍ୟ ଲବଣ ଦେଇ ଭୋଜନ

କରନ୍ତି । ଏଠାରେ ମନ୍ତ୍ରୀ, ପୁରୋହିତଙ୍କ ନାମ ଅର୍ଥବ୍ୟଞ୍ଜକ ଓ ସମଗ୍ର ବର୍ଣ୍ଣନାଟି ବିଦ୍ରୂପାତ୍ମକ । ଗଳ୍ପ ରଚୟିତା ବର୍ଣ୍ଣନାର ଗାମ୍ଭୀର୍ଯ୍ୟ ମଧ୍ୟରେ ଏହାକୁ ଅଧିକ ହାସ୍ୟରସାତ୍ମକ କରିବାକୁ ଚେଷ୍ଟା କରିଛନ୍ତି । ରାଜାଙ୍କର ରାଣୀ ନିଳାମ୍ବରୀଙ୍କ ରୂପ ବର୍ଣ୍ଣନା ସମଧିକ ହାସ୍ୟୋଦ୍ଦୀପକ—

ନିଳାମ୍ବରୀ ନାମେ ସେ ରାଜାଙ୍କର ରାଣୀ
ସୁନ୍ଦର ପଣରେ ତ୍ରୈଲୋକ୍ୟର ଠାଣି,
ତାଙ୍କର ତ ଲମ୍ବ ଲମ୍ବ କୁଚ,
ଖାଲପଟ ଉଚ,
ମନ୍ଦାର ଫୁଲ ନେତ୍ର,
ହାଣ୍ଡି ସମାନ ଗାତ୍ର,
ଶଙ୍ଖ ସୁନ୍ଦର ନାସା,
ମୟୂର କଣ୍ଠ ଭାଷା,
କପୁଳ ଗୁରୁ ପାଦ,
ଗମନେ ଟେଙ୍କ ନାଦ,
ମୃଦଙ୍ଗ ମୋଟ କଟି
ଦଶମାସ ଗର୍ଭ ହେଲ ପର ବନ୍ଧ୍ୟାରାଣୀର ସର୍ବଦା କାଳେ
ଆଗକୁ ବାହାର ଥାଏ ଅନ୍ତଲପେଟ ଗୋଟି ।

ରାଜମହିଷୀଙ୍କର ସୌନ୍ଦର୍ଯ୍ୟ ସମ୍ବନ୍ଧରେ ସାଧାରଣତଃ ଯେଉଁ ଧାରଣା ତାର ସମ୍ପୂର୍ଣ୍ଣ ବିପରୀତ ଚିତ୍ର ପ୍ରଦାନ କରି କବି ବିଦ୍ରୂପ ମିଶ୍ରିତ ହାସ୍ୟରସ ପରିବେଷଣ କରିଛନ୍ତି ।

ବିଳାପମୁଖୀର ଚତୁର୍ଥ କାଳରେ ଅର୍ଥାତ୍ ବୃଦ୍ଧାବସ୍ଥାରେ ରାଜା ବିବ୍ରତ ହୋଇ ପାତ୍ରର ସନ୍ଧାନ ପାଇଁ ଦୂତ ପ୍ରେରଣ କରିଛନ୍ତି । ସେମାନେ ଯେଉଁ ଯେଉଁ ସ୍ଥାନରେ ଅନୁସନ୍ଧାନ କରିଛନ୍ତି ତା କଳ୍ପନାଗତ ହାସ୍ୟକର । "କୋରଡ଼ ଗୋରଡ଼, ଗାଡ଼ଖାଇ ଗାଡ଼, ବଳ, ବମ୍ବର, କଅଁର ଯୋଡ଼, ମୁଣ୍ଡା, ଖମଣା, ଘଣା, ଶିକା, ସାମୁକା, ବେଙ୍କା, ଦ୍ୱଣା । ଶେଷରେ ମୂଳିକ ଗର୍ତ୍ତରୁ ଆତ୍ମପ୍ରକାଶ କଲେ ମର୍ଜାର ମୁଖା ପୁରୁଷ" ଅଧର ଜାମୋଡ଼ି, ନଣ ମୋଡି ମୋଡ଼ି ହା ହା ହୁ ହୁ କରି ରଡ଼ିମାନ ଗୁଡ଼ାଅଛୁ ଯେ ଗୁଡ଼ରେ କୋଡ଼ି କୋଡ଼ି ହୋଇ କୋଡ଼ି । ଏହି ହାସ୍ୟୋଦ୍ଦୀପକ ନାୟକ ମାର୍ଜାରମୁଖା ସ୍ୱ ପରିଚୟ ପ୍ରଦାନ କରି କହିଛନ୍ତି "ଷଣ୍ଢାପୁର ଆମ୍ଭର ମଉଳା ଝିଅ ଭଉଣୀ । ମହାଷାପୁରର ଆମ୍ଭେ ସୋଦର ବାପରଙ୍କିଇ"—ଏହି ଉକ୍ତି ମଧ୍ୟରେ ଯେଉଁ ଅସଙ୍ଗତ ସମ୍ପର୍କର ଅବତାରଣା କରାଯାଇଛି, ତାହା ସ୍ୱତଃ ମନକୁ କୌତୁକ ମଣ୍ଡିତ କରେ ।

'ଦୂତମାନେ ଜୂପ ରକ୍ତମାଳା ଗଳାରେ ପକାଇ ଧାରଣ କରି ଆସିଲେ ଓ ଚଣ୍ଡଚଣ୍ଡ ଗ୍ରମୁଚରେ ମାର୍ଜାର ମୁଖୀ ଭେଟି ଦୁଇପାଦ ତେଳ ନମସ୍କାର କଲେ । ଚଣ୍ଡଚଣ୍ଡ କଲ୍ୟାଣ କଲେ 'ଗର୍ଜ୍ଜାସ୍ପୂର୍ଭବ' । ଏଠାରେ ଉଦ୍ଦେଶ୍ୟ ସହିତ ଉପାୟର ଅସଙ୍ଗତି ହାସ୍ୟରସ ମୂଳକ ପରିବେଶ ସୃଷ୍ଟି କରିବାରେ ସହାୟତା କରିଛି ।

ମାର୍ଜାରମୁଖୀର ବିଳାପମୁଖୀର ଦେହ ସୌନ୍ଦର୍ଯ୍ୟ ସମ୍ବନ୍ଧରେ ଚଣ୍ଡ ଓ ଦୂତମାନଙ୍କର ଉକ୍ତିର ଶ୍ଳୀଳତାକୁ ଅତିକ୍ରମ କରି ଏକ ଅଶ୍ଳୀଳ ଓ ସ୍ଥୂଳ ହାସ୍ୟରସ ସୃଷ୍ଟି କରିଛି । ଅଙ୍ଗ ବିକୃତି ହାସ୍ୟରସର ଅନ୍ୟତମ ଉପାଦାନ ହେଲେହେଁ ସେଥିରେ ମାଜିତ ଅଭିରୁଚିର ପ୍ରଲେପ ଏକାନ୍ତ ପ୍ରୟୋଜନ । ବ୍ରଜନାଥ ଏ ସମସ୍ତ ଦାୟିତ୍ୱକୁ ଅନାୟାସରେ ଅତିକ୍ରମ କରି ନଗ୍ନ ଉଲ୍ଲାସ ପ୍ରକାଶ କରିଛନ୍ତି ।

ବିଳାପମୁଖୀ ଉଲଗ୍ନ ଦେହରେ ଭସ୍ମ ବିଲେପନ କରି ଅଧୋମୁଖରେ ବିଳାପ କରି ମାର୍ଜାରମୁଖୀକୁ ଯେପରି ସମ୍ବର୍ଦ୍ଧନା ଜଣାଇଛି ଏହା ଆଦୌ ସ୍ୱାଭାବିକ ନୁହେଁ । ଏପରି ଏକ ପରିବେଶ ରଚନା ଯଥାର୍ଥରେ କଳ୍ପନାଶ୍ରିତ ଓ ବିସ୍ମୟକର । ମନେହୁଏ ସତେ ଯେପରି ବ୍ରଜନାଥ ଏକ କଳ୍ପନାରାଜ୍ୟରୁ ଏପରି ନାୟକ ନାୟିକା ସୃଷ୍ଟି କରି ପାଠକ ପାଠିକାମାନଙ୍କ ସମକ୍ଷରେ ଠିଆ କରାଇଛନ୍ତି —ଏମାନେ ବାସ୍ତବ ଜୀବନ ସମ୍ପର୍କ ଶୂନ୍ୟ ଓ ଏମାନଙ୍କର କାର୍ଯ୍ୟକଳାପ ଅବାସ୍ତବ ଅସମ୍ଭାବ୍ୟତାଦ୍ୱାରା ନିୟନ୍ତ୍ରିତ । ମାର୍ଜାର-ମୁଖୀର ପ୍ରେମିକାକୁ ଅପୂର୍ବ ଉପହାରମାନ ଦେବାର ବର୍ଣ୍ଣନା ସମ୍ପୂର୍ଣ୍ଣ ନୂତନ ପରିକଳ୍ପନା । ଦୃଷ୍ଟାନ୍ତ ସ୍ୱରୂପ—

ଦନ୍ତରେ ଘୁଞ୍ଚି ଦେବି କଉଡ଼ିର ମାଳା
କେଣ୍ଡାର ସୁନ୍ଦର ନୋଥ ନାକେ ଦେବି ବାଳା
ଖପରି ପଦକ ଚକ ମୃତ୍ତିକାର ବଳା
ବଡ଼ ବଡ଼ ବରଗଡ଼ି ହାର ଦେବି ଗଳା
କେନ୍ଦେ ଗେରୁ ବୋଳି ଦେବି ଗର୍ଦ୍ଦଭମୁଖୀ
ଜୁଣ କାଟି ବାସ ବୁଣି ପିନ୍ଧାଇବି ସଖୀ ।

ଏହି ମୂଳର ଐଶ୍ୱର୍ଯ୍ୟମୟ ଜୀବନ ଚର୍ଚ୍ଚା ସହିତ ଏ ସବୁର ଘୋର ଅସଙ୍ଗତି ଲକ୍ଷିତ ହୁଏ । ମଣିଷର ପ୍ରେମ ଓ ସୌନ୍ଦର୍ଯ୍ୟବୋଧ ପ୍ରତି କବି ହୃଦୟର ସାମାନ୍ୟତମ ସମ୍ବେଦନା ଥିବା ପରି ବୋଧହୁଏ ନାହିଁ । ବ୍ରଜନାଥ ଏଠାରେ ବିଦୂଷକର ଭୂମିକାରେ ଅବତୀର୍ଣ୍ଣ ହୋଇ ବିକୃତ ଓ ବିଭତ୍ସ ରସର ଅବତାରଣାରେ ମନର ଗଣ୍ଠିକୁ ଶିଥିଳ କରି ଲଘୁ ହାସ୍ୟ ରସର ଉଚ୍ଛଳ ବାତାବରଣ ସୃଷ୍ଟି କରିଛନ୍ତି । ହାସ ବିନୋଦରେ ବର୍ଣ୍ଣିତ ହାସ୍ୟରସ ସମ୍ବନ୍ଧରେ ନିର୍ବିବାଦରେ ଏ ମତ ବ୍ୟକ୍ତ କରାଯାଇପାରେ ଯେ ଏଥିରେ ରୂପଗତ ମାଧୁର୍ଯ୍ୟ ଅପେକ୍ଷା ଶବ୍ଦଗତ ଚାତୁର୍ଯ୍ୟ ମାଧ୍ୟମରେ ଚଟୁଳ, ତରଳ, ଅଶ୍ଳୀଳ,

କୌତୁକ ରସାଳ ହାସ୍ୟରସର ଅଭିବ୍ୟକ୍ତ ଘଟିଛି । ବିଶୁଦ୍ଧ, ପ୍ରସନ୍ନ, ନିର୍ମଳ, ଉଦାର ହାସ୍ୟରସ ସୃଷ୍ଟି ଦିଗରେ କବିଙ୍କର ଦୃଷ୍ଟିଭଙ୍ଗୀ ଓ ପ୍ରକାଶରୀତି ସହଯୋଗ କରି ପାରି ନାହିଁ । ଏଥିରେ ଘଟଣାର ବୈଚିତ୍ର୍ୟ ବା ଚରିତ୍ରର ସୌନ୍ଦର୍ଯ୍ୟ ଅନୁପସ୍ଥିତ । ଅସଙ୍ଗତ ଓ ଅସ୍ୱାଭାବିକ ଘଟଣା ଅସଂଲଗ୍ନ ସଂଳାପ ଓ ଅହେତୁକ ଚରିତ୍ର ଚିତ୍ରଣ କରି ହାସ୍ୟରସ ସୃଷ୍ଟି କରିଛନ୍ତି । ଅତିହାସ ବିନୋଦରେ କବି ବ୍ରଜନାଥ ସ୍ଥୂଳ ହାସ୍ୟରସର ଦେହଳୀ ଅତିକ୍ରମ କରି ନାହାନ୍ତି ସତ, କିନ୍ତୁ କେତେକାଂଶରେ ନିର୍ମଳ ହାସ୍ୟରସ ସୃଷ୍ଟି କରିବାରେ ସମର୍ଥ ହୋଇଛନ୍ତି ।

ମୋତିମାଳା ନଗରର ରାଜାଙ୍କ ରାଜସଭାକୁ ଆସିଥିବା ଚାରିଜଣ ବ୍ୟକ୍ତି ରାଜାଙ୍କ ସମକ୍ଷରେ ନିଜ ନିଜର ଗୁଣଗାରିମା ପ୍ରକାଶ କରି ରାଜସେବକ ହେବାକୁ ଅଭିଳାଷ ପୋଷଣ କରିଛନ୍ତି । ପ୍ରଥମେ ପଣ୍ଡିତ ପ୍ରବର ସର୍ଉଁ ସଉଁ ଘୃତ ଅର୍ଥାତ ସଂସ୍କୃତ ଘୃତ ଅର୍ଥ କରିବା ଓ ବେଦ ବିଦ୍ୟା ଅର୍ଥାତ୍ ବେଦ ବିଦ୍ୟାର ବିକୃତ ଉଚ୍ଚାରଣ ଦ୍ୱାରା ଯେପରି ରଙ୍ଗରସ ପ୍ରଦର୍ଶନ କରିଛନ୍ତି ଏ ସବୁ କବିଙ୍କ କୌତୁକ ଭାବମଣ୍ଡିତ ବ୍ୟକ୍ତିର ସୃଜନୀରୁ ସମ୍ଭବ । ରାଜାଙ୍କ ନିର୍ଦ୍ଦେଶରେ ଚଣ୍ଡିନେଜ ଖଣ୍ଡି ମଣ୍ଡନର ନେଉଳ ଗୃହୀଣୀ ପ୍ରକାଶ କରିବା ଓ ଷଡ଼ ଷଡ଼ ହାସ୍ୟ 'ତଥା ଉଆଁସ ନିଶିର ଶଶି' ରୂପେ ବ୍ରାହ୍ମଣକୁ ସମ୍ବୋଧନ କବିଙ୍କ ଅଙ୍ଗର ରସପ୍ରାଣତାର ପରିଚାୟକ ।

ବୈଦ୍ୟରାଜ ବ୍ୟାଧିବର୍ଦ୍ଧନ-ଚୂଡ଼ାମଣିଙ୍କର ହାତଯଶ ଓ ବୈଦ୍ୟ ବିଦ୍ୟାରେ ଦକ୍ଷତା ତୁଳନାହୀନ । ନିଜ ଗୌରବ ପ୍ରକାଶ କରି ସେ କହିଛନ୍ତି—

ପିଉସୀ ଦେହେ ମୋ ପିଉ ବଢ଼ିଲା ପ୍ରବଳେ
    ପକାଇଲି ତାହାଙ୍କୁ ସହଡ଼େ ଖରବେଳେ
ପଳେ ସକନା ଟାଙ୍କରେ ଦେଲି ଚିତାମୂଳ
    ଫାଟି ଫାଟି ଫାଟି ପାଳୁ ପାଳୁ କରି ପିଉସୀ ନିକ୍ଷିଳ ।

କେବଳ ଘଟଣାର ଅସଙ୍ଗତିରେ ନୁହେଁ ବର୍ଣ୍ଣନାର ଚତୁରତାରେ ଓ ଶବ୍ଦର ଯଥୋଚିତ ପ୍ରୟୋଗରେ ବ୍ରଜନାଥ ହାସ୍ୟ ଚଟୁଳ ପରିବେଶ ସୃଷ୍ଟି କରି ନିଜର ରସବେତ୍ତା ପ୍ରମାଣ କରି ପାରିଛନ୍ତି । ପୁଣି ଗ୍ରହ ପ୍ରାୟଶ୍ଚିତ ପାଇଁ—ଶନିକୁ ଶୃଙ୍ଗାର, ଗୁରୁଙ୍କୁ ଅଙ୍ଗାର, ମଙ୍ଗଳଙ୍କୁ ଚେଲା, ରବିଙ୍କୁ ମୂଳା, ଚନ୍ଦ୍ରଙ୍କୁ କୋକ, ଶୁକ୍ରଙ୍କୁ ଶ୍ଳୋକ, କେତୁକୁ ଗେଣ୍ଡା, ବ୍ରାହ୍ମଣିଆଙ୍କୁ କୁଣ୍ଡା, ଜହ୍ନଡିଙ୍କୁ ନେଉଳ, ଦଣ୍ଡ ଆସିକ ଶେଉଳ", ପ୍ରଭୃତି ଶବ୍ଦ ଚମତ୍କାରିତା ଓ ଅର୍ଥହୀନତା ମଧ୍ୟରେ ଯେଉଁ ବିଷୟ ପ୍ରକାଶ କରିଛନ୍ତି ତାହା ଶୁଦ୍ଧ ସାର୍ଥକ ଆନନ୍ଦର ଉଦ୍‌ବୋଧକ ।

ଜ୍ୟୋତିଷ ମର୍ଦ୍ଦନଙ୍କର ଗୋଦାନ୍ତ ପୁରାଣର ବିଧାନ ଓ ନାପିତ ରକ୍ତହିଣ୍ଡୋଳର ଗ୍ରାମକୁ ଶ୍ମଶାନ କରି ଦେବାର ବାହାଦୂରୀ ବର୍ଣ୍ଣନ ମଧ୍ୟରେ ହାସ୍ୟରସର ବିଶୁଦ୍ଧ ରୂପ

ବର୍ତ୍ତମାନ । ବିଷୟ ବା ଭାଷାର ଅନ୍ତରଞ୍ଜନରେ ରଙ୍ଗରସ ସଞ୍ଚାର କରିବାରେ ବ୍ରଜନାଥ ସୁଦକ୍ଷ ଶିଳ୍ପୀ ।

ହାସ୍ୟରସର ସ୍ରଷ୍ଟା ଭାବରେ ଓଡ଼ିଆ ସାହିତ୍ୟରେ ବ୍ରଜନାଥ ଏକ ନିର୍ଦ୍ଦିଷ୍ଟ ସମ୍ମାନର ଅଧିକାରୀ । କିନ୍ତୁ ତାଙ୍କର ହାସ୍ୟରସ ବିଦଗ୍ଧ ରସିକ ସମାଜ ପାଇଁ ଅଭିପ୍ରେତ ନୁହେଁ । ଅଶିକ୍ଷିତ ସ୍ଥୂଳ ଭାବ ବିନୋଦୀଙ୍କ ପାଇଁ ଉଦ୍ଦିଷ୍ଟ । ହାସ୍ୟରସର ମୁଖ୍ୟ ସୂକ୍ଷ୍ମ ସୌନ୍ଦର୍ଯ୍ୟ ରସ ସୃଷ୍ଟି ପାଇଁ ତାଙ୍କ ସମକ୍ଷରେ ପାରମ୍ପରିକ ଆଦର୍ଶର ଅଭାବ ଥିଲା । କିନ୍ତୁ କିଛି ନଥିବା ଭିତରୁ ସେ ଯାହା ସୃଷ୍ଟି କରି ଯାଇଛନ୍ତି ତାହା ଉତ୍ତର ପୁରୁଷ ପାଇଁ ବଳିଷ୍ଠ ଦିଗ୍‌ନିର୍ଦ୍ଦେଶକ ।

ଚତୁର ବିନୋଦରେ ହାସ୍ୟରସର ରୁଚିହୀନ ଓ ଅମାର୍ଜିତ ଅନୁନ୍ନତ ପ୍ରକାଶ ହୁଏ ତ ସେ ସମୟର ବ୍ୟକ୍ତି ମାନସ ଓ ଅଭିରୁଚିର ପରିଣାମ । ସେ ସମୟରେ ଜନସହିତ ପାରିଷଦବର୍ଗ ମାର୍ଜିତ ଓ ବିଶୁଦ୍ଧ ହାସ୍ୟରସ (Subtle humour) ଅପେକ୍ଷା ସ୍ଥୂଳ ହାସ୍ୟରସରେ ବିଶେଷ ଆନନ୍ଦ ଲାଭ କରୁଥିଲେ । ବିଦୂଷକମାନଙ୍କର ରାଜାମାନଙ୍କ ସହିତ କଥୋପକଥନରେ ସାଧାରଣତଃ ଏହିପରି ହାସ୍ୟରସର ପ୍ରକାଶ ଦେଖାଯାଇଥାଏ ବିଭିନ୍ନ ନାଟକରେ । ସୂକ୍ଷ୍ମ, ମାର୍ଜିତ ରୁଚିସମ୍ପନ୍ନ ହାସ୍ୟରସର ଅବତାରଣା ପ୍ରାୟ କେଉଁଠି ପରିଲକ୍ଷିତ ହୁଏ ନାହିଁ । ବିଳାସୀ ଜୀବନର ସାମୟିକ କ୍ଷଣିକ ଆନନ୍ଦ ଲାଭ ପାଇଁ ସେମାନେ ଥିଲେ ଅଭିଳାଷୀ । ତେଣୁ ଲୋକଚରିତ୍ରକୁ ଆଦର୍ଶ ରୂପେ ରଖି ବ୍ରଜନାଥ ମଧ୍ୟ ହାସ୍ୟରସ ପରିବେଷଣରେ ଏହି ଉପାୟ ଅବଲମ୍ବନ କରିଛନ୍ତି । ବ୍ୟଞ୍ଜନା ମାଧ୍ୟମରେ ରସପ୍ରକାଶ କଲେ ଶ୍ରୋତା ବା ପାଠକର ମନ ଉନ୍ନତ ଓ ସୂକ୍ଷ୍ମବୁଦ୍ଧି ସମ୍ପନ୍ନ ହେବା ପ୍ରୟୋଜନ । ନଚେତ୍ ବା ଭାବଗ୍ରହଣ ଓ ଆନନ୍ଦ ଲାଭ ସମ୍ଭବ ହେବ ନାହିଁ । ଏ ସମ୍ବନ୍ଧରେ ଭାଗବତ ଟୀକାରେ ସନ୍ଧ୍ୟାରେ ଗୋପାଳ ଚନ୍ଦ୍ର ପ୍ରହରାଜ ଯାତ୍ରାର ଶସ୍ତା ଅଶ୍ଳୀଳ ରୁଚିହୀନ ହାସ୍ୟରସ ସମ୍ବନ୍ଧରେ କଟାକ୍ଷପାତ କରି ତୀବ୍ର ମନ୍ତବ୍ୟ ପ୍ରକାଶ କରିଛନ୍ତି ।

ନାୟିକାର ମନରେ ହାସ୍ୟ ଉଦ୍ରେକ କରିବାର ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନେଇ ଯେଉଁ ହାସ୍ୟରସମୟ ଗଳ୍ପ ଓ କାହାଣୀର ଅବତାରଣ କରାଯାଇଛି ସେଥିରେ ଅଶ୍ଳୀଳ ବର୍ଣ୍ଣନା ସେ ସମୟର ଲୋକ ମନ ଅନୁକୂଳ ବୋଲି ଯେତେ ଯୁକ୍ତି ବାଢ଼ିଲେ ମଧ୍ୟ ଏହା ବ୍ରଜନାଥଙ୍କ ପ୍ରତିଭାପ୍ରାଚୁର୍ଯ୍ୟସଙ୍କମନର କାରଣର ବୋଲି କୁହାଯାଇନପାରେ । ବିକୃତ ବିଭଙ୍ଗ, ସ୍ୱାଭାବିକ ହାସ୍ୟରସର ଅବତାରଣା ଲେଖକଙ୍କ ସ୍ଥୂଳଦୃଷ୍ଟିକୋଣର ପରିଚାୟକ ।

ବଉଳକେନାଙ୍କ ହାସ୍ୟରସ ମୁଖ୍ୟତଃ ଜୀବନ ଯନ୍ତ୍ରଣାରେ ମୁହ୍ୟମାନ ମଣିଷ ପାଇଁ ଅନାବିଳ ଆନନ୍ଦର ରସଧାରା । ବର୍ଣ୍ଣନା ଭଙ୍ଗୀରେ, ଭାଷାରେ ଓ ଜୀବନର ସରସ ପ୍ରେମ ମୂର୍ଚ୍ଛିତ ଭାବ ପ୍ରକାଶରେ ଏପରି ଏକ ରସଜ୍ଞ ମନୋଜ୍ଞ, ଅଭିବ୍ୟକ୍ତ ରହିଛି ଯାହା ଆରମ୍ଭରୁ ଶେଷପର୍ଯ୍ୟନ୍ତ ହାସ୍ୟରସର ତୃପ୍ତିକର ରଚନା କରିଛି । ବ୍ୟଙ୍ଗ ବିଦ୍ରୂପ, ଶ୍ଳେଷ, [illegible]

ପ୍ରକୃତି ବିଭିନ୍ନ ଉପାୟରେ ସମାଜ ଓ ବ୍ୟକ୍ତି ଜୀବନର ସମସ୍ତ ଅସଙ୍ଗତି ପ୍ରତି କବି କଟାକ୍ଷ କରିଛନ୍ତି ସରସ ସହାନୁଭୂତି ସଂପନ୍ନ ମନ ନେଇ ଆଉ ତାର ପ୍ରଭାବ ପଡ଼ିଛି ପରବର୍ତ୍ତୀ ସ୍ରଷ୍ଟାଙ୍କ ଉପରେ । ବ୍ରଜନାଥଙ୍କ ସୁଯୋଗ୍ୟ ଉତ୍ତର ଡାକ୍ତାର ଫକୀର ମୋହନଙ୍କ ହାସ୍ୟ-ରସରେ ଅନୁରୂପ ବିଭାବ ପରିଲକ୍ଷିତ ହୁଏ । ମାଳାଧରୀ ରାଣୀଙ୍କ ରୂପବର୍ଣ୍ଣନା ସହିତ ଚମ୍ପାର ରୂପ ବର୍ଣ୍ଣନାରେ ସାମ୍ୟ ଲକ୍ଷ୍ୟଣୀୟ । ବ୍ରଜନାଥଙ୍କ ଦାସ ବିନୋଦର ବ୍ରାହ୍ମଣ ମୁଖରେ ଆଶୀର୍ବାଦ ଶ୍ଳୋକରେ ଯେପରି ଲଳିତ ରଚନା କରିଛନ୍ତି, ଫକୀରମୋହନଙ୍କର ଛମାଣ ଆଠଗୁଣ୍ଠରେ ବୁଢ଼ିମଙ୍ଗଳାଙ୍କ ବନ୍ଦନାରେ ସେହିପରି ଅଳଙ୍କାର ପରିକଳ୍ପନା କରାଯାଇଛି । ଶ୍ଲେଷାତ୍ମକ ପଦରଚନାରେ କବିଙ୍କର ବୈଶିଷ୍ଟ୍ୟ କାମମଞ୍ଜରୀର ଓଡ଼ିଶା ପଦ୍ଧତିରେ ନିହିତ ।

"ଅତି ସୁରୂପା ଚମ୍ପକଚମ୍ପା ଭ୍ରମର ନଯାଇ ପାଶରେ ।
ମୁନି ଯଉବନ ପାଚ ଫୁଟି ଅଛୁ ପୁରୁଷର ନାହିଁ ଆଶରେ ।
ଲତାହିଁ ବଢ଼ିଲା କଢ଼ିହିଁ ଧରିଲା ଫୁଟି ଚହଟିଲା ବାସରେ
ଭୟରେ ଭ୍ରମର ପଶି ପାରୁ ନାହିଁ ଘେରିଅଛି ଚଉପାଶରେ ।

ବିନୋଦ ସାହିତ୍ୟ ଅର୍ଥାତ୍ ଆନନ୍ଦ ଉଚ୍ଛଳ ଭାବ ସାହିତ୍ୟ ସୃଷ୍ଟି କରିବା ଅଭିପ୍ରାୟରେ ଚତୁର ବିନୋଦର ପରିକଳ୍ପନା କରାଗଲେ ମଧ୍ୟ ଏହା ଉନ୍ନତ ହାସ୍ୟରସ ପରିବେଷଣ କରିବାରେ ସାମର୍ଥ୍ୟ ହୋଇଯାଇଛି । ଫକୀରମୋହନ ଯେପରି ମାନବୀୟ ଦୋଷଦୁର୍ବଳତା ପ୍ରତି ଏକ ଲଘୁହାସ୍ୟର ମମତା ମେଦୁର ଆଲୋକ ସମ୍ପାତ କରି ରସୋଜ୍ଜ୍ୱଳ ପ୍ରସନ୍ନ ଭାବ ସଞ୍ଚାର କରିବାରେ ସଫଳ କାରିଗରି ଦେଖାଇଛନ୍ତି, ବ୍ରଜନାଙ୍କ ସୃଷ୍ଟିରେ ସୌନ୍ଦର୍ଯ୍ୟର ସେ ସୂକ୍ଷ୍ମ ରସବୋଧ ଅନୁପସ୍ଥିତ । ଚତୁର ବିନୋଦର ହାସ୍ୟରସ ଅଧିକାଂଶ ସ୍ଥଳରେ ସ୍ଥୂଳ ଓ ଅମାର୍ଜିତ । ତଥାପି ଉଷର ଭୂମିରେ ମରୁଦ୍ୟାନ ସୃଷ୍ଟି କରିବାର ଯେଉଁ ସାଧୁ ସଙ୍କଳ୍ପ ବ୍ରଜନାଥଙ୍କ ରଚନାରେ ଦେଖାଯାଏ, ତାହା ଏକ ଅବିସ୍ମରଣୀୟ ପ୍ରଚେଷ୍ଟା । ହାସ୍ୟରସସ୍ରଷ୍ଟା ଭାବରେ ସେ ନମସ୍ୟ ।

## ଚତୁର ବିନୋଦର କଥାଶିଳ୍ପ

ଉପାଖ୍ୟାନ ବା କାହାଣୀର ଶିଳ୍ପ ରୂପ ଖୁବ୍ ସ୍ପଷ୍ଟ । ଏଥିରେ ଥାଏ ବିଶୁଦ୍ଧ ଗଳ୍ପରସ, ବିବୃତିମୂଳକତା ମଧ୍ୟରେ କାହାଣୀର ପୂର୍ଣ୍ଣ ସମାପ୍ତି । ବସ୍ତୁ ବୈଚିତ୍ର୍ୟ ଓ ଜୀବନ ଚିତ୍ରରେ ଏହା ପୂର୍ଣ୍ଣ । ନୀତି ଉପଦେଶ, ରୂପକ ଓ ରୋମାନସ୍‌ରେ ଏହାର ପ୍ରାଣ ପ୍ରତିଷ୍ଠା । ସ୍ଥଳ ବିଶେଷରେ ଉପାଖ୍ୟାନ ଉପନ୍ୟାସର ସଂକ୍ଷିପ୍ତ ସଂସ୍କରଣ ବୋଲି ମନେହୁଏ । ପୁଣି ବର୍ଣ୍ଣନାର କୌଶଳରେ ଓ ନିପୁଣତାରେ ଏହା ବେଳେବେଳେ କ୍ଷୁଦ୍ର ଗଳ୍ପର ସୌନ୍ଦର୍ଯ୍ୟକୁ ଲାଭ କରେ । କାହାଣୀର ବଳୟ ଭିତରେ ସମାପ୍ତି ଘଟିଲେ ,ଚରିତ୍ରର ସୂକ୍ଷ୍ମ ବିଶ୍ଳେଷଣ ନ ହୋଇ ସ୍ଥୂଳ ପରିଚୟ ମିଳିଲେ, ସମସ୍ତ ବିଷୟବସ୍ତୁରେ ଅବାସ୍ତବତାର ଗ୍ରୁଣ୍ଟାପାତ ହେଲେ ସେ ସବୁ ହୁଏ ଉପାଖ୍ୟାନ ଗୋଷ୍ଠୀୟ :

ଚତୁର ବିନୋଦର ବିଭିନ୍ନ ଗଳ୍ପରେ ଉପାଖ୍ୟାନର ଏହି ଲକ୍ଷଣଗୁଡ଼ିକ ଦେଖାଯାଏ । ଚତୁର ବିନୋଦର କଥାବସ୍ତୁ ଏପରି ଭାବରେ ରଚିତ ହୋଇଛି ଯେ ମୁଖ୍ୟ କଥାବସ୍ତୁରୁ ବହୁ କଥା ବା କାହାଣୀ ସ୍ୱତନ୍ତ୍ର ଭାବରେ ସୃଷ୍ଟି ହୋଇ ଶେଷରେ ମୂଳ କଥା ସହିତ ସଂଯୋଗ ସ୍ଥାପନ କରିଥାନ୍ତି । ସଂସ୍କୃତ ସାହିତ୍ୟରେ ହିତୋପଦେଶ, ପଞ୍ଚତନ୍ତ୍ର ଓ କାଦମ୍ବରୀରେ ଏହି ରୀତି ଅନୁସୃତ ହୋଇଛି । ଲୋକମୁଖରେ ପ୍ରଚଳିତ କାହାଣୀ ଗୁଡ଼ିକ ସଂଗ୍ରହ କରି ଯେତେବେଳେ ଲିପିବଦ୍ଧ କରିବାର ପ୍ରଚେଷ୍ଟା କରାଯାଇଛି, ସେତେବେଳେ ଅସଂଖ୍ୟ ଗଳ୍ପକୁ ଏକତ୍ର ଗ୍ରଥନ କରିବା ଅଭିପ୍ରାୟରେ ମୂଳଗଳ୍ପ ସହିତ ବହୁ ଉପଗଳ୍ପ ଓ ଶାଖାଗଳ୍ପ ସଂଯୋଜନର ପରିକଳ୍ପନା କରାଯାଇଛି ।

ଚଞ୍ଚଳାକ୍ଷୀ ଓ ମୋହନାଙ୍ଗର ସାକ୍ଷାତ ଓ ମିଳନ ପ୍ରସଙ୍ଗରେ ଚଞ୍ଚଳାକ୍ଷୀର ଗୌରୀବ୍ରତ ଉଦଯାପନ ପାଇଁ କାହାଣୀ କହିବାକୁ ସଖୀର ଅନୁରୋଧ ହେଉଛି ମୂଳଗଳ୍ପ । ହାସବିନୋଦ, ରସବିନୋଦ, ନୀତିବିନୋଦ ଓ ପ୍ରୀତିବିନୋଦ ହେଉଛନ୍ତି ମୂଳଗଳ୍ପର ଉପଗଳ୍ପ । ପ୍ରତ୍ୟେକ ଉପଗଳ୍ପ ଏକାଧିକ ଶାଖା ଗଳ୍ପରେ ଶୋଭିତ ହୋଇ ପୂର୍ଣ୍ଣତା ଲାଭ କରିଛନ୍ତି । କଥା ପରେ କଥା ମାଳା ପରି ଗ୍ରଥିତ ହୋଇ କଥାମାଳା ସୃଷ୍ଟି କରାଯାଇଛି । ଭାବରେ ସାମଞ୍ଜସ୍ୟ ଥିବା ଗୋଟିଏ କଥା ଅନ୍ୟ ଗୋଟିଏ କଥା ସୃଷ୍ଟି ମୂଳ କଥାର ରହସ୍ୟକୁ ସ୍ପଷ୍ଟ କରି ଦେଇଛି ।

ହାସ୍ୟ ବିନୋଦରେ ଗୋଟିଏ ପ୍ରଧାନ ଗଳ୍ପ ଓ ତାର ଗୋଟିଏ ଶାଖା ଗଳ୍ପ ରହିଛି । କିନ୍ତୁ ଏହି ହାସ ବିନୋଦ ଏକ ସ୍ୱତନ୍ତ୍ର ଗଳ୍ପ— ମୂଳଗଳ୍ପର ଭାବ ଉପଲବ୍ଧି ପାଇଁ ସହାୟକ ଗଳ୍ପ ନୁହେଁ । କେବଳ ହାସ୍ୟ ରସର ପାଇଁ ଏହାର ଅବତାରଣା କରାଯାଇଛି ।

ରସ ବିନୋଦର ଗୋଟିଏ ମୂଳଗଳ୍ପ ଓ ତାର ତିନୋଟି ଶାଖାଗଳ୍ପ ରହିଛି । ମୂଳଗଳ୍ପର ଭାବକୁ ଉଦ୍‌ଘାଟନ କରିବାପାଇଁ ଅନ୍ୟଗଳ୍ପ ଗୁଡ଼ିକର ପରିକଳ୍ପନା କରାଯାଇଛି । ଶାଖାଗଳ୍ପ ଗୁଡ଼ିକରେ ଭାବ ସାଦୃଶ୍ୟ ପରିଲକ୍ଷିତ ହୁଏ । ମୂଳଗଳ୍ପର ନାୟକ ନାୟିକାଙ୍କର ପ୍ରକୃତ ଅବସ୍ଥା ଉପଲବ୍ଧି କରିବାପାଇଁ ଅନ୍ୟ ଗଳ୍ପ ସହାୟତା କରିଛନ୍ତି ।

ନୀତି ବିନୋଦର ମୂଳଗଳ୍ପରେ ଯେଉଁ ସମସ୍ୟା ସୃଷ୍ଟି ହୋଇଛି ତାର ସମାଧାନ ପାଇଁ ତିନୋଟି ଶାଖା ଗଳ୍ପର ପରିକଳ୍ପନା କରାଯାଇଛି । ଶୁକ ବିମ୍ବୋଷ୍ଠ କୁଇଟି ଓ ଶାରୀ ଚନ୍ଦ୍ରକର୍ଣ୍ଣିକା ମୁଖରେ ଗୋଟିଏ ଶାଖା ଗଳ୍ପ କୁହାଯାଇଛି । ରସ ବିନୋଦରେ ବର୍ଣ୍ଣିତ ଗଳ୍ପଗୁଡ଼ିକ ଯେପରି ପରସ୍ପର ନିର୍ଭରଶୀଳ, ଏଥିରେ ସେ ରୀତି ଅନୁସୃତ ହୋଇନାହିଁ । ପ୍ରତ୍ୟେକ ଗଳ୍ପ ସ୍ୱତନ୍ତ୍ର ଭାବରେ ପ୍ରକାଶ ପାଇଛନ୍ତି । ତେଣୁ ଆପାତତଃ ଦୃଷ୍ଟିରୁ ଏମାନଙ୍କର ପରସ୍ପର ସଂଲଗ୍ନତା ବୁଝି ହୁଏନାହିଁ । କିନ୍ତୁ ପ୍ରତ୍ୟେକ ଗଳ୍ପ

ଶେଷିରେ ଯେଉଁ ପ୍ରଶ୍ନ ତାର ଉତ୍ତର ମଧ୍ୟରୁ କୁନ୍ଦରେଖାର ବବାହ ସମସ୍ୟାର ସମାଧାନ ସମ୍ଭବ ହୋଇଛି । ତେଣୁ ପ୍ରତ୍ୟେକ ଶାଖାଗଳ୍ପ ନିର୍ଦ୍ଦିଷ୍ଟ ଲକ୍ଷ୍ୟର ପୂର୍ଣ୍ଣତା ପାଇଁ ସଂଯୋଜିତ ହୋଇଛି ।

ପ୍ରୀତି ବିନୋଦରେ କୌଣସି ଗୋଟିଏ ମୂଳଗଳ୍ପ ଓ ତହିଁରୁ ଶାଖାଗଳ୍ପର ସନ୍ନିବେଶକରଣ କରାଯାଇ ବିଭିନ୍ନ ପ୍ରକାର ପ୍ରୀତିର ସ୍ୱରୂପ ପ୍ରଦର୍ଶନ କରିବାକୁ ଗୋଟିଏ ଗୋଟିଏ କାହାଣୀ କୁହାଯାଇଛି । କେବଳ ଶଠପ୍ରୀତିରେ ଗୋଟିଏ ଶାଖାଗଳ୍ପ ପ୍ରସଙ୍ଗ କ୍ରମରେ ବର୍ଣ୍ଣିତ ହୋଇଛି । ଦୁଷ୍ଟପ୍ରୀତି, ଶଠପ୍ରୀତି, ଜାତପ୍ରୀତି, ସହଜପ୍ରୀତି, କାର୍ଯ୍ୟସେନା ପ୍ରୀତି ଓ ପ୍ରବଳ ଶଠପ୍ରୀତି—ଏହିପରି ଛଅଟି ପ୍ରୀତିର ସ୍ୱରୂପ ପ୍ରଖ୍ୟାପନ କରି କେଉଁ ପ୍ରୀତି ଉତ୍ତମ ଓ କିଏ ଅଧମ ତା ଦର୍ଶାଇ ଦିଆଯାଇଛି । କିନ୍ତୁ କୌଣସି ଗୋଟିଏ ଗଳ୍ପ ସହିତ ଅନ୍ୟଗୋଟିଏ ଗଳ୍ପର ସମ୍ପର୍କ ନାହିଁ । ପ୍ରତ୍ୟେକ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଗଳ୍ପ-ରୂପେ ବର୍ଣ୍ଣିତ । କିନ୍ତୁ ଆରମ୍ଭରେ ମୋହିନୀଙ୍କ ପ୍ରୀତିର ବିଭିନ୍ନ ଭେଦ ଚମ୍ପକାକ୍ଷୀ ସମକ୍ଷରେ ପ୍ରକାଶ କରିବା ଘଟଣାରୁ ଏ ଗୁଡ଼ିକ ମୂଳଗଳ୍ପ ସହିତ ସଂଯୋଜିତ ହୋଇଛନ୍ତି ।

ଚତୁର ବିନୋଦର ପ୍ରତ୍ୟେକ ବିନୋଦରେ କଥା ଉପସ୍ଥାପନା କୌଶଳ ଭିନ୍ନ ଭିନ୍ନ । ରସ ପରିବେଷଣରେ ମଧ୍ୟ ବ୍ରଜନାଥ ସତର୍କତା ଅବଲମ୍ବନ କରିଛନ୍ତି । ପ୍ରତ୍ୟେକ ଗଳ୍ପରେ ଭିନ୍ନ ଭିନ୍ନ ସ୍ୱାଦ ରହିଛି । ଏକ ପ୍ରକାର ଗଳ୍ପକୁ ସମାନ ଢଙ୍ଗରେ ପ୍ରକାଶ କରି ଚିତ୍ତ ଅବସାଦକାରୀ ଭାବ ସୃଷ୍ଟି କରିବା ପରିବର୍ତ୍ତେ ବ୍ରଜନାଥ ଗଳ୍ପ ପରିବେଷଣରେ ଯେପରି ଚାତୁର୍ଯ୍ୟ ଅବଲମ୍ବନ କରିଛନ୍ତି, ତାହା ଲକ୍ଷ୍ୟଣୀୟ । ପ୍ରେମ କାହାଣୀ, ଠକ କାହାଣୀ, ପଶୁପକ୍ଷୀ କାହାଣୀ, ପ୍ରବଞ୍ଚନାର କାହାଣୀ ଓ ନୀତିଶିକ୍ଷାପୂର୍ଣ୍ଣ କାହାଣୀ କହି ସାମାଜିକ ଜୀବନକୁ ସଂଯତ ଓ ଶୃଙ୍ଖଳିତ କରିବାର ପ୍ରଚ୍ଛନ୍ନ ଅଭିପ୍ରାୟ ପ୍ରକାଶ କରିଛନ୍ତି ।

ଚତୁର ବିନୋଦରେ ଗୋଟିଏ ମୂଳଗଳ୍ପ, ନଅଟି ଉପଗଳ୍ପ ଓ ଅଠଗୋଟି ଶାଖାଗଳ୍ପ ରହିଛି । ଅଧ୍ୟାପକ ନଟବର ସାମନ୍ତରାୟ ଏହାର ବିସ୍ତୃତ ଆଲୋଚନା କରି ଗଳ୍ପ ପରିବେଷଣରେ କୌଶଳ ଓ ସନ୍ନିବେଶ ଚାତୁରୀ ଦେଖାଇ ଦେଇଛନ୍ତି ।

## କଥାଶୈଳୀ ଓ ଭାଷା

ଚତୁର ବିନୋଦର ସୃଷ୍ଟିକାଳ ଗଦ୍ୟ ସାହିତ୍ୟ ରଚନା ପାଇଁ ପ୍ରଶସ୍ତ ନଥିଲା । ସେ ସମୟରେ ଓଡ଼ିଆ ଭାଷାରେ ବିଭିନ୍ନ ଗଦ୍ୟସୃଷ୍ଟି ସମ୍ଭବ ହେଲେହେଁ ସାହିତ୍ୟିକ ଗଦ୍ୟର ଦୃଷ୍ଟାନ୍ତ ବିରଳ । ସେ ଯୁଗ ଥିଲା କାବ୍ୟର ଯୁଗ, ଭାବ ପ୍ରବଣତାର ଯୁଗ । ପଦ୍ୟରେ ମନର ଭାବକୁ ଯେପରି ସହଜରେ ପ୍ରକାଶ କରିବା ସମ୍ଭବ ଓ ଶ୍ରୁତିମଧୁର ମାଦକତା ଓ ଆବେଗ ମୁଖର ସ୍ୱତଃସ୍ଫୂର୍ତ୍ତି ବ... ନତା ବିଦ୍ୟମାନ

ଗଦ୍ୟରେ ତାହା ସମ୍ଭବପର ନୁହଁ । ପଦ୍ୟରେ ଭାବପ୍ରକାଶ କରିବା ଶ୍ରମସାଧ୍ୟ ନୁହେଁ, ପୁଣି ସଙ୍ଗୀତମୟ ଛନ୍ଦୋବଦ୍ଧ ରଚନା ଆବୃତ୍ତି ଯୋଗ୍ୟ । ଏଥିପାଇଁ କବି ପଦ୍ୟରେ ଭାବ ପ୍ରକାଶ କରିବାକୁ ଯେତେ ଆଗ୍ରହ, ଗଦ୍ୟ ରଚନା ପାଇଁ ସେତେ ଉଦ୍ୟମୀ ନୁହେଁ । ଏହି ସବୁ ଦୃଷ୍ଟିରୁ ପ୍ରାଚୀନ ସାହିତ୍ୟରେ ରସବୋଧର ସହଜ ମାଧ୍ୟମ ରୂପେ ପଦ୍ୟ ସ୍ୱୀକୃତ ଥିଲା । ଅଷ୍ଟାଦଶ ଶତାବ୍ଦୀରେ ସୁଦ୍ଧା ଏହି ଭାବଧାରା ଅକ୍ଷୁଣ୍ଣ ରହିଥିଲା । ବ୍ରଜନାଥ ମଧ୍ୟ ବହୁ କାବ୍ୟ କବିତାର ଜଣେ ସଫଳ ସ୍ରଷ୍ଟା । କିନ୍ତୁ ତାଙ୍କର ଚତୁର ବିନୋଦ ଯୁଗ ଅଭିରୁଚିର ଏକ ସମ୍ପୂର୍ଣ୍ଣ ବ୍ୟତିକ୍ରମ, ଏକ ସାହସିକ ପଦକ୍ଷେପ । କିନ୍ତୁ ଉତ୍ତର ପୁରୁଷ ପାଇଁ ଆଗାମୀ ଜୀବନ ପାଇଁ ଏହା ଏକ ଦୀପସ୍ତମ୍ଭ ସଦୃଶ । ରୁଦ୍ର ସୁଧାନିଧି ଗଦ୍ୟ ସାହିତ୍ୟର ପ୍ରଥମ ବୈପ୍ଳବିକ ପ୍ରକାଶ ହେଲେହେଁ ଚତୁର ବିନୋଦ ଗଦ୍ୟ ସାହିତ୍ୟର ସଫଳ ସୃଷ୍ଟି ଓ ସାର୍ଥକ ସଙ୍କେତ । ଚତୁର ବିନୋଦର ଏଇ ସଫଳତା ତାର ଭାଷା ଓ ଶୈଳୀର କାବ୍ୟ-ିକତା ଓ ଆଧୁନିକତାରେ ନିହିତ ।

ରୁଦ୍ର ସୁଧାନିଧି ପଦ୍ୟ ମିଶ୍ରିତ ଏକ ଆଳଙ୍କାରିକ ଗଦ୍ୟ । ଅର୍ତ୍ତତ୍ରାଣ ମହାନ୍ତି ଏହାକୁ ପଦ୍ୟ ଓ ଗଦ୍ୟର ମଧୁର ସମନ୍ୱୟ ବୋଲି କହନ୍ତି । ପ୍ରହ୍ଲାଦ ପ୍ରଧାନ ଏହାକୁ ଦାଣ୍ଡି ବୃତ୍ତର ପଦ୍ୟ ରଚନା ବୋଲି ମତବ୍ୟକ୍ତ କରିଛନ୍ତି । କରୁଣାକର କରଙ୍କ ମତରେ ଏହା ଏକ ଗଦ୍ୟକାବ୍ୟ । କୃଷ୍ଣଚରଣ ବେହେରା ଭିନ୍ନ ଦୃଷ୍ଟିରୁ ବିଚାର କରି ଏହା ଆବୃତ୍ତି-ଧର୍ମୀ ଶ୍ରବଣସୁଖଦାୟୀ ଗଦ୍ୟଶୈଳୀରେ ରଚିତ ବୋଲି କହିଛନ୍ତି । କିନ୍ତୁ ଚତୁର ବିନୋଦ ନିପଦ୍ୟନ୍ଦେହରେ ଗଦ୍ୟଶୈଳୀରେ କଥା ବା କାହାଣୀ ରଚନା କରିବାର ଏକ ସଚେତନ ପ୍ରଚେଷ୍ଟା । ଏହାର ଭାଷା ଓ ଶୈଳୀ ଆଳଙ୍କାରିକ ଗଦ୍ୟର ଅସ୍ୱାଭାବିକ ବାକ୍ ବିଳାସର ଆଡ଼ମ୍ବରକୁ ସ୍ୱୀକୃତି ଦେବା ସଙ୍ଗେ ସଙ୍ଗେ ଆଧୁନିକ ଗଦ୍ୟର ସାବଲୀଳ ସ୍ୱାଭାବିକ ଭାଷା ପ୍ରତିଷ୍ଠା ଦିଗରେ ସଫଳତା ଲାଭ କରିପାରିଛି । ଆଧୁନିକ ଗଦ୍ୟର ନିକଟବର୍ତ୍ତୀ ହେବା ଫଳରେ ଚତୁର ବିନୋଦ ଗଦ୍ୟ ସାହିତ୍ୟର ପ୍ରଥମ ପାବଚ୍ଛି ରୂପେ ସ୍ୱୀକୃତ ।

ଗ୍ରନ୍ଥର ଆରମ୍ଭରେ କବିଙ୍କ ଅଭିବ୍ୟକ୍ତି—ହେ ରସିକ ଜନମାନେ, ଦେଶ-ଭାଷାରେ ଚତୁର ବିନୋଦ ନାମେ ଏକ କଥାଏ କହିବା ଶୁଣିବା ହେଉ । କଥିତ ଭାଷାରେ ବା ଲୌକିକ ଭାଷାରେ କଥା କହିବାପାଇଁ କବି ସ୍ପଷ୍ଟ ଭାବରେ ପ୍ରକାଶ କରିଛନ୍ତି । ପୂର୍ବରୁ ସଂସ୍କୃତରେ କଥାକାବ୍ୟ ରଚିତ ହେଲେହେଁ, ଓଡ଼ିଆ ଭାଷାରେ ପ୍ରଚଳିତ ନଥିଲା । କିନ୍ତୁ ବ୍ରଜନାଥଙ୍କ ବୈଶିଷ୍ଟ୍ୟ ହେଉଛି କଥିତ ଭାଷାକୁ ସାହିତ୍ୟିକ ସୌନ୍ଦର୍ଯ୍ୟ ଓ ଗାମ୍ଭୀର୍ଯ୍ୟ ପ୍ରଦାନ କରି ଉନ୍ନତ ଓ ମାର୍ଜିତ ଆଧୁନିକ ଭାଷା ରୂପେ ସମ୍ମାନିତ କରିବା । ଚତୁର ବିନୋଦକୁ ଏଇ ସମ୍ମାନରେ ପ୍ରତିଷ୍ଠିତ କରିବାକୁ ହେଲେ ପ୍ରଥମେ ତାର ଭାଷାର ଅନ୍ତଃସୌନ୍ଦର୍ଯ୍ୟ ପରୀକ୍ଷଣୀୟ ।

ଚତୁର ବିନୋଦର ଗଦ୍ୟ ଭାଷା ରୁଦ୍ରସୁଧାନିଧି ପରି ଖଣ୍ଡ ଖଣ୍ଡ ବାକ୍ୟରେ ରଚିତ ନୁହେଁ । ଏହା ମନର ଭାବକୁ ପୂର୍ଣ୍ଣତଃ ପ୍ରକାଶ କରୁଛି । କିନ୍ତୁ ଏଥିରେ ଏକ

ପ୍ରକାର ଭାଷା ପ୍ରକାଶ ପାଇନାହିଁ । କେଉଁଠି ପଦ୍ୟର ଲଳିତ ଝଙ୍କାର, ଅନୁପ୍ରାସିକ ଭାଷା ସନ୍ଧାରେ ପ୍ରକାଶିତ । ଦୃଷ୍ଟାନ୍ତ ସ୍ୱରୂପ—ଏମ ନ ସବୁ ଦେଖନ୍ତେ କୁମାର ଅନଙ୍ଗ ରଙ୍ଗରେ ଅତ୍ୟନ୍ତ ତରଙ୍ଗ ହୋଇଲା । ପୁଣି କେଉଁଠି କଥିତ ଭାଷାରେ ବର୍ଣ୍ଣିତ । ଦେଖନ୍ତୁ—ତାହାଙ୍କ ସୁହାଗୀ କହିଲା, କଲେ ତ ଲୋକ ଅପବାଦ, ନ କଲେ ପୁରୁଷ ହତ୍ୟା, ୧ଣେ ପୁଣି ରଜା ପୁଅ, ଏଥିରେ ମୁଁ କଉଁ କଥା କହିବ । ମନର ଭାବକୁ ସ୍ୱଚ୍ଛନ୍ଦ ଭାବରେ ଏଠାରେ କଥିତ ଭାଷାରେ ପ୍ରକାଶ କରାଯାଇଛି । କିନ୍ତୁ ଏସବୁରେ ଯେପରି ଭାବର ବଳିଷ୍ଠତା ପ୍ରକାଶିତ ସେହିପରି ଅର୍ଥ ସୌନ୍ଦର୍ଯ୍ୟରେ ମଣ୍ଡିତ ।

ଚତୁର ବିନୋଦରେ ଆଲଙ୍କାରିକ ଭାଷାର ବହୁଳ ପ୍ରୟୋଗ ପରିଲକ୍ଷିତ ହୁଏ । ପ୍ରେମର ଏକ ଅକପଟ ଚିତ୍ର ଅଙ୍କନ କରିବାକୁ ଯାଇ ଉପମା ଅଳଙ୍କାରର ଆଶ୍ରୟ ଗ୍ରହଣ କରିଛନ୍ତି—'କାମ ପ୍ରବଳରେ ତ ମତ୍ତ କରି କରିଣୀ ପ୍ରାଏ ହୋଇଛନ୍ତି ।' ରୂପକ ଅଳଙ୍କାର ପ୍ରୟୋଗରେ ଅର୍ଥର ଗୌରବ ଅଭିବୃଦ୍ଧି କରିଛନ୍ତି । ଯଥା—କନ୍ଦର୍ପ-ଅନ୍ଧାର, ଯଉବନ-ସମ୍ପତ୍ତି । ଅନୁପ୍ରାସ ଅଳଙ୍କାରର ବହୁଳ ପ୍ରୟୋଗରେ କଥାରେ ଏକ ଶ୍ରୁତି ସୁଖକର ଝଙ୍କାର ସୃଷ୍ଟି ହୋଇଛି । ଭାଷା କହିଲେ ଅମୃତ ବରଷଇ । ହସି ଗୃହିଁ ମୋହିବା ମନ କଲେ ଯୁଗଯୁଗାନ୍ତ ଯୋଗୀମାନେ ଯୋଗ ଛାଡ଼ି ଭୁଲିବେ ।' ଶ୍ଳେଷାଳଙ୍କାର ମାଧ୍ୟମରେ ମନର ଭାବକୁ ଏକ ଶୋଭନ ସୌନ୍ଦର୍ଯ୍ୟରେ ପ୍ରକାଶ କରି ବ୍ରଜନାଥ ଚମ୍ପକଲକ୍ଷ୍ମୀ କଣ୍ଠରେ ଫୁଟାଇଛନ୍ତି, 'ଆମ୍ଭେ ତ ଅବଳା ନାରୀ, ଆମ୍ଭମାନଙ୍କ ଆଶା ବରଷା ନଦୀ ପରି । ରସ ପାଇଲେ ବେଳକୁ ବେଳ ବଢ଼ୁଥାଇ, କୂଳ ସରକି ବୁଡ଼ାଇ । ନାରୀର ଆଶା ବର୍ଷାକାଳର ନଦୀ ପରି । ନଈ ଯେପରି ବର୍ଷା ଜଳ ପାଇଲେ ବଢ଼େ ଓ ଦୁଇ କୂଳ ଲଙ୍ଘନ କରେ । ସେହିପରି ନାରୀ ଶୃଙ୍ଗାର ରସର ଆଶା ପାଇଲେ ପିତୃକୁଳ ଓ ସ୍ୱାମୀ କୁଳକୁ କଳଙ୍କରେ ବୁଡ଼ାଇ ଦିଏ । ଏହି ବାକ୍ୟବିନ୍ୟାସ ଭାଷା ଓ ଚରିତ୍ରର ସୌନ୍ଦର୍ଯ୍ୟ ଅଭିବୃଦ୍ଧିରେ ସହାୟକ । ଚତୁର ବିନୋଦର ଭାଷା କେବଳ କାହାଣୀ ବର୍ଣ୍ଣନା କରିବା ପାଇଁ ଅଭିପ୍ରେତ ନୁହେଁ । ଏଥିରେ ସାହିତ୍ୟିକ ସୌନ୍ଦର୍ଯ୍ୟ ଓ ବ୍ୟଞ୍ଜନା ଥିବାରୁ ଏହା ଗଦ୍ୟ ସାହିତ୍ୟର ଅନବଦ୍ୟ ସୃଷ୍ଟି ରୂପେ ବିବେଚିତ ।

କଥୋପକଥନରେ କେତେକ ସ୍ଥଳରେ ସଂସ୍କୃତ ଭାଷାର ପ୍ରୟୋଗ ଦେଖାଯାଏ । ଯଥା—

ଅହୋ ଭାଗ୍ୟ ମହାଭାଗ୍ୟମ୍ । ଅୟଂ ଜାମାତା କସ୍ମିନ୍ ସ୍ଥିତ ?
ଦୂତେନ କଥିତଂ—ମୂଷିକ ଗର୍ତ୍ତେ ସ୍ଥିତଃ ।

କଂ ନାମ ?— ଏପରି ସଂଳାପ ରୁଦ୍ରସୁଧାନିଧିର ବର୍ଣ୍ଣନା ସହିତ ସାଦୃଶ୍ୟ ଦେଖାଇଦିଏ । କେଉଁଠି ଗ୍ରାମ୍ୟ ଭାଷା, କେଉଁଠି ସଂସ୍କୃତ ଭାଷା, କେଉଁଠି ଶୁଦ୍ଧ ଓଡ଼ିଆ ଭାଷା—ଏପରି ଭାଷାର ବିଭିନ୍ନ ପ୍ରକାଶ ଭଙ୍ଗୀରେ ଚତୁର ବିନୋଦର କଳେବର ଶୋଭିତ ।

ଚତୁର ବିନୋଦରେ ପ୍ରାଚୀନ ଶବ୍ଦର ବହୁଳ ପ୍ରୟୋଗ ଦେଖାଯାଏ । ଅଧୁନାତନ ମଣିଷ ପ୍ରାଚୀନ ଶବ୍ଦକୁ ଯେମିତି ପରିହାର କରିବାକୁ ଚାହେଁ, ପ୍ରାଚୀନ ତାର କାର୍ଯ୍ୟ ବିସ୍ତାର କରି ସେତିକି ପ୍ରତିଷ୍ଠା ଦାବୀ କରେ । ପୂର୍ବେ ଆମେ କେଉଁ ଭାଷା ବ୍ୟବହାର କରୁଥିଲୁ, ତା' ଜାଣିବାର କୌତୂହଳ ସବୁ ମଣିଷର । ବ୍ରଜନାଥଙ୍କ ରଚନାରେ ଦେଶୀ-ଭାଷା ବା ପ୍ରଚଳିତ କଥିତ ଭାଷାର ଦୃଷ୍ଟାନ୍ତ ହେଉଛି – ସୁହାନ, ଘଟି, ଘଏ, ନାଗ, ହାଥ ଝହଟହ, ନୋହଇ, ଦୁଜେ, ମନସ୍ତ, ଅଗ୍ୟାନ, ବଡ଼ମୁଣ୍ଡ, ନାଗିଲ, ଆଚ୍ୟା, ସଞ୍ଜ, ନଷ୍ଟ୍ୟାନ, ମୋଦୁକୁଟିଏ, ଦୁଥଆ, ତଳଦନ, ଜିଭ୍ୟା ପ୍ରଭୃତି ପ୍ରାଚୀନ ଶବ୍ଦ । ଏ ସେ ପଡ଼ିଲେ ଅଥଏ ହୋଇ ଥାଉ ନ କି ?' ପ୍ରଶ୍ନାର୍ଥକ 'କି' ର ବ୍ୟବହାର ପ୍ରାଚୀନ । 'କେହାମୋଦ ନାମେ ଏକ ବଣ୍ୟ ଜଣେ ଥିଲା । ଏପରି ପ୍ରୟୋଗ ପ୍ରାଚୀନ, ଏକ ବଚନରେ ଦୁଇଥର ସମଅର୍ଥବୋଧକ ଶବ୍ଦର ବ୍ୟବହାର । ପର୍ସିଆନ୍ ଶବ୍ଦ 'ଲୋସ' ଓ 'ହିଦର୍ କେ ବାତ୍ ମୁଁ କଟେଡ଼ତ୍ , ପ୍ରଭୃତି ହିନ୍ଦୀ ଭାଷାର ମଧ୍ୟ ପ୍ରବେଶାଧିକାର ଏଥିରେ ରହିଛି । ବ୍ରଜନାଥ ଫକୀର ମୋହନଙ୍କ ପରି ଶକ୍ତିଶାଳୀ ବଳିଷ୍ଠ ଗଦ୍ୟଭାଷାର ଶକ୍ତି ନିର୍ମାଣ କରିବାରେ ସମର୍ଥ ନ ହେଲେହେଁ ଉତ୍ତର ପୁରୁଷ ପାଇଁ ଦୃଢ଼ ଭିତ୍ତି ସ୍ଥାପନ କରି ଯାଇଛନ୍ତି—ଏହା ନିଃସନ୍ଦେହରେ ସ୍ୱୀକୃତ ମତ ।

ବ୍ରଜନାଥଙ୍କ ପୂର୍ବରୁ ଶିଶୁବେଦର ଗଦ୍ୟଟୀକା, ନାଗଲ ଚଉଠୀ କଥା, ରାମ ଚରିତ, ସୋମନାଥ ବ୍ରତକଥା ପ୍ରଭୃତି ଯେଉଁ ଗଦ୍ୟ ରଚନା ଥିଲା, ସେ ସବୁ ସାହିତ୍ୟିକ ଭାଷା ସୃଷ୍ଟି ଦିଗରେ ଗୋଟିଏ ଗୋଟିଏ ଦୁର୍ବଳ ପ୍ରୟାସ । ତଥାପି ଚୂଡ଼ାମଣି ଯୁଧାନଧର ଆଳଙ୍କାରିକ ତଥା କାବ୍ୟିକ ଗଦ୍ୟ ସହିତ ପୂର୍ବୋକ୍ତ ଗଦ୍ୟ ଭାଷା ହେଉଛି ବ୍ରଜନାଥଙ୍କ ଭାଷା ସୃଷ୍ଟିର ପୃଷ୍ଠଭୂମି । ପ୍ରାଚୀନ ଶବ୍ଦ, ଫାର୍ସୀ, ଦେଶୀ ଭାଷା ଓ ଶୁଦ୍ଧ ସଂସ୍କୃତ ଭାଷାର ସମ୍ମେଳନରେ ବ୍ରଜନାଥଙ୍କ ଚତୁର ବିନୋଦର ଶବ୍ଦନ୍ୟାସ ।

ଚତୁର ବିନୋଦର ଗଦ୍ୟଶୈଳୀ ସମ୍ବନ୍ଧରେ ଆଲୋଚନା କଲେ ଜଣାଯାଏ ଯେ, କାବ୍ୟିକ ଶାସ୍ତ୍ରୀୟ ଭାଷା ସହିତ କଥିତ ଘରୋଇ ଭାଷାର ଚମତ୍କାର ସମନ୍ୱୟ ସାଧିତ ହୋଇଛି । ମନ୍ତ୍ରୀଙ୍କର ଶୋକ ବର୍ଣ୍ଣନା କରି ଗିରିଧର ଦତ୍ତ ଭାବୁଛି—'ହେମଲତା ମାଡ଼ିଛି, କି, ବକୁଳ ଛୁଡ଼ିଛି କି, ରତ୍ନଶିଖା ବେଢ଼ିଛି, ଚନ୍ଦ୍ରକଳା ବଢ଼ିଛି କି ?' ଭାବମୂର୍ଚ୍ଛିତ କାବ୍ୟ ବର୍ଣ୍ଣନା ପରି ଏଠାରେ କବିଙ୍କର କମନୀୟତା ଆବୃତ୍ତିଧର୍ମୀ କାବ୍ୟିକ ଶୈଳୀ ସହିତ ଏହାକୁ ତୁଳନା କରାଯାଇପାରେ । ଯେପରି— 'କି ବଜ୍ରକୂଳର କାନ୍ତି ! କି ବ୍ରହ୍ମାଣ୍ଡ ଦେବଙ୍କ ମୋହନୀ ପାଣି । କି ବନ୍ଧୁ ନିରମିଳ ଲାବଣ୍ୟଖଣି । କି ଅନଙ୍ଗ ଅମୃତପୂର୍ଣ୍ଣ କଳସୀ । କାନ୍ଥାରେ ଏସବୁ ଗଦ୍ୟ ହେଲେ ହେଁ ଆତ୍ମାରେ ପଦ୍ୟ । ତେଣୁ ଏହା କାବ୍ୟିକ ଗଦ୍ୟ-ଶୈଳୀରେ ରଚିତ କହିଲେ ପ୍ରମାଦଜନକ ହେବ ନାହିଁ ।

ଏକାଧିକ ଖଣ୍ଡବାକ୍ୟକୁ ଅସମାପିକା କ୍ରିୟା ସଂଯୋଗରେ ଦୀର୍ଘ ବାକ୍ୟ ରଚନା ଓ କଥିତ ଭାଷାରେ ପ୍ରାଣବନ୍ତ ବର୍ଣ୍ଣନା ବ୍ରଜନାଥଙ୍କ ରଚନାଶୈଳୀର ଅନ୍ୟତମ ବୈଶିଷ୍ଟ୍ୟ ।

ତାର ଏକ ନମୁନା ହେଉଛି—'ଏଣେ ଏକ ଦିନକର କୁନ୍ଦରେଖା ନାମେ ସେ ବ୍ରାହ୍ମଣ ଝିଅ ସନ୍ଧ୍ୟା ସମୟରେ ନଗ୍ର ଉପାନ୍ତ କୂପକୁ ଜଳ ଆଣିବାକୁ କୁମ୍ଭ ନେଇ ଗଲା, କୁମ୍ଭ କଣ୍ଠରେ ରଜ୍ଜୁ ବନ୍ଧନ କରି କୂପରୁ ଜଳ ଘଟେ ପୂରାଇ (ଓଟାଳି) ଅଣ୍ଟେନ୍ତେ ପାଦ ଖସି ଯିବାରୁ କୂପରେ ପଡ଼ିଗଲା । ଆଣନ୍ତେ, ଦେଖାନ୍ତେ, ଆସନ୍ତେ ପ୍ରଭୃତି ପ୍ରାଚୀନ ଗଦ୍ୟ ସାହିତ୍ୟ ଶୈଳୀ । ଏହି ସ୍ୱାଭାବିକ ବର୍ଣ୍ଣନା ଶୈଳୀରେ ପ୍ରାଣ ଅଛି, ମାଧୁରୀ ଅଛି ।

ରସ ବିନୋଦରେ ସନ୍ଧ୍ୟା ବର୍ଣ୍ଣନା କରିବାକୁ ଯାଇ ବ୍ରଜନାଥ ଲେଖିଛନ୍ତି—ଏମନ୍ତେ ନିଶି ପ୍ରବେଶରେ ଅନ୍ଧାର ଘୋଟନ୍ତେ କୃଷ୍ଣାଭିସାରୀମାନେ ଅଭିସାର କରିବାକୁ ବାହାରିଲେ, ଚୋରମାନେ ଖନ୍ତି ନେଇ ଚଳିଲେ, ଖଦ୍ୟୋତମାନେ ଉଡ଼ିଲେ, ନିଶାଚରମାନେ ବିହରିଲେ, ମନେ ହେଲା ଏ ସନ୍ଧ୍ୟା କାଳ ନୁହଇ, ନିଶା ବାଳିକା ଅବା କଳାମେଘୀ ଶାଢ଼ୀ ପିନ୍ଧି, ନୀଳ ଅଳଙ୍କାର ମଣ୍ଡି ହୋଇ ଅଭିସାର କରିବାକୁ ବାହାରିଲା ।' ଉତ୍ପ୍ରେକ୍ଷା ଅଳଙ୍କାର ବିନ୍ୟାସରେ କବି ସନ୍ଧ୍ୟାକାଳୀନ ଯେଉଁ ପ୍ରାକୃତିକ ଶୋଭା ବର୍ଣ୍ଣନା କରିଛନ୍ତି ତାହା ସର୍ବାଂଶରେ ରୀତିଯୁଗୀୟ କବିଙ୍କର କାବ୍ୟର ସନ୍ଧ୍ୟା ବର୍ଣ୍ଣନାର ସମଗୋତ୍ରୀୟ । କବିତାକୁ ଗଦ୍ୟରେ ରଚନା କଲେ ଯେପରି ଶ୍ରୁତି ସୁଖକର ହେବ, ଏହି ରଚନାଟି ତଦ୍ରୂପ ।

ହାସ୍ୟରସାତ୍ମକ ବିଷୟ ବର୍ଣ୍ଣନାରେ ବ୍ରଜନାଥ ଭିନ୍ନ ଶୈଳୀର ଆଶ୍ରୟ ନେଇଛନ୍ତି । ବ୍ୟାଧିବର୍ଜିତ ବୈଦ୍ୟ ରୋଗ ଆରୋଗ୍ୟର ବିଧାନ ଦେଇ କହୁଛନ୍ତି—''କେବଳ ଗ୍ରହମାନଙ୍କୁ ପ୍ରାୟଶ୍ଚିତ କଲେଟି ଏ ରୂପେ ମନୁଷ୍ୟମାନେ ଆରୋଗ୍ୟ ହୁଅନ୍ତି । କି କି ପ୍ରାୟଶ୍ଚିତ କି ? ନା, ଶନିଙ୍କି ଶୃଙ୍ଗାର, ଗୁରୁଙ୍କୁ ଅଙ୍ଗାର, ମଙ୍ଗଳଙ୍କୁ ଟେଲା, ରବିଙ୍କି ମୂଳା, ଚନ୍ଦ୍ରଙ୍କୁ ଭେକ, ଶୁକ୍ରଙ୍କୁ କୋଳ, ବୁଧଙ୍କୁ ଚର୍ମ, ରାହୁଙ୍କୁ ରୋମ, କେତୁଙ୍କୁ ଗେଣ୍ଡା, ବ୍ରାହ୍ମଣୀଆଙ୍କୁ ଲୁଣ୍ଡା, ଜଉତିଷଙ୍କୁ ନେଉଳ, ଦଣ୍ଡୁଆସିଙ୍କି ଶୋଇଲ' ପ୍ରଭୃତି । ପୁଣି ଜ୍ୟୋତିଷ ମହାଜନଙ୍କ ଉକ୍ତି—''ସପ୍ତାଙ୍ଗ ଶୁଣିବାକୁ ସାବଧାନ ମଣିମା । ଆଜ ଦିବସ କୃଷ୍ଣ ପକ୍ଷର । ତିଥି ଘଡ଼ି ପନ୍ଦର, ଗାଏ ନୁଅ ପନ୍ଦର । ମଙ୍ଗଳବାର ଦିନ ବେଳ ଛଅଦଣ୍ଡ ଠେକାଇ ଉତ୍ତାରେ ଶୁକ୍ରବାର ଆଦ୍ୟରୁ ଭେଟଣା ଯୋଗ ହେବ । ଧନୁ ଖାର ନିଶା ଲଗ୍ନରେ ବିଜୁଆଡି ଯୋଗ ପଡ଼ୁଛି । ଜ୍ୟୋତିଷ ବିଦ୍ୟାକୁ ବିକୃତି ଓ ଅସଙ୍ଗତ ମଧ୍ୟରେ ଭାଷା ଓ ବର୍ଣ୍ଣନାରେ ପ୍ରକାଶ କରି ହାସ୍ୟରସ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଶୈଳୀରେ ମଧ୍ୟ ସ୍ୱାତନ୍ତ୍ର୍ୟ ପ୍ରତିପାଦନ କରିଛନ୍ତି । ଫକୀରମୋହନ ନନାଙ୍କ ପଙ୍କ୍ତିରେ ଏହି ଶୈଳୀ ଅନୁସରଣ କରିଛନ୍ତି ଆଉ ଟିକିଏ ଉନ୍ନତ ଭଙ୍ଗୀରେ । 'ପେଟେଣ୍ଟ ମେଡ଼ିସିନ'ରେ ଚନ୍ଦ୍ରମଣି ବାବୁ 'ମୋର କଳିଜା ରାଣୀକୁ ବିସ୍ତାରିଣି ଶନିସପ୍ତା ହୋଇଛି' ବୋଲି କହି ଅସଙ୍ଗତ ମଧ୍ୟରେ ହାସ୍ୟରସ ସୃଷ୍ଟି କରିଛନ୍ତି ।

ରୂପ ବର୍ଣ୍ଣନା, ନଦୀ ବର୍ଣ୍ଣନା ବା ସଂଧ୍ୟା ବର୍ଣ୍ଣନା ପଲ୍ଲୀ କବିତାରେ ରଚିତ ହୋଇଛି । ଗଦ୍ୟ ମଝିରେ ପଦ୍ୟର ସଂଯୋଜନ ଦ୍ୱାରା ସ୍ରଷ୍ଟା ପାଠକ ବା ଶ୍ରୋତାର କ୍ଳାନ୍ତି ଓ ଅବସାଦ ଅପନୋଦନରେ ସମର୍ଥ ହୋଇଛନ୍ତି ।

ବାକ୍ୟ ରଚନାରେ ଶବ୍ଦ ବିନ୍ୟାସରେ ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରି ବ୍ରଜନାଥ ଗଦ୍ୟ ଶୈଳୀ ପାଇଁ ବଳିଷ୍ଠ ପରମ୍ପରା ସୃଷ୍ଟି କରି ଯାଇଛନ୍ତି । ଚତୁର ବିନୋଦ ନାମେ ଏକ କଥାଏ କହି, ବଡ଼ ଦୁଃଖିତ ଜଣେ ଥିଲା ଯେ ସେ ସନମତ କଲା । 'ଏହାଠାରୁ ପ୍ରଭୁ ସୁନ୍ଦର ହେବ ।

'ଏହାଶୁଣି ଉର୍ମିପୁର ଠାରୁ ଝାଡୁଟାଏ ମାଡ଼ ଯାଉଛି ।'

ଏ ରୂପେ ଅନ୍ୟାୟ କରିବାରୁ ସେ ପଥ ନ ଚଳାଇ ।

ତଥା ତାହାଙ୍କୁ ବୋଲିକି ?

ଉପସ୍କର ବଦ୍ୟ ମୋତେ ପଠିଆଇ ଦେଲେ ।

ଏ ଦ୍ୱାର ମୁଁ ପୋଡ଼ି ନାହିଁ ଆଉ କିଏ ପୋଡଥିବ ତାହା ବୁଝିବାର ଆଗ୍ୟା ଆସନ୍ତୁ ।

ଅନନ୍ତରେ ଟହ ଟହ ହୋଇ ହସିଲେ ।

ସେ ଚଞ୍ଚଳ ଛୀ ତାତର ହୋଇ ପ୍ରିୟ ସଖୀ ସୁହାଗୀ ଆଗେ କହିଲବୋଇଲା ଏକ ଅଚମ୍ଭିତ କଥା ।

ସେ ଯେ, ରସାଳ କାଞ୍ଚନ ନାମେ ଏକ ନଗର ଥିଲା ।

ପ୍ରତ୍ୟେକ ଧାଡ଼ିରେ ଶବ୍ଦ ଓ ବାକ୍ୟ ବିନ୍ୟାସରେ ବୈଶିଷ୍ଟ୍ୟ ବର୍ତ୍ତମାନ । ଏକ କଥାଏ— ଗୋଟିଏ ଗ୍ରବର ଦୁଇଥର ପ୍ରୟୋଗ ଦ୍ୱାରା ଭାଷାର ପ୍ରାଚୀନତା ଓ ବିଷୟ ଉପରେ ଗୁରୁତ୍ୱ ଲକ୍ଷଣୀୟ । ଦୁଃଖିତ ବିଶେଷ୍ୟକୁ ବିଶେଷଣ ଦୁଃଖୀ ରୂପେ ବ୍ୟବହାର କରାଯାଇଛି । ଅଧିକ ସୁନ୍ଦର ଅର୍ଥରେ ପ୍ରଭୁ ସୁନ୍ଦରର ପ୍ରୟୋଗ, ଝାଳ ବୋହି ଯାଉଛି ପରିବର୍ତ୍ତେ ମାଡ଼ ଯାଉଛି କ୍ରିୟାର ବ୍ୟବହାର ; ପଠାଇ ସ୍ଥଳରେ ପଠିଆଇ ; ବୋଲି କି ? —ଏହିପରି ପ୍ରଶ୍ନ ଛଳରେ କଥିତ ଭାଷାର ବଳିଷ୍ଠ ପ୍ରକାଶ ; କହିଲ ବୋଇଲା ଦୁଇଟି କ୍ରିୟାର ଏକତ୍ର ସମାବେଶରେ ପ୍ରଥମଟି କ୍ରିୟା ଭାବରେ ଓ ଦ୍ୱିତୀୟଟି ସଖୀ ସୁହାଗୀକୁ ସମ୍ବୋଧନରେ 'କହିଲୁ' ଅର୍ଥରେ ପ୍ରଯୁକ୍ତ । ତା'ଛଡ଼ା କଥକମାନେ ମଧ୍ୟ ବୋଇଲା ଶବ୍ଦର ପ୍ରୟୋଗ କରିଥାନ୍ତି । ସେ ଯେ—କଥାକୁ ଏପରି ଲମ୍ବାଇ କହିବାଦ୍ୱାରା ଦୂର ଅତୀତକୁ ବୁଝାଇବା ସଙ୍ଗେ ସଙ୍ଗେ କଥା କହିବା ଭଙ୍ଗୀରେ ମଧ୍ୟ ସୌନ୍ଦର୍ଯ୍ୟ ସ୍ରଷ୍ଟାପିତ । ଶବ୍ଦ ଓ ବାକ୍ୟ ବିନ୍ୟାସରେ ବ୍ରଜନାଥ ବୈଶିଷ୍ଟ୍ୟ ପ୍ରତିପାଦନ କରି ପ୍ରକାଶ ଭଙ୍ଗୀକୁ ଅଭିନବ ମର୍ଯ୍ୟାଦାରେ ଅଭିଷିକ୍ତ କରିଛନ୍ତି । ମୂଳତଃ ବ୍ରଜନାଥଙ୍କର ଗଦ୍ୟ ... ଏକ ପ୍ରକାର ନୁହେଁ— ଏହା ବିଭିନ୍ନ ଭାବରେ ରଚିତ । ଭାଷା ସରଳ ଲୌକିକ

ପୁଣି ଅଳଙ୍କାରିକ କାବ୍ୟର ରଚନା ଶୈଳୀ ମଧ୍ୟ ଲକ୍ଷିତ ଓ ଗଳ୍ପସାଗରର କଥିକ ସୁଲଭ ଭଙ୍ଗୀ ଏହି ଉଭୟ ଢଙ୍ଗରେ ରଚିତ ।

ଚତୁର ବିନୋଦ ଗଳ୍ପ ଉଦ୍ଭବ ଭିତ୍ତିରେ ରଚିତ । କାଦମ୍ବରୀ ପଞ୍ଚତନ୍ତ୍ର, କଥାସରିତ ସାଗର, ହିତୋପଦେଶ ପ୍ରଭୃତିରେ ଯେପରି ଭାବରେ ଗଳ୍ପ ରଚିତ ହୋଇଛି ଓ ବର୍ଣ୍ଣନା କରାଯାଇଛି, ସଂସ୍କୃତ ରଚୟିତାମାନଙ୍କର ସେହି ଆଦର୍ଶକୁ ସ୍ୱୀକୃତି ଦେଇ ବ୍ରଜନାଥ ଚତୁରବିନୋଦର ଦେହ ଓ ଆତ୍ମାକୁ ଗଢ଼ି ତୋଳିଛନ୍ତି । ବ୍ରଜନାଥଙ୍କର ଗଦ୍ୟର ଭାଷା ଓ ଶୈଳୀ ରୁଦ୍ର ସୁଧାନିଧିକୁ କେତେକ ସ୍ଥଳରେ ଯେପରି ଅନୁସରଣ କରିଛି ସେମିତି ଓଡ଼ିଆ ସାହିତ୍ୟର କଥା ସମ୍ରାଟ ଫକୀରମୋହନଙ୍କ ଭାଷା ଓ ଶୈଳୀ ଉପରେ ପ୍ରଭାବ ବିସ୍ତାର କରିଛି । ଏହାହିଁ ବ୍ରଜନାଥଙ୍କର କଥା ସାହିତ୍ୟ ସୃଷ୍ଟିର ଚରମ ସାର୍ଥକତା ଶିଶୁବେଦ, ଚାକଚରିତ ପ୍ରଭୃତିର ଗଦ୍ୟ ଓ ରୁଦ୍ରସୁଧାନିଧିର ପଦ୍ୟାତ୍ମକ ଗଦ୍ୟକୁ ପ୍ରାଣ ଶକ୍ତିରେ ଉଚ୍ଛଳିତ କରି ବ୍ରଜନାଥ ଗଢ଼ି ତୋଳିଲେ ବିରାଟ କଥା ମନ୍ଦିର । ସୃଷ୍ଟି ଓ ବର୍ଣ୍ଣନା ଅଭିନବ, ସଫଳତାର ରସ କଷିବା ମଧ୍ୟ କିଛି କମ୍ ନୁହେଁ—ଏହାର ଭିତରେ ଚତୁର ବିନୋଦର ମହିମା !

## ଚତୁର ବିନୋଦର ଚରିତ୍ର କଥା

ଗଳ୍ପ ବା ଉପନ୍ୟାସରେ ଚରିତ୍ର ହେଉଛି ମୁଖ୍ୟ ବିଭାବ ଓ ଚରିତ୍ର ଚିତ୍ରଣ ଏକ କଠିନ କଳା । ମଣିଷର ମନ ବଚନ ଓ ତା'ର ପ୍ରକୃତ ସ୍ୱରୂପକୁ ପ୍ରକାଶ କରିବା ସହଜସାଧ୍ୟ ନୁହେଁ । କଥାକାର ମଣିଷକୁ ଅନୁଧ୍ୟାନ କରି ତାର ଚରିତ୍ରର ରହସ୍ୟ ବିନ୍ଦୁକୁ ଯେତେବେଳେ ଉଦ୍‌ଘାଟିତ କରେ ସେତେବେଳେ ଶିଳ୍ପ କୃତିରେ ସୌନ୍ଦର୍ଯ୍ୟ ଫୁଟେ । ଚରିତ୍ର ଯେତିକି ବାସ୍ତବ ଓ ସ୍ୱାଭାବିକ ହୁଏ ଗଳ୍ପ ହୁଏ ସେତିକି ସଫଳ ଓ ସାର୍ଥକ । ସମାଜର ପ୍ରତ୍ୟେକ ସ୍ତରର ବ୍ୟକ୍ତିର ଚରିତ୍ର ଚିତ୍ରଣ ହେଉଛି କଥାକାରର ପ୍ରଧାନ ଦାୟିତ୍ୱ । କିନ୍ତୁ ମଧ୍ୟଯୁଗର କାବ୍ୟକୃତିରେ ସାଧାରଣ ଜନ-ଜୀବନର ଚରିତ୍ର ଲିପି ପ୍ରତି କବି ଆଦୌ ସଚେତନ ନ ଥିଲେ । ସାହିତ୍ୟ ଦରବାରରେ ସେମାନେ ଥିଲେ ଅପାଂକ୍ତେୟ । କେବଳ ଅଭିଜାତ ବଂଶୀୟ ରାଜପରିବାରର ପ୍ରେମ-ମୂଳକ କଥା ଓ ଚିନ୍ତା ଥିଲା ସାହିତ୍ୟର ପରିସରଭୁକ୍ତ । ରାଜରାଜୁଡ଼ାଙ୍କ ଜୀବନ କଥା ବର୍ଣ୍ଣିତ କାବ୍ୟରେ ରାଜପୁତ୍ର ଓ ରାଜକନ୍ୟାଙ୍କ ଚରିତ୍ର ଚିତ୍ରଣ ପ୍ରଧାନ ଲକ୍ଷ୍ୟ । ପୁଣି ବୈଷ୍ଣବ ଧର୍ମ ପ୍ରତିଷ୍ଠାମୂଳକ କାବ୍ୟରେ ରାଧାକୃଷ୍ଣ ଓ ରାମ ସୀତା ଥିଲେ କାବ୍ୟର କେନ୍ଦ୍ର ବିନ୍ଦୁ । ସେଠି ସାଧାରଣ ବ୍ୟକ୍ତିବିଶେଷ ଥିଲେ ଗୌଣ । ସେମାନଙ୍କ ଚରିତ୍ର ଚର୍ଚ୍ଚା ଥିଲା ଅବାନ୍ତର ପରିକଳ୍ପନା । କିନ୍ତୁ ଚତୁର ବିନୋଦରେ ରାଜା, ରାଣୀ, ରାଜପୁତ୍ର ଓ ରାଜକନ୍ୟାଙ୍କ କାହାଣୀ ବର୍ଣ୍ଣନାର ପ୍ରାଥମିକ ଉଦ୍ୟମ ମାତ୍ର ଅଛି, କିନ୍ତୁ ଏହା ଏକମାତ୍ର ପ୍ରୟାସ ନୁହେଁ । ଲୋକ ଗଳ୍ପର ବିସ୍ତୃତ ପରିଧି ଭିତରକୁ ଅନିବାର୍ଯ୍ୟ ଭାବରେ ପ୍ରବେଶ

ହେଲେ ହେଁ ଏମାନେ କାହାଣୀର ସର୍ବମସ୍ତ କର୍ତ୍ତା ନୁହନ୍ତି । କେତେକ କାହାଣୀରେ ରାଜ୍ୟ ଓ ରାଜା ରାଣୀଙ୍କ ନାମ ମାନ ଉଚ୍ଚାରିତ, କିନ୍ତୁ ବିଷୟବସ୍ତୁ ଗଢ଼ି ଉଠିଛି ସାଧାରଣ ବ୍ୟକ୍ତିଙ୍କୁ ନେଇ । ବ୍ରଜନାଥଙ୍କ ମନ ରାଜା ଓ ରାଜ୍ୟର ଚତୁର୍ଦ୍ଦିଗରେ ପରିକ୍ରମା କରିଛି । ରାଜା, ରାଣୀ, ରାଜପୁତ୍ର, ରାଜକନ୍ୟା, ମନ୍ତ୍ରୀ, ମନ୍ତ୍ରୀପୁତ୍ର, ସାଧବ, ସାଧବପୁତ୍ର, ସାଧବ କୁମାରୀ, କୋଟୁଆଳ, ଦ୍ୱାରୀ, ପ୍ରଭୃତିଙ୍କଠାରୁ ଆରମ୍ଭ କରି ବୈଶ୍ୟ, ବୈଶ୍ୟ କନ୍ୟା, ଜ୍ୟୋତିଷ, ବୈଦ୍ୟ, ବ୍ରାହ୍ମଣ, ନାପିତ, ଗଣିକା, ଶବର, ନାଟୁଆ, ଶୁଣ୍ଢୀ, ମାଦଳିଆ, ରାଜଗୁରୁ, ଗଣିକା, ମୋଇଲା, କେଳୁଣୀ, ବଣିଆ, ଗୋପାଳ ପର୍ଯ୍ୟନ୍ତ ସମସ୍ତଙ୍କୁ ଗଳ୍ପରେ ଚରିତ୍ରୀଭୂତ କରିଛନ୍ତି । ସାମାଜିକ ଜୀବନର ସବୁ ସ୍ତରର ବ୍ୟକ୍ତିଙ୍କ ପାଇଁ ବ୍ରଜନାଥଙ୍କ ସାହିତ୍ୟ ଦ୍ୱାର ଅବାରିତ ଉନ୍ମୁକ୍ତ ।

ବୈଶ୍ୟକନ୍ୟା ଚଞ୍ଚଳାକ୍ଷୀ ଓ ରାଜପୁତ୍ର ମୋହନାଙ୍କୁ ନେଇ କାହାଣୀର ଅବତାରଣା । ଦୁହିଁଙ୍କ ଚରିତ୍ରରେ ମିଳନ ପାଇଁ ବ୍ୟାକୁଳତା ଭିତରେ ସଂଯମର ଶାଶ୍ୱତ ଦୀପ୍ତି ଉଦ୍ଭାସିତ । ଗୌରୀ ବ୍ରତ ପାଳନ କରିବା ନାମରେ ଚଞ୍ଚଳାକ୍ଷୀ ମୋହନାଙ୍କୁ ବ୍ରତ ଉଦ୍ଯାପନ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ କହିଛି । ମୋହନାଙ୍କ ମଧ୍ୟ ଶୃଙ୍ଗାର ରସପୂର୍ଣ୍ଣ କାହାଣୀର ଅବତାରଣା କରିଛି ଗୋଟିଏ ସର୍ତ୍ତରେ—ଆନ ଚିନ୍ତା ଗୁଣିବ, ନିଦ୍ରା ନ ମାଡ଼ିବ, ପଲକ ନ ପଡ଼ିବ, ଚରିତ୍ର ନ ଛାଡ଼ିବ । ଆନ ଚିନ୍ତା କରିବାର, ନିଦ୍ରା ମାଡ଼ିବାର, ପଲକ ପଡ଼ିବାର, ଚରିତ୍ର ଛାଡ଼ିବାର ସମସ୍ତ ସମ୍ଭାବନା ଥିବା ସତ୍ତ୍ୱେ ସେ ସକଳ କାର୍ଯ୍ୟରେ ଏକାଗ୍ର ହେବାକୁ ମୋହନାଙ୍କ ସର୍ତ୍ତ ବାନ୍ଧିଛି । ଏ ସ୍ଥଳରେ ଦୁହିଁଙ୍କ ଚରିତ୍ରରେ ମହତ୍ତ୍ୱ ପ୍ରଦର୍ଶିତ । ସମାଜ ଜୀବନରେ ଶୃଙ୍ଖଳା ଓ ସଂଯମର ବଳୟ ସୃଷ୍ଟି କରି ଅଧଃପତନ ମଧ୍ୟରୁ ସମାଜକୁ ରକ୍ଷା କରିବାପାଇଁ ଏସବୁ କାହାଣୀର ସୃଷ୍ଟି । ପ୍ରେମକୁ ଅସ୍ୱୀକାର କରାଯାଇ ନ ପାରେ । କିନ୍ତୁ ସାମାଜିକ ଜୀବନରେ ଶୃଙ୍ଖଳାବୋଧର ପ୍ରଶ୍ନ ମଧ୍ୟ ତୁଚ୍ଛ ନୁହେଁ । ବ୍ରଜନାଥ ଏ ଦୁଇଟି ଚରିତ୍ର ମଧ୍ୟରେ ଏହି ଭାବଟି ପରିସ୍ଫୁଟ କରିଛନ୍ତି । ରାଜପୁତ୍ର ବୈଶ୍ୟ କନ୍ୟାକୁ ବିବାହ କରିବା ଦ୍ୱାରା କୁଳୀନ ପ୍ରେମ ମୂଳରେ କୁଠାରାଘାତ କରିଛନ୍ତି । କିନ୍ତୁ ପ୍ରେମର ଗଭୀରତା ଓ ମହତ୍ତ୍ୱ ପ୍ରତିପାଦନ କରିଛି ପ୍ରତୀକ୍ଷାର ସଂଯମରେ ।

ହାସ୍ୟ ବିନୋଦର ମାର୍ଜାରମୁଖୀ ଓ ବଳାପମୁଖୀ ଅସଙ୍ଗତ ଓ ଅତିରଞ୍ଜନର ଅସମ୍ଭାବ୍ୟତାରେ ବର୍ଣ୍ଣିତ । ହାସ୍ୟରସ ସୃଷ୍ଟି କରିବା ଅଭିପ୍ରାୟରେ ଏହା ରଚିତ ହୋଇଥିବାରୁ ହୁଏତ ଏଥିରେ ସ୍ୱାଭାବିକ ବାସ୍ତବ ଚରିତ୍ର ଚିତ୍ରଣ ନାହିଁ । ଅତିହାସବିନୋଦର ପଣ୍ଡିତ, ବୈଦ୍ୟ, ଜ୍ୟୋତିଷ ଓ ନାପିତ ଚରିତ୍ର ତତ୍କାଳୀନ ସାମାଜିକ ଜୀବନରେ ଅଯଥା ବାହାସ୍ଫୋଟ ମାରୁଥିବା ବ୍ୟକ୍ତିମାନଙ୍କ ପ୍ରତି କଟାକ୍ଷ । ଏମାନଙ୍କର ନାମ, କଥା ଓ ଗୁଣ ବର୍ଣ୍ଣନାରେ ହାସ୍ୟରସ ସୃଷ୍ଟି ପାଇଁ ପ୍ରଚୁର ଉପାଦାନ ରହିଛି । ଉପରୋକ୍ତ ଚାରୋଟି ଚରିତ୍ର ଚିତ୍ରଣ ସର୍ବାଙ୍ଗରେ ହାସ୍ୟୋଦ୍ଦୀପକ ।

ରସ ବିନୋଦର ପ୍ରଧାନ ଗଳ୍ପ ସୂପକାର କନ୍ୟା ହେମାଙ୍ଗୀ ଓ ମନ୍ତ୍ରୀ ପୁତ୍ର ତରୁଣକାନ୍ତର ପ୍ରେମଚରିତ ଗତାନୁଗତିକ—ଦୁହିଙ୍କ ଚରିତ୍ର ମଧ୍ୟ ବିଶେଷତ୍ୱ ବର୍ଜିତ । ମଧ୍ୟଯୁଗୀୟ ରୀତି କାବ୍ୟରେ ନାୟକ ନାୟିକାଙ୍କ ଚରିତ୍ର ସହିତ ଏମାନଙ୍କର ସାମ୍ୟ ପରିଲକ୍ଷିତ ହୁଏ । କିନ୍ତୁ ପ୍ରଥମ ଶାଖାଗଳ୍ପରେ ବର୍ଣ୍ଣିତ ନର୍ମଦା ଓ କିଶୋରଚନ୍ଦ୍ରର ପ୍ରେମ କଥାରେ ବୈଚିତ୍ର୍ୟ ସମ୍ପାଦିତ । କିଶୋରଚନ୍ଦ୍ରର ମୁକ୍ତାମାଳୀ ଫିଟାଇ ନେବାରେ ମଣିଷ ଚରିତ୍ରର ବାସ୍ତବ ଓ ସ୍ୱାଭାବିକ ରୂପ ପରିସ୍ଫୁଟ । ନର୍ମଦା ପ୍ରତି ତାର ଆସକ୍ତି ସାମୟିକ । ତା' ନିକଟରେ ନର୍ମଦାର ପ୍ରେମ ଅପେକ୍ଷା ମୁକ୍ତାମାଳାର ମୂଲ୍ୟ ଅଧିକ । ଆଉ ନର୍ମଦା ମଧ୍ୟ ନିଜକୁ ବଞ୍ଚାଇବା ପାଇଁ ଯେଉଁ ଛଳନାର ଆଶ୍ରୟ ନେଇଛି ତା' ନାରୀ ଚରିତ୍ରର ସ୍ୱାଭାବିକ ଦିଗ । କ୍ଷଣିକ ସମ୍ଭୋଗ ବାସନା ପାଇଁ ବହୁମୂଲ୍ୟ ଭୂଷଣ ହରାଇ ସେ କ୍ଷୁବ୍‌ଧ ବିଚଳିତ । ବ୍ରାହ୍ମଣୀ ମାଳତୀ ଚତୁରୀ ଓ ଜୀବନ ଅଭିଜ୍ଞ । ନର୍ମଦାର ଛଳନାରେ ଅନ୍ୟମାନେ ବିଭ୍ରାନ୍ତ ହେଲେହେଁ ମାଳତୀ ପ୍ରବଞ୍ଚିତ ହୋଇନାହିଁ । ମଣିଷ ସବୁବେଳେ ସମସ୍ତଙ୍କୁ ବୋକା ବନେଇବା ସମ୍ଭବ ନୁହେଁ—ଏ କଥାଟି ନର୍ମଦା ଓ ମାଳତୀ ଚରିତ୍ର ମଧ୍ୟରେ ଚମତ୍କାର ଭାବରେ ପ୍ରମାଣିତ ।

ଦ୍ୱିତୀୟ ଶାଖାଗଳ୍ପରେ ରତିପ୍ରିୟା ଓ କୁଟୁଆଳ ପୁତ୍ର ସୁବଳ ସିଂହ ମଧ୍ୟ ପ୍ରେମ ଆମୋଦିତ ଦୁଇଟି ନରନାରୀ । ଅସାମାଜିକ ପ୍ରୀତି ମଣିଷ ଚରିତ୍ରକୁ କଳଙ୍କିତ କରେ । ଦୁଷ୍ଟ ବିପ୍ରର ବୁଦ୍ଧି ହରାଇ ସେ ନିନ୍ଦିତ କର୍ମରେ ପ୍ରମୁକ୍ତ ହୁଏ । ସୁବଳ ଚରିତ୍ରରେ ଏଇ ହୀନ କୁଟବୁଦ୍ଧି ମଣିଷ ଚରିତ୍ରର ଏକ ବିଶେଷ ଦିଗକୁ ଉଦ୍‌ଘାଟନ କରେ । ଗ୍ରେଟା ଦ୍ୱାରୀ ପରି ସରଳ ନିରୀହ ବ୍ୟକ୍ତିମାନେ ସହଜରେ ତାର ଶିକାର ହୁଅନ୍ତି ।

ମହାଜନ କନ୍ୟା ମଞ୍ଜରୀ ସହିତ ମହାଜନ ପୁତ୍ର ଗିରିଧାରି ଦତ୍ତର ପ୍ରେମ ଉପାଖ୍ୟାନ ହେଉଛି ଶାଖା ଗଳ୍ପ । ମଞ୍ଜରୀ ଚରିତ୍ରରେ ସୁବଳ ସିଂହର ଛାୟା ପ୍ରତିଫଳିତ । ପ୍ରାଣାଧିକ ଶାରୀକୁ ନିଷ୍ଠୁର ଭାବରେ ହତ୍ୟା କରିବା ଓ ବିଶ୍ୱସ୍ତା ଦାସୀକୁ କୂଟ ଚକ୍ରାନ୍ତରେ ପ୍ରତାଡ଼ିତ କରିବାରେ ମଞ୍ଜରୀ ଚରିତ୍ରର ବୈଚିତ୍ର୍ୟ । କିନ୍ତୁ କଳା କୁଶଳତାରେ ଚିତ୍ରିତ କରାଯାଇଛି କାମମଞ୍ଜରୀ ମାଲ୍ୟାଣୀ ଚରିତ୍ର । ନିଜ କାର୍ଯ୍ୟ ଦକ୍ଷତା ଉପରେ ପ୍ରଚଣ୍ଡ ଆତ୍ମ ବିଶ୍ୱାସ, ବାକ୍‌ଚାତୁର୍ଯ୍ୟ ଓ ରସିକତା ଏ ଚରିତ୍ରଟିର ଅନନ୍ୟ ସୌନ୍ଦର୍ଯ୍ୟ । କାମମଞ୍ଜରୀ ପ୍ରେମର କାରିଗର ସ୍ୱରୂପିଣୀ । ମଧ୍ୟଯୁଗୀୟ କାବ୍ୟ ବର୍ଣ୍ଣିତ ଦୂତୀ ସହିତ ଏହାର ସାମ୍ୟ ବିଦ୍ୟମାନ ।

ନୀତି ବିନୋଦର ମୂଳଗଳ୍ପ ବ୍ରାହ୍ମଣ କନ୍ୟା କୁନ୍ଦରେଖା ଓ ପୁଣ୍ୟଶ୍ଳୋକ ପଣ୍ଡାର ମିଳନ ନାଟକୀୟ । କୁନ୍ଦରେଖା ପୂର୍ବ ବର୍ଣ୍ଣିତ ନାରୀମାନଙ୍କ ପରି କାମବିହ୍ୱଳ ନୁହେଁ—ନୀତି ଆଶ୍ରିତ । ଜୀବନ ଦାତାର ପତ୍ନୀ ରୂପେ ସେବା କରି ସେ ଉପକାରର ପ୍ରତିଦାନ ଦେବା ପାଇଁ ବ୍ୟାକୁଳ । ପୁଣ୍ୟଶ୍ଳୋକ ମଧ୍ୟ ନୀତି ନିପୁଣ ତଥା ଧର୍ମ ଓ ସତ୍ୟ ଆଶ୍ରିତ ପୁରୁଷ । ପ୍ରେମ ପାଗଳ ନୁହେଁ । ଏମାନଙ୍କ ପ୍ରେମ ଦୁର୍ବଳ ବା ଉଚ୍ଛୃଙ୍ଖଳ ନୁହେଁ ।

ସମାଜ ବିରୋଧୀ ପ୍ରେମ ମଣିଷ ଚରିତ୍ରକୁ ଦୁର୍ବଳ ଓ ହୀନମନ୍ୟ କରିଦିଏ—ତାର ଦୃଷ୍ଟାନ୍ତ ମାଟିବିନୋଦର ପ୍ରଥମ ଶାଖା ଗଳ୍ପ । ଦ୍ୱିତୀୟ ଶାଖା ଗଳ୍ପରେ ରାଜପୁତ୍ର ମନ୍ତ୍ରୀପୁତ୍ର ଓ ସାଧବପୁତ୍ର ମଧ୍ୟରୁ ଚନ୍ଦ୍ରାଙ୍ଗୀ କନ୍ୟା ପ୍ରାପ୍ତି ପାଇଁ ମନ୍ତ୍ରୀପୁତ୍ରର ଚତୁରତା ବର୍ଣ୍ଣିତ । ବୁଦ୍ଧିର ଗୁରୁତ୍ୱରେ ମଣିଷ ଅସାଧ୍ୟକୁ ସାଧ୍ୟକରେ । ଶେଷ ଶାଖାଗଳ୍ପରେ ଗୋପାଳାପନ୍ନୀ ବିନୋଦମାର ଗୋପନ ପ୍ରଣୟ ପାଇଁ ନିଜର ଏକମାତ୍ର ପୁତ୍ରକୁ ବିକ୍ରୟ କରିବା ଏକ ଅବାସ୍ତବ ଓ ଅସ୍ୱାଭାବିକ ଘଟଣା । ନାରୀ ଚରିତ୍ରକୁ ଜଘନ୍ୟ ବିକୃତ ରୂପେ ଚିତ୍ରିବାକୁ ଯାଇ ହୁଏତ ଏପରି ଘଟଣାର ପରିକଳ୍ପନା । ଅବଶ୍ୟ ଲୋକଗଳ୍ପରେ ନାରୀକୁ ସବୁବେଳେ ଅକୃତଜ୍ଞ ଓ ଅବିଶ୍ୱାସୀ ରୂପେ ବର୍ଣ୍ଣନା କରାଯାଇଛି ଅଥଚ ସ୍ୱର୍ଣ୍ଣରେଣୁ ହାତଙ୍କର ପିଲଟିଏ ପାଇବା ପାଇଁ କରୁଣ ଦୟନୀୟ ବ୍ୟାକୁଳତା ମଧ୍ୟରେ ନାରୀ ଚରିତ୍ରର କୋମଳ ଓ ଦରଦୀ ଭାବର ସ୍ୱାଭାବିକ ପ୍ରକାଶ ଆନ୍ତରିକ ସୁନ୍ଦର ।

ପ୍ରୀତି ବିନୋଦର ଗଳ୍ପଗୁଡ଼ିକରେ ବର୍ଣ୍ଣିତ ଚରିତ୍ର ସମୂହ ସାମାଜିକ ମନୁଷ୍ୟ ଜୀବନକୁ ଶୃଙ୍ଖଳିତ ଓ ନିୟନ୍ତ୍ରିତ କରିବା ପାଇଁ ଗୋଟିଏ ଗୋଟିଏ ଅଭ୍ରାନ୍ତ ଦୃଷ୍ଟାନ୍ତ । ଶଠପ୍ରୀତିର ବ୍ରାହ୍ମଣ ଚରିତ୍ରକୁ ବିଚାର କଲେ ଜଣାଯାଏ ସେ ସରଳ, ଧର୍ମପ୍ରାଣ, ଶାସ୍ତ୍ରଜ୍ଞ ଓ ବିଚାରଶୀଳ, ସଜ୍ଜନର ପ୍ରତିଭୂ । ନାପିତ ସନମନସ୍କ ଧୂର୍ତ୍ତ, ବାକ୍‌ପଟୁ ଓ ମୂର୍ତ୍ତିମନ୍ତ ପ୍ରତାରକ । ଏ ଦୁଇଟି ଚରିତ୍ର ସମସାମୟିକ ସମାଜର ଚରିତ୍ର ରୂପ । ସଜ୍ଜନ, ସରଳବିଶ୍ୱାସୀ, ସ୍ୱଚ୍ଛପ୍ରାଣ, ଧର୍ମନିଷ୍ଠ ବ୍ୟକ୍ତିଙ୍କ ଉପରେ ପରସ୍ୱ ଅପହରଣକାରୀ, କୂଚକ୍ରୀ, ଧର୍ମବୁଦ୍ଧି ଶୂନ୍ୟ, ସୁବିଧାବାଦୀ ବ୍ୟକ୍ତିର ଦୌରାତ୍ମ୍ୟର ଭୂରି-ଭୂରି ଦୃଷ୍ଟାନ୍ତ ରହିଛି । ଏମାନେ ଅସନ୍ତୁ ହରିଦ୍ର ବେଶରେ, ଯାଆନ୍ତି ନିଷ୍ଠୁର ଚମ୍ପକ ରୂପରେ—ମଣିଷର ବିଶ୍ୱାସ ବୃକ୍ଷ ମୂଳରେ ପ୍ରଚଣ୍ଡ ଆଘାତ ହାଣି । ଶଠପ୍ରୀତିର ଶାଖା ଗଳ୍ପରେ ବର୍ଣ୍ଣିତ ଖର୍ବରୂପ ଓ ଜ୍ୟୋତିପୁଞ୍ଜ ଚରିତ୍ର ଚିତ୍ରଣରେ ବ୍ରଜନାଥଙ୍କ ସମାଜ ସଚେତନତା ସୁସ୍ପଷ୍ଟ । କଳମ୍ବିନୀ ଗଣିକାର ଖର୍ବରୂପ ପ୍ରତି ସ୍ନେହ ହେଉଛି କାମ୍ୟଘେନା ପ୍ରୀତି । ଖର୍ବରୂପ ସିଦ୍ଧ ମହାପୁରୁଷ ହୋଇ ବିଜୟୀରୂପେ ସମ୍ମାନିତ ହେବା ମୂଳରେ ରହିଛି ତା' ପ୍ରାଣର ବ୍ୟାକୁଳ ଆବେଦନ । ଜ୍ୟୋତିପୁଞ୍ଜଙ୍କ ଉପହାସରେ ଖର୍ବରୂପର ମୋହଭଙ୍ଗ ଓ ନିଜ କୃତକର୍ମ ପାଇଁ ଅନୁତାପ ହେଉଛି ତା' ଚରିତ୍ର ପରବର୍ତ୍ତୀନର ହୀନମନ୍ୟ । ପ୍ରକୃତ ବୁଦ୍ଧି ରାଜକୁମାରୁ ଜ୍ୟୋତିପୁଞ୍ଜଙ୍କର ଅନ୍ୟ ପ୍ରତି ଧିକ୍‌କାର ଓ ଉପହାସ ତଥା ଅଯଥା ଅହଙ୍କାର ତାଙ୍କର ପତନର ମୂଳ କାରଣ ।

ଦୁଷ୍ଟ ପ୍ରୀତିରେ ପ୍ରବଳର ଦୁର୍ବଳ ପ୍ରତି ଅତ୍ୟାଚାରର କାହାଣୀ ବର୍ଣ୍ଣିତ । ଦୁର୍ଗତିରେ ପଡ଼ିଲେ ମଣିଷ ଉପାୟ ନିର୍ଣ୍ଣୟ କରିବା ସର୍ବାଦୌ କର୍ତ୍ତବ୍ୟ । ପୁଣି ଦୁଷ୍ଟ ବ୍ୟକ୍ତି ସହିତ ଉପର ମନରେ ସଦ୍ଭାବ ସ୍ଥାପନ କରିବା ବାଞ୍ଛନୀୟ— ସାମାଜିକ ମଣିଷ ଉଦ୍ଦେଶ୍ୟରେ ଚତୁର୍ଦ୍ଦିଗର ବିପଦ ମଧ୍ୟରେ ଜୀବନକୁ ନିରାପଦ କରିବା ପାଇଁ ଏହା ଏକ ସତର୍କ ବାଣୀ ।

ନୀତ ପ୍ରୀତିର ହଂସ ଓ ବକ ସରଳ ପ୍ରାଣ, ବନ୍ଧୁବତ୍ସଲ ବ୍ୟକ୍ତି ଓ କପଟ ପ୍ରାଣ, ସ୍ୱାର୍ଥପ୍ରେମୀ ବନ୍ଧୁଦ୍ରୋହୀର ଏକ ଏକ ଅଭ୍ରାନ୍ତ ପ୍ରତୀକ । ମଣିଷ କେତେ ନୀଚ ସ୍ୱାର୍ଥପ୍ରଣୋଦିତ କାର୍ଯ୍ୟରେ ଲିପ୍ତ ହୋଇପାରେ ରୂପକ ଛଳରେ ମଣିଷ ଚରିତ୍ରର ଅନ୍ତର୍ନିହିତ ସ୍ୱରୂପ ଉଦ୍‌ଘାଟିତ । ପରାଜିତ ମାନବର ପ୍ରତିଶୋଧ ଲିପ୍ସା ସୁନ୍ଦରରୂପେ ବର୍ଣ୍ଣିତ ।

ସମ୍ବନ୍ଧ ପ୍ରୀତିରେ ପ୍ରାଣୀ ପର ତାଙ୍କ ପ୍ରତି ଦେଖାଭ୍ରମରଙ୍କ ଅଚ୍ଛେଦ୍ୟ ପ୍ରୀତି ପ୍ରକାଶିତ । ଅବଶ୍ୟ ଏ ପ୍ରୀତି ଦେହ ସର୍ବସ୍ୱ, ତଥାପି ଏଥିରେ ଆନ୍ତରିକ ଆନୁଗତ୍ୟ ନିହିତ । ବିଚ୍ଛେଦର ସହସ୍ର ଉପାୟ ରଚନା ହେଲେ ମଧ୍ୟ ସେମାନେ ସବୁ ବାଧାକୁ ଅତିକ୍ରମ କରି ପ୍ରୀତି କଷ୍ଟରେ ଉତ୍ତୀର୍ଣ୍ଣ । ମଣିଷ ଥରେ ସ୍ନେହ ଫାଶରେ ପଡ଼ିଗଲେ ସେଥିରୁ ତାର ମୁକ୍ତି ନାହିଁ— ମଣିଷ ମନର ଏଇ ସମ୍ବନ୍ଧ ସୁନ୍ଦର ରୂପଟି ଏଥିରେ ଉତ୍‌କୀର୍ଣ୍ଣ ।

କ୍ଷତ୍ରିୟ ଶଶଧରର ନନ୍ଦନୀ ପ୍ରୀତି ମଣିଷର ସ୍ୱାର୍ଥ, ନୀଚତା ଓ ସଂକୀର୍ଣ୍ଣତାର ନିର୍ଭୁଲ ପ୍ରତିଛବି । ସ୍ୱାର୍ଥ ହାସଲ ପର୍ଯ୍ୟନ୍ତ ଏ ପ୍ରୀତିର ସ୍ଥାୟିତ୍ୱ । ମନ୍ଦପଡ଼ା, କାମ ସରିଲେ ଚଡ଼ଗଡ଼ା' ପରି କାର୍ଯ୍ୟ ସମାପ୍ତିରେ ପ୍ରୀତିର ମୃତ୍ୟୁ । ମଣିଷ ଚରିତ୍ରର ଆଉ ଗୋଟିଏ ଦିଗ ଏ ଗଳ୍ପରେ ଉଦ୍‌ଭିନ୍ନ ।

ପ୍ରୀତି ବିନୋଦର ଅନ୍ତିମ ଗଳ୍ପଟିରେ ବିଳାସୀ ଭୋଗସର୍ବସ୍ୱ ରାଜ ଚରିତ୍ରର ଯଥାର୍ଥ ରୂପ ପରିସ୍ଫୁଟ । ରାଜାମାନେ ସ୍ୱେଚ୍ଛାଚାରୀ—ସ୍ୱକୀୟ ଅଭିଳାଷ ତୃପ୍ତି ପାଇଁ ଯେ କୌଣସି ଛଳ ଚାତୁରୀର ଆଶ୍ରୟ ଗ୍ରହଣ କରିବାକୁ ପରାଙ୍ମୁଖ ନୁହନ୍ତି । ଖଞ୍ଜନୀକୁ ପ୍ରଲୁବ୍‌ଧ କରିବାର ସକଳ ଉପାୟ ବ୍ୟର୍ଥ ହେବାରୁ ଅନ୍ୟ ଏକ କାର୍ଯ୍ୟପନ୍ଥା ଗ୍ରହଣ କରିଛନ୍ତି । ଜୀବନଦର୍ଶୀ ରାଜା ଦରିଦ୍ର ମନୋହରର ମନସ୍ତତ୍ତ୍ୱ ବିଚାର କରି ରାଜା କୋଳନୃପ ମନୋହରକୁ ସୁପ୍ରତିଷ୍ଠିତ କରି ତା'ର ଶ୍ରଦ୍ଧା ଭାଜନ ହୋଇ ତା' ସମକ୍ଷରେ ନିଜର କାମ କଷ୍ଟକୁ ଜୀବନକୁ ପ୍ରତିଷ୍ଠାପିତ କରି ନିଜର ଉଦ୍ଦେଶ୍ୟ ଚରିତାର୍ଥ କରିଛନ୍ତି । ପ୍ରଥମ ଦୁଇଦିନ ଦୁଃଖିନୀ ନାରୀଟିକୁ ଥରେ ମାତ୍ର ନ ଚାହିଁ ମନୋହର ମନରେ ବିଶ୍ୱାସର ବଦ୍ଧମୂଳ ପ୍ରତିଷ୍ଠା କରିଛନ୍ତି । ତୃତୀୟ ଦିନ ଦ୍ରବ୍ୟ ବସ୍ତ୍ର ଓ ଉତ୍ତମ ଅଳଙ୍କାର ଦାନ ମନୋହରର ଦାରିଦ୍ର୍ୟ ପ୍ରତି ପ୍ରଚଣ୍ଡ ଉପହାସ । ରାଜା ଦରିଦ୍ରର ମନସ୍ତତ୍ତ୍ୱକୁ ବିଶ୍ଳେଷଣ କରି ବୁଝିଥିଲେ ଏକ ପକ୍ଷରେ ରାଜାଙ୍କର ନିଂସ୍ପୃହତା ଓ ଚୌରିବ୍ରତ ଦ୍ୱାରା ଚରିତ୍ର ଶୁଦ୍ଧତାରେ ଅଖଣ୍ଡ ବିଶ୍ୱାସ ଅନ୍ୟପକ୍ଷରେ ବହୁମୂଲ୍ୟ ବସନ ଭୂଷଣ ପ୍ରତି ପ୍ରଚଣ୍ଡ ପ୍ରଲୋଭନ—ଏ ଦୁଇଟିର ଏକତ୍ର ସମାବେଶରେ ମନୋହରର ନୈତିକ ସ୍ଖଳନ ଅନିବାର୍ଯ୍ୟ । ନିଜର ସତୀ ଓ ସୁନ୍ଦରୀ ସ୍ତ୍ରୀକୁ ରାଜାଙ୍କ ଚୌର୍ଯ୍ୟବୃତ୍ତି ସିଦ୍ଧି ପାଇଁ ଉତ୍ସର୍ଗ କରିବା ବ୍ୟତୀତ ତାର ଗତ୍ୟନ୍ତର ନାହିଁ । ମଣିଷ ପ୍ରତି ମଣିଷର ବିଶ୍ୱାସର ସବୁ ସ୍ତମ୍ଭ ଭାଙ୍ଗି ପଡ଼ିଛି ରାଜାଙ୍କର ଖଞ୍ଜନୀ-ତନୁଭୋଗରେ । ଅସହାୟ ନିର୍ବୋଧର ବିକଳ ଦୃଷ୍ଟି ନେଇ ମନୋହର

ଦେଖିଛୁ ରାଜାଙ୍କର ତଥା ନଗର ଅଧଃପତନର କରୁଣ ଦୃଶ୍ୟ । ସ୍ତ୍ରୀର ସତୀତ୍ୱ ଓ ନଗର ରକ୍ଷା ଓ ମଣିଷ ପ୍ରତି ଶ୍ରଦ୍ଧା ହରାଇ ମନୋହର ହୋଇଛୁ ସର୍ବସ୍ୱାନ୍ତ । ଏ ପ୍ରୀତି ଉତ୍ତମ ନୋହଇ'—ଏ ମନ୍ତ୍ର ରାଜା ଓ ମନୋହର ଉଭୟଙ୍କ ପ୍ରତି ଉଚ୍ଚାରିତ ।

ମୂଳ ଗଳ୍ପର ଅନ୍ତିମ ପର୍ବରେ ଗଳ୍ପରସର ମହାସୁଖ ଉପଭୋଗ କରି ଚଞ୍ଚଳାକ୍ଷୀ ଓ ମୋହନାଙ୍ଗର ଶୃଙ୍ଗାର ଭାବପୂର୍ଣ୍ଣ ଆଖ୍ୟାୟିକାର ସମାପ୍ତି ଘଟିଛି । ରାତି ପ୍ରଭାତ ହେଲା —କିନ୍ତୁ ଦୁଇଟି ପ୍ରେମ ପ୍ରୀତ ହୃଦୟର ନୈତିକ ନିଷ୍ଠା ବିଚଳିତ ହୋଇନାହିଁ । ମୂଳ ଚରିତ୍ରର ଏଇ ସ୍ୱର୍ଗିକ ସୌନ୍ଦର୍ଯ୍ୟ ଓ ଶୁଦ୍ଧତା ସମଗ୍ର ଚତୁର ବିନୋଦରେ ବର୍ଣ୍ଣିତ ସ୍ୱାର୍ଥ ପ୍ରଣୋଦିତ କ୍ଷଣିକ ପ୍ରୀତି ଉଚ୍ଛ୍ୱାସର ବୀଭତ୍ସ ଓ ଅଶ୍ଳୀଳ ଇଙ୍ଗିତପୂର୍ଣ୍ଣ ବର୍ଣ୍ଣନାକୁ ଅତିକ୍ରମ କରି ମହତ୍ତ୍ୱପ୍ରେମର ସୂଚନା ଦିଏ । ଅବଶ୍ୟ ଏକଥା ସ୍ୱୀକାର୍ଯ୍ୟ ଯେ ଚରିତ୍ର ଚିତ୍ରଣ ପ୍ରତି ଲେଖକ ବିଶେଷ ସଚେତନ ନୁହନ୍ତି । ସମାଜକୁ ଶୃଙ୍ଖଳ ଓ ସଂଯମର ବେଣୀ ବନ୍ଧନରେ ରଖିବାକୁ ଲେଖକ ନୀତିଶିକ୍ଷାମୂଳକ ଗଳ୍ପ ନିର୍ବାଚନ କରିଛନ୍ତି । ହାସ ବିନୋଦ, ରସ ବିନୋଦ, ନୀତି ବିନୋଦ ଓ ପ୍ରୀତି ବିନୋଦର ପ୍ରତ୍ୟେକ ଗଳ୍ପରେ ମଣିଷକୁ ସନ୍ମାର୍ଗ-ଗାମୀ କରିବାର ନିର୍ଦ୍ଦେଶ ରହିଛି । ନୀତି କାର୍ଯ୍ୟ ଓ ଅକାର୍ଯ୍ୟ ମଧ୍ୟରେ ପ୍ରଭେଦ ସୂଚାଇ ଦିଏ । ବିବେକ ବୁଦ୍ଧି ତୀକ୍ଷ୍ଣ କରେ । ଆନନ୍ଦଦାନ ଏହି ଗଳ୍ପଗୁଡ଼ିକର ଅନ୍ୟତମ ଅଭିପ୍ରାୟ, ବଳିଷ୍ଠ ଚରିତ୍ର ଚିତ୍ରଣ ନୁହେଁ । ତେବେ ଚରିତ୍ର ସମାବେଶରେ ତାଙ୍କର ଯୁଗାନ୍ତ-କାରୀ ଚେତନା ଅଭିନନ୍ଦନୀୟ । ମଧ୍ୟଯୁଗୀୟ ସାହିତ୍ୟ ପରି ଏଥିରେ ରାଜାରାଣୀଙ୍କୁ ସମାଜର ପ୍ରତିନିଧି ରୂପେ ସମ୍ମାନ ଦିଆଯାଇ ନାହିଁ । ସବୁ ଜାତି ଓ ସବୁ ସ୍ତରର ମଣିଷକୁ ସମାଜର ପ୍ରତିନିଧି ରୂପେ ଗ୍ରହଣ କରାଯାଇଛି । ସାହିତ୍ୟ ମୁଷ୍ଟିମେୟ ବ୍ୟକ୍ତିର ଜୀବନଲିପି ନୁହେଁ, ସର୍ବସାଧାରଣର ଚରିତ୍ର ଇତିହାସ । ଅତୀତର ସାମନ୍ତବାଦୀ ଚିନ୍ତାଧାରାକୁ ଭାଙ୍ଗି ସାହିତ୍ୟ ସଂସାରରୁ ନିର୍ବାସନ ଲାଭ କରିଥିବା ସାଧାରଣ ସ୍ତରର ବ୍ୟକ୍ତିଙ୍କୁ ଅଭିଷିକ୍ତ କରି ସେ ରଚନା କରିଛନ୍ତି ଜୀବନ୍ତ କାବ୍ୟ । ଭାଷାରେ, ଚରିତ୍ର ଚିତ୍ରଣରେ, ବର୍ଣ୍ଣନା ଭଙ୍ଗୀରେ ବହୁ ତ୍ରୁଟି ବିଚ୍ୟୁତି ସତ୍ତ୍ୱେ ବ୍ରଜନାଥଙ୍କ ଉଦ୍ୟମ ସତତ ପ୍ରଶଂସିତ ।

ଚତୁର ବିନୋଦର ମର୍ମକଥା—ପାରଂପରିକ ଗଳ୍ପସାଗର ସଂକର୍ଷଣ ପଣ୍ଡା ରାଜସଭାରେ ଚାରି ବିନୋଦର ସମାହାର 'ଚତୁର ବିନୋଦ' ଅଥବା ଚତୁର ଲୋକଙ୍କ ବିନୋଦ ହେବାରୁ 'ଚତୁର ବିନୋଦ' କଥା ବର୍ଣ୍ଣନା କରିଥିଲେ । ସେହି ଆଖ୍ୟାୟିକାକୁ ଶୁଣି ସ୍ମୃତିରେ ଧାରଣ କରି ଗଳ୍ପ ନାୟକ ମୋହନାଙ୍ଗ ନାୟିକା ଚଞ୍ଚଳାକ୍ଷୀ ସମକ୍ଷରେ ବର୍ଣ୍ଣନା କରିଛନ୍ତି । ଏଥିରେ ବର୍ଣ୍ଣିତ ଗଳ୍ପ ଗୁଡ଼ିକ ଲେଖକଙ୍କର ମୌଳିକ ପରିକଳ୍ପନା ନୁହେଁ— କେବଳ ଅତୀତର ଚିନ୍ତାଧାରାକୁ ପରିବେଷଣ ରୀତିରେ ନୂତନ ସୌନ୍ଦର୍ଯ୍ୟରେ ମଣ୍ଡନ କରାଯାଇଛି । ମଧ୍ୟଯୁଗର ସୃଷ୍ଟି ପରି ନାମକରଣରେ ବିଦଗ୍ଧତା, ଶୃଙ୍ଗାର ରସର ପ୍ରାଧାନ୍ୟ ଏଥିରେ ଲକ୍ଷଣୀୟ । ଲେଖକ ନୂତନ ରୀତିର ପ୍ରବର୍ତ୍ତନା କରିନାହାନ୍ତି ସତ, କିନ୍ତୁ କାଦମ୍ବରୀ, ପଞ୍ଚତନ୍ତ୍ର ଓ କଥା ସରିତ୍ ସାଗରର ରୀତି ସହିତ ଗଳ୍ପସାଗରଙ୍କ କଥକତା ରୀତିର ସମନ୍ୱୟ ସାଧନ କରିଛନ୍ତି । କଥାଗୁଡ଼ିକ ଭାବ ସାଦୃଶ୍ୟରେ ଗୋଟିଏ ସହିତ

ଅନ୍ୟଟି ସଂଲଗ୍ନ ହୋଇ ରହିଛି—ଗୋଟିଏ ମୂଳ କଥାରୁ ଶାଖା ପ୍ରଶାଖା ବିସ୍ତାର କରି ଅନ୍ୟ କଥାର ଅବତାରଣା କରାଯାଇଛି । ତେବେ ଗଳ୍ପ ଗୁଡ଼ିକ ବିଭିନ୍ନ ଢଙ୍ଗରେ ରଚିତ । କେତେକ ଗଳ୍ପର କଥାବସ୍ତୁ ବୈଚିତ୍ର୍ୟ ଶୂନ୍ୟ । ଉପାଖ୍ୟାନ ପରି ଏହାର ଆରମ୍ଭ ଗତାନୁଗତିକ ଓ ଗଳ୍ପ ଶେଷରେ ସମାପ୍ତି ସୁସ୍ପଷ୍ଟ ଭାବରେ ପ୍ରକାଶିତ । ଏଥିରେ କେବଳ ବିଶୁଦ୍ଧ ଗଳ୍ପର ଅବତାରଣା କରାଯାଇଛି । ଆଦୌ ବୈଚିତ୍ର୍ୟ ନାହିଁ । ହାସ ବିନୋଦ, ନର୍ମଦା ମୂଷିକ ଗଳ୍ପ, ଶଠପ୍ରୀତି, ଦୁଷ୍ଟପ୍ରୀତି, ମିତ୍ର ପ୍ରୀତି, ସହଜ ପ୍ରୀତି ଓ କାର୍ଯ୍ୟଯୋଜନା ପ୍ରୀତି ଏହି ଶ୍ରେଣୀସ୍ଥ । ଅନ୍ୟ କେତୋଟି ଗଳ୍ପରେ ବୈଚିତ୍ର୍ୟ ସୃଷ୍ଟି କରିବା ପାଇଁ ଉପଗଳ୍ପର ସଂଯୋଗ କରାଯାଇଛି । ମୂଳଗଳ୍ପ ଚମ୍ପଲାକ୍ଷୀର ଉପାଖ୍ୟାନ ଗଳ୍ପ—ପ୍ରବାହରେ ପରିବର୍ତ୍ତନ ଆଣିବାପାଇଁ ଅନ୍ୟ ଉପାଖ୍ୟାନ ସୃଷ୍ଟି କରିଛି । ତେଣୁ ଏଠାରେ ଗଳ୍ପ ମଧ୍ୟରେ ଗଳ୍ପର ପ୍ରକାଶ । ରସବିନୋଦରେ ହେମାଙ୍ଗୀ ଓ ତରୁଣକାନ୍ତଙ୍କ ବିରହ ବ୍ୟାଧି ନିରୂପଣ କରିବାକୁ ଯାଇ ଅନ୍ୟ ତିନୋଟି ଗଳ୍ପର ପରିକଳ୍ପନା କରାଯାଇଛି ।

ଗଳ୍ପର ଅଭିପ୍ରାୟ ବିଚାର କଲେ ଜଣାଯାଏ ସମସ୍ୟାର ସୃଷ୍ଟି ଓ ସମାଧାନ ମଧ୍ୟ କୌଣସି କୌଣସି ଗଳ୍ପର ଅଙ୍ଗୀଭୂତ । ବୃଦ୍ଧରେଖାକୁ ବିବାହ କରିବା ପାଇଁ ତିନୋଟି ବ୍ରାହ୍ମଣକୁମାରଙ୍କ ଦାବୀ ସୁତ୍ରସଙ୍ଗତ—କିନ୍ତୁ ଏହା ଅସମାଧାନିକ—ଏହି ସମସ୍ୟାର ସମାଧାନ ହୋଇଛି ଆହୁରି ଜଟିଳ ସମସ୍ୟା ପୂର୍ଣ୍ଣ ଅଥଚ ମୂଳଗଳ୍ପର ସମସ୍ୟାକୁ ସହଜ କରିବା ପରି ଗଳ୍ପର ସର୍ଜନାରେ । ପ୍ରଥମ ଗଳ୍ପରେ ଯଦ୍ୱାରା ଧନ ହସ୍ତାନ୍ତରିତ ହୋଇ ସର୍ବଶେଷରେ ସେମାନେ (ମଞ୍ଜୁଳରୂପ ବୈଶ୍ୟ ଓ ରାଜା) ତା' ଫେରି ପାଇଛନ୍ତି । ଦ୍ୱିତୀୟ ଗଳ୍ପରେ କନ୍ୟା ଯାହାକୁ ସ୍ୱେଚ୍ଛାରେ ବରଣ କରିଛି, ସେହି ତାର ସ୍ୱାମୀ ହେବାକୁ ଯୋଗ୍ୟ । ତୃତୀୟ ଗଳ୍ପରେ ବିମ୍ବାର ଜୀବନ ରକ୍ଷାକାରୀ ବୋଇତଆଳ ସାଧବ ତାକୁ ପ୍ରାପ୍ତ ହେଲା । ଏହି ସମସ୍ତ ବିଚାର ମୂଳ ଗଳ୍ପର ପ୍ରହେଳିକାର ପୂର୍ତ୍ତି ପାଇଁ ଉଦ୍ଦିଷ୍ଟ ।

ସାଙ୍କେତିକ ଭାଷାରେ ମନର ଭାବ ପ୍ରକାଶ ଲୋକଗଳ୍ପର ଅନ୍ୟତମ କଳା ଗୌରବ । ପଞ୍ଚତନ୍ତ୍ରରେ ରାଜକୁମାରୀ ନିଜର ନାମ, ରାଜ୍ୟରନାମ ଓ ପିତାଙ୍କ ପରିଚୟ ଯେପରି ସାଙ୍କେତିକ ଭାଷାରେ ପ୍ରକାଶ କରିଛି ମିତ୍ର ବିନୋଦର ଦ୍ୱିତୀୟ ଶାଖା ଗଳ୍ପରେ ଚମ୍ପାଙ୍ଗୀ କନ୍ୟା ହସ୍ତ ପ୍ରସାରିତ କରି ସଙ୍କେତ ପ୍ରଦାନ କରିଛି । ଚମ୍ପାଙ୍ଗୀ କନ୍ୟାର ସାଙ୍କେତିକ ଭାଷା କେବଳ ଚତୁର ମନ୍ତ୍ରୀ ପୁତ୍ର ବୁଝି ପାରି ସଙ୍କେତରେ ଉତ୍ତର ପ୍ରଦାନ କରିଛି । ମିତ୍ର ବିନୋଦର ଗଳ୍ପଗୁଡ଼ିକରେ ସ୍ଥଳ ବିଶେଷରେ ଅସ୍ୱାଭାବିକ ଅତିରଞ୍ଜନ ବର୍ଣ୍ଣନା ଥିଲେ ମଧ୍ୟ ଗଳ୍ପଗୁଡ଼ିକ ନାଟକୀୟତା ଓ ବିବଦମାନତା ହେତୁ ହୃଦ୍ୟ ହୋଇଛି ।

ଅସମ୍ଭାବ୍ୟତା ମଧ୍ୟରେ ଜୀବନସତ୍ୟର ସମ୍ମିଶ୍ରଣ କରି ବିସ୍ମୟକର କାହାଣୀ ସୃଷ୍ଟିର ପ୍ରୟାସ ଚମ୍ପାଙ୍ଗୀ କନ୍ୟାର ଉପାଖ୍ୟାନରେ ଦେଖିବାକୁ ମିଳେ । ଅସାଧ୍ୟ ସାଧନର ରୋମାଞ୍ଚକର କ୍ରିୟା କଳାପ ମନରେ ଉନ୍ନତ ଆବେଗ ଭରିଦିଏ । ମଣିଷ ଚରିତ୍ରରେ ଦୁଇଟି ସ୍ୱଭାବ ରହିଛି —ଗୋଟିଏ ତାର ଉନ୍ନତ ଗତିପ୍ରବଣତା ; ଯିଏ ତାକୁ ବାହାରକୁ ଆକର୍ଷଣ କରେ । ଆଉ ଗୋଟିଏ ତାର ପ୍ରଶାନ୍ତ ସ୍ଥିତିମୁଖୀନତା, ଯିଏ ତାକୁ ପରିବାର

ଓ ସମାଜର ଶୃଙ୍ଖଳ ଓ ଶୃଙ୍ଖଳାରେ ଆବଦ୍ଧ କରେ । ନାଗବଲ୍ଲୀ ଦ୍ୱୀପରୁ କୃଷ୍ଣ ମଲ୍ଲିକ, ଉତ୍ତର ସମୁଦ୍ର ମଧ୍ୟରୁ ସୁବର୍ଣ୍ଣକେତକୀ , ପଶ୍ଚିମ ସମୁଦ୍ରରୁ ରଜତ ବୁଦବୁଦ ପ୍ରଭୃତି ଆଣିବାକୁ ଧ୍ୟାନାନନ୍ଦଙ୍କ ନିର୍ଦ୍ଦେଶ ଓ ଏହି ଅସାଧ୍ୟ କାର୍ଯ୍ୟକୁ ସାଧ୍ୟ କରିବା ପାଇଁ ରାଜପୁତ୍ର ସାଧବ ପୁତ୍ରର ସଙ୍କଳ୍ପ ମନରେ ଆଶ୍ଚର୍ଯ୍ୟ ଉତ୍ତେଜନା ସୃଷ୍ଟି କରେ । ଏହା ଗତିଶୀଳତାର ନିଦର୍ଶନ । ପୁଣି ରୂପକ ଛଳରେ ନୀତିଶିକ୍ଷା ଦାନ ସ୍ଥିତିଶୀଳତାର ଦୃଷ୍ଟାନ୍ତ । କୃଶପାଦ ବକ, ଚନ୍ଦ୍ରକୋଟୀର ରାଜହଂସ, ଚଞ୍ଚଣ୍ଡିକା ଶାରୀ , ବିମ୍ବଓଷ୍ଠ ଶୁକ ମାଧ୍ୟମରେ ରୂପକ ଗଳ୍ପର ଅବତାରଣା କ୍ଲାନ୍ତିକର ଜୀବନଚର୍ଯ୍ୟାରେ ଆନନ୍ଦମୟ ପରିବେଶ ରଚନା କରେ । ମଣିଷ ସ୍ୱଭାବତଃ ବୈବିଧ୍ୟ ଓ ବୈଚିତ୍ର୍ୟ ପ୍ରେମୀ । ଲୋକ ଗଳ୍ପରେ ତାର ବିରାଟ ଆୟୋଜନ ।

ଲୋକଗଳ୍ପ ବିଶ୍ୱମାନବ ପାଇଁ ଉଦ୍ଦିଷ୍ଟ — ତେଣୁ ଏଥିରେ ସାମ୍ପ୍ରଦାୟିକ ମନୋଭାବ ବା ନିର୍ଦ୍ଦିଷ୍ଟ ଧର୍ମର ତତ୍ତ୍ୱ ପ୍ରଖ୍ୟାପିତ ନୁହେଁ । ଏହା ଧର୍ମ ନିରପେକ୍ଷ ସୃଷ୍ଟି । ଚତୁର ବିନୋଦରେ ବ୍ରଜନାଥ ପ୍ରଥମେ ସିଦ୍ଧିଦାତା ଗଣେଶ, ତତ୍ପରେ ଚନ୍ଦ୍ରମୌଳି ମହାଦେବ ଓ ଶେଷରେ ବ୍ରଜପୁର ନାଗର ଶ୍ରୀକୃଷ୍ଣଙ୍କୁ ବନ୍ଦନା କରିଛନ୍ତି । ଶଠ ପ୍ରୀତିରେ ବ୍ରାହ୍ମଣର ପୁରୁଷୋତ୍ତମ ଯାତ୍ରା ସମ୍ବନ୍ଧରେ ଉଲ୍ଲେଖ ଅଛି — କିନ୍ତୁ ଧର୍ମର ତାତ୍ତ୍ୱିକ ବ୍ୟାଖ୍ୟା ବା ସେ ସମ୍ବନ୍ଧରେ କୌଣସି ଉଲ୍ଲେଖ ନାହିଁ ।

ବଡ଼ଜେନା , ରସ, ନୀତି ଓ ପ୍ରୀତି ବିନୋଦ ସମ୍ବନ୍ଧରେ ଗୋଟିଏ ଗୋଟିଏ ଶ୍ଳୋକ ରଚନା କରି ତାର ସ୍ୱରୂପ ଓ ଉପାଦେୟତା ପ୍ରକାଶ କରିଛନ୍ତି । ନାନା କୌତୁକ ଓ ହାସ୍ୟ ପ୍ରଭୃତି ଦ୍ୱାରା ଅତ୍ୟନ୍ତ ଚିତ୍ତଚମତ୍କାରୀ କାଳ୍ପନିକ ବିଷୟ ରଚନା କଥା ନାମରେ ଅଭିହିତ ହୁଏ । ହାସବିନୋଦ ଆରମ୍ଭରେ କୌଣସି ସ୍ୱତନ୍ତ୍ର ଶ୍ଳୋକ ରଚିତ ହୋଇନାହିଁ । କଥାର ସଂଜ୍ଞା ନିରୂପଣ ସମୟରେ କେବଳ ହାସ୍ୟ କୌତୁକର ଅପରିହାର୍ଯ୍ୟତା ସମ୍ବନ୍ଧରେ ଉଲ୍ଲେଖ କରାଯାଇଛି । ରସର ପ୍ରାଧାନ୍ୟ ସର୍ବଜନ ସ୍ୱୀକୃତ , ରସହୀନ ବ୍ୟକ୍ତି ନିଷ୍ଠୁର ଓ ନିର୍ଗୁଣ ରସଭାଷୀ ଗୁଣବାନ ଓ ସର୍ବଜନାଦୃତ । ନୀତିର ପ୍ରତିଷ୍ଠା ସର୍ବତ୍ର । ମନ ଓ ଆତ୍ମାର ସନ୍ତୋଷ ସମ୍ପାଦନ ପାଇଁ ନୀତିର ଅବଲମ୍ବନ ଅପରିହାର୍ଯ୍ୟ । ପ୍ରୀତି ମଣିଷକୁ ମନ୍ତ୍ରମୁଗ୍ଧ କରେ । ସଜ୍ଜନରେ ପ୍ରୀତି ମଙ୍ଗଳ ଓ ଅଯୋଗ୍ୟରେ ପ୍ରୀତି ଅମଙ୍ଗଳ ସୃଷ୍ଟି କରେ । ପ୍ରତ୍ୟେକ ଗଳ୍ପର ମୌଳିକ ରୂପ ଓ ଆଭିମୁଖ୍ୟ ସମ୍ବନ୍ଧରେ ସ୍ପଷ୍ଟ ଧାରଣା ଦେଇ ବିଷୟ ନିବେଶର ପଥକୁ ସୁଗମ ଓ ଶୃଙ୍ଖଳିତ କରିଛନ୍ତି ।

ବ୍ରଜନାଥ ବହୁଭାଷାରେ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ଚତୁର ବିନୋଦ ତାର ନିଦର୍ଶନ । ସଂସ୍କୃତ, କଥିତ, ହିନ୍ଦୀ, ପାର୍ସି, ଯାବନିକ ପ୍ରଭୃତି ବିଭିନ୍ନ ଭାଷା ଓ ଶବ୍ଦର ବହୁଳ ପ୍ରୟୋଗରେ ସେ ଓଡ଼ିଆ ଭାଷାକୁ ବଳିଷ୍ଠ ଓ ଋଦ୍ଧିମନ୍ତ କରିବାର ପ୍ରୟାସ କରିଛନ୍ତି । ବିଭିନ୍ନ ଭାଷାରୁ ଆହରଣ କରି ଶବ୍ଦର ଉପଯୁକ୍ତ ପ୍ରୟୋଗ ଦ୍ୱାରା ଭାବର ସୁଷ୍ଠୁ ପ୍ରକାଶ ସାହିତ୍ୟର ସୌନ୍ଦର୍ଯ୍ୟ ବଢାଏ ।

କଳ୍ପନାରେ ଇନ୍ଦ୍ରଧନୁର ସପ୍ତରଙ୍ଗରେ ବିହାର କରୁଥିବା ସୌଦାଗରୀ ସାହିତ୍ୟରେ ବର୍ଣ୍ଣନା ବିଳାସ ସାହିତ୍ୟିକ ସୌନ୍ଦର୍ଯ୍ୟର ପ୍ରଧାନ ଅଙ୍ଗ । ବର୍ଣ୍ଣନା ଗୁରୁତ୍ୱରେ

କବିତ୍ୱ ଶକ୍ତି ବିଳସିତ । ଯେଉଁ କବି ଯେତେ ବର୍ଣ୍ଣନା ପଟୁ, ତାର କାବ୍ୟ ସେତେ ସୁଗାଙ୍ଗ କାବ୍ୟ ରୂପେ ବିବେଚିତ । ଚତୁର ବିନୋଦର ସ୍ରଷ୍ଟା ମୂଳତଃ କବି । ତେଣୁ ଯେଉଁଠି ସନ୍ଧ୍ୟା, ପ୍ରକୃତି, ପର୍ବତ, ନଦୀ ଓ ନାରୀର ସୌନ୍ଦର୍ଯ୍ୟ ପ୍ରଭୃତି ବର୍ଣ୍ଣନା କରିବାର ଅବକାଶ ମିଳିଛି, ସେଠି କବି ଉଚ୍ଛ୍ୱାସରେ ଫେନିଳ ଓ ତାଙ୍କର ଭାବଧାରା କବିତାରେ ମୁକୁଳିତ । ଅନେକ ସ୍ଥଳରେ ଗଦ୍ୟରେ ମଧ୍ୟ ସେ ପ୍ରକୃତି ଓ ରୂପ ବର୍ଣ୍ଣନା କରିଛନ୍ତି, କିନ୍ତୁ ସେଥିରେ କବିତ୍ୱର ଛଟା ବିକୀର୍ଣ୍ଣ । ଯଥା—

"ଏମନ୍ତେ ରଜନୀ ପ୍ରବେଶରେ ଅନ୍ଧାର ଘୋଟନ୍ତେ କୁଞ୍ଜ ଉପାସୀମାନେ ଅଭିସାର କରିବାକୁ ବାହାରିଲେ । ଚୋରମାନେ ଖନିତ୍ର ଘେନି ଚଳିଲେ, ଖଦ୍ୟୋତମାନେ ଉଡ଼ିଲେ, ନିଶାଚରମାନେ ବିହରିଲେ । ମନେହେଲା, ଏ ସନ୍ଧ୍ୟା କାଳ ନୁହଇ, ନିଶା-ନାୟିକା ଅବା କଳାମେଘ ଶାଢ଼ୀ ପିନ୍ଧି, ନୀଳ ଅଳଙ୍କାର ମଣ୍ଡି ହୋଇ ଅଭିସାର କରିବାକୁ ବାହାରିଲା ।"

ଏହି ବର୍ଣ୍ଣନା କାବ୍ୟିକ ରୀତିରେ କରାଯାଇଛି । କେତେକ କବିତା କେବଳ ଯତିପାତ ଦ୍ୱାରା ପଦ୍ୟ ରୂପେ ଅଭିହିତ । ପୁଣି କେତେକ ସ୍ଥଳରେ ବର୍ଣ୍ଣନାର ବାହୁଲ୍ୟ ସମୟର ଦେହଳୀ ଅତିକ୍ରମ କରି ଅଶ୍ଳୀଳ ଓ ଗ୍ରାମ୍ୟ ହୋଇପଡ଼ିଛି । ତେବେ ସର୍ବତ୍ର ଅଶ୍ଳୀଳତା ଓ ସମୟସ୍ଥାନତାରେ ତାଙ୍କ ସୃଷ୍ଟି କଳଙ୍କିତ ନୁହେଁ । କୌଣସି ସ୍ରଷ୍ଟାର ବକ୍ତବ୍ୟ ଓ ଜୀବନ ଦର୍ଶନ ନିରୂପଣ କରିବାକୁ ହେଲେ ତାର ସମଗ୍ର ସାହିତ୍ୟର ଅନୁଶୀଳନ ବାଞ୍ଛନୀୟ । ଶ୍ଳୀଳ, ଅଶ୍ଳୀଳ, ସଂଯତ, ଅସଂଯତ, ରୁଚିପୂର୍ଣ୍ଣ ରୁଚିହୀନ, ଶିଷ୍ଟ, ଅଶିଷ୍ଟ— ଏହିପରି ଉଭୟ ମାର୍ଗରେ ବଡ଼଼ଜେନାଙ୍କର ଯାତ୍ରା ।

ସମସ୍ତ ନିୟମେ ରୁଚିବୋଧର ସଂସ୍କାର ହୁଏ । ଅତୀତର ଗଡ଼୍ଡ଼ଳିକାବାହୀ ରୂପ-ଚିତ୍ର ଦେଖି ଦେଖି ଯେତେବେଳେ ଦେହ ମନରେ କ୍ଳାନ୍ତି ଘନେଇ ଆସେ, ମଣିଷ ଖୋଜେ ନୂଆ ପଥ, ନୂଆ ସୂତ୍ର । ବ୍ରଜନାଥଙ୍କ ସୃଷ୍ଟି ପରଂପରାର ପ୍ରତିଚ୍ଛବି ଓ ଆଗାମୀର ଆକାଂକ୍ଷାକୁ ହୃତପିଣ୍ଡରେ ବହନ କରି ବିସ୍ମୃତପ୍ରାୟ । ସେ ତାଙ୍କ ଯୁଗର ଏକ ନିର୍ଜୀବ ଚିତ୍ରକର ନୁହନ୍ତି କି ଯୁଗର ବ୍ୟତିକ୍ରମ ମଧ୍ୟ ନୁହନ୍ତି । ପରଂପରାରୁ ବିଷୟ ଆହରଣ କରି ନିଜସ୍ୱ ସୃଷ୍ଟି ଛନ୍ଦରେ ତାକୁ ରୂପାୟିତ କରିଛନ୍ତି । ତାର ଗାତ୍ର ମାର୍ଜନା କରିଛନ୍ତି ନୂତନ ପ୍ରାଣଧାରାରେ । ପୁଣି କାଳ ବକ୍ଷରେ ହଜି ଯାଉଥିବା ଲୋକଗଳ୍ପ ଗୁଡ଼ିକୁ ସାହିତ୍ୟର ସିଂହାସନରେ ଅଭିଷିକ୍ତ କରି ସେମାନଙ୍କୁ କରିଛନ୍ତି କାଳଜୟୀ । ଏଇ ଜୀବନ୍ତ ଶିଳ୍ପରେ କଳ୍ପନା ଓ ବାସ୍ତବର ମଧୁର ମିଳନ ଲୋକପ୍ରାଣକୁ ସ୍ପର୍ଶ କରି ସୃଷ୍ଟି କରେ ଉଲ୍ଲାସର ଝଡ଼ । ଜୀବନକୁ ସରସ ସୁନ୍ଦର ଶୃଙ୍ଖଳିତ କରି ସମାଜର ମେରୁଦଣ୍ଡକୁ ସଳଖି ଦିଏ ।

ଶେଷରେ କୁହାଯାଇପାରେ ଇଂରାଜି ସାହିତ୍ୟର କ୍ୟାଣ୍ଟରବରୀ ଟେଲ୍ସ୍ ପରି ଚତୁର ବିନୋଦ ପରବର୍ତ୍ତୀ ଗଦ୍ୟ ସାହିତ୍ୟର ସମସ୍ତ ସମ୍ଭାବନାର ପ୍ରଥମ ମୁକୁଳ ।

—:o:—

# ଚତୁର ବିନୋଦ କଥା

## ଶ୍ରୀ ଗଣେଶାୟ ନମଃ

### ଶ୍ଲୋକଃ

କୃନ୍ଦାଳନନ୍ଦିତତନୁ ର୍ଭୁଜଗାଳଙ୍କୃତୋ
ବୃନ୍ଦାରକାର୍ଚ୍ଚିତପଦୋ ଗଜଦନ୍ତବପ୍ରା
ଚନ୍ଦ୍ରାବତଂସଃ କରୁଣାବ୍ଧିର୍ଧନଂଜୟାଖ୍ୟୋ
ମନ୍ଦାଧିଃପୀଡ଼ିତମିମଂ ଗିରିଶଃ ପୁନାତୁ ।

### ପଦ

ବ୍ରଜପୁର-ନାଗର ନାଗଗିରି-ଧୃତ-ଧର ନଟବର-ସୁନ୍ଦର ଦେବ-ପୁରନ୍ଦର ବୃନ୍ଦାରକବୃନ୍ଦବର ନୀରଦ-ରୁଚିର-ଧରଜଳଧରସୋଦର ଗୋରସ-ତସ୍କର, ଯଦୁକୁଳ ଭାସ୍କର, କଳୁଷଚୟ-ହର ଜାହ୍ନୁ ରମେଶ୍ୱର ଦେବ ।

### କଥା

ହେ ରସିକଜନମାନେ, ଦେଶଭାଷାରେ ଚତୁରବିନୋଦ ନାମେ ଏକ କଥାଏ କହିବା ଶୁଣିମା ହୋଉ । କଥା କାହାକୁ ବୋଲନ୍ତି ?

### ଶ୍ଲୋକ

ମିଥ୍ୟାଗ୍ରନ୍ଥପ୍ରବନ୍ଧେନ ମନୋହରତ୍ୱ ଯା ଭୃଶଂ
ନାନା କୌତୁକ ହାସାଦ୍ୟୈଃ ସା କଥେତ୍ୟଭିଧୀୟତେ ।

### କଥା

ସେ ଯେ ରସାଳକାଞ୍ଚନ ନାମେ ଏକ ନଗର ଅଛି । ସେ ନଗରରେ ନେତ୍ରା-ମୋଦ ନାମେ ଏକ ବଣିକ ଜଣେ (୧) ଥିଲା । ତାହା ନନ୍ଦନୀ (୨) ନାମ ଚଞ୍ଚଳାକ୍ଷୀ । ସେ ଚଞ୍ଚଳାକ୍ଷୀ ଏକ ଦିନକରେ (୩) ସୁହାଗୀ ନାମେ ସଖୀକି ସଙ୍ଗେ ଘେନି ସୁରେଖା ନାମେ

ନଦୀକି ସ୍ନାହାନ (୪) କରିବାକୁ ଗଲା । ସେ ନଦୀ ତଟରେ ଅଙ୍ଗରୁ ଅଳଙ୍କାରମାନ କାଢ଼ି ଗନ୍ଧକୁଙ୍କୁମ ସୁବାସ ମିଶ୍ରିତ ଘଷି (୫) ଲଗାଇ ସ୍ନାହାନ କଲା । ତନୁ ପୋଛି ଝୀନବାସ(୬) ପିନ୍ଧିଲା । ଅଳଙ୍କାରମାନ ଆଭରଣ ହୋଇ (୭) ଚନ୍ଦନ କର୍ପୂର କସ୍ତୁରୀ ସିନ୍ଦୁର ଇତ୍ୟାଦିରେ କପୋଳରେ (୮) ମନୋହର ଚିତାଏ (୯) ଦେଲା । (୧୦) ସେଠାରୁ ଯାଇଁ ନାଗାଭରଣ ନାମେ ମହେଶଙ୍କୁ (୧୧) ଦରଶନ କଲା । ତାଙ୍କଠାରୁ ସୁପ୍ରସାଦ (୧୨) ପାଇ ତମ୍ବୁଳ (୧୩) ଭୁଞ୍ଜି ପୁରକୁ (୧୪) ବାହୁଡ଼ିଲା ।

ସେହି ନଗ୍ର ରାଜପୁଅ ମୋହନାଙ୍ଗ ବୋଲି ସେ ଈଶ୍ୱରଙ୍କୁ (୧୫) ଦର୍ଶନ କରିବାକୁ ଆସିଥିଲା । ସୁରେଖା ନଦୀରେ ସ୍ନାହାନ କରିବା ବେଳୁଁ ଚଞ୍ଚଳାକ୍ଷୀ ଯେଉଁ (୧୬) ଶୋଭା ତାହା କୁମାର ଦେଖିଥାଇ । ଦରଶନ କରି ପୁରକୁ ବାହୁଡ଼ିବାଯାଏଁ ଚଞ୍ଚଳାକ୍ଷୀକି ଅପଲକ ହୋଇ (୧୭) ଚାହିଁଛି ।

ତାହାର ଯେଉଁ ଧୀରଗତି, ତାହାର ଯେଉଁ ଦନ୍ତପନ୍ତି, (୧୮)
ତାହାର ଯେଉଁ ଅଙ୍ଗଜ୍ୟୋତି (୧୯) ତାହାର ଯେଉଁ ନେତ୍ରଗତି, (୨୦)
ତାହାର ଯେଉଁ ହାସ ମୁଖ, (୨୧) ତାହାର ଯେଉଁ ଭ୍ରୂରେଖ, (୨୨)
ତାହାର ଯେଉଁ ତାର ନଖ (୨୩) ତାହାର ଯହୁଁ ବାଣୀ ସୁଖ, (୨୪)
ତାହାର ଯେଉଁ ଘଞ୍ଚ ଉଚ୍ଚ ସଞ୍ଚ କୁଚ (୨୫), ତାହାର ଯହୁଁ ନୀଳ କଚ, (୨୬)
ତାହାର ଯହୁଁ ମୃଦୁବଚ—(୨୭)

ଏମାନ (୨୮) ସବୁ ଦେଖନ୍ତେ କୁମାର ଅନଙ୍ଗ ରଙ୍ଗରେ (୨୯) ଅତ୍ୟନ୍ତ ତରଙ୍ଗ (୩୦) ହୋଇଲା । ଗହଣରେ (୩୧) ଆସିଥିବା ଲୋକଙ୍କୁ କଥା କପଟରେ ବଞ୍ଚାଇ (୩୨) କହି ଏକାକେ (୩୩) ଆସି ଚଞ୍ଚଳାକ୍ଷୀ ଆଗରେ ନିର୍ଜନ ସ୍ଥାନରେ ଭେଟିଲା । ବୋଇଲା ଆରେ ସୁନ୍ଦରି, ମୁଁ ତୋ ଶୋଭା ଦେଖି ମୋହିତ ହେଲି । କନ୍ଦର୍ପ ଅନ୍ଧାର ଘୋଟିବାରୁ (୩୩) ବାଟ ଦିଶୁ ନାହିଁ । ଏ ପେନ (୩୪) ମୋତେ ଅଙ୍ଗୀକାର (୩୫) କରି ସୁରତି ଦିଅ (୩୬) । ଏ ପ୍ରାଣ ତୋର କରି ରଖ । ଏରୂପେ ନ କଲେ ତୋ ପକାଶୁଁ ପ୍ରାଣ ଯିବ । ତୁ ପୁରୁଷ ହତ୍ୟା ଦୋଷ ପାଇବୁ, ସଂସାରେ ଅକୀର୍ତ୍ତି ହେବ କି ରାଜାପୁଅ ଚଞ୍ଚଳାକ୍ଷୀ ନାଗି ମଲା । ଏ ତୋ ଯଉବନ ସମ୍ପତ୍ତି ସର୍ବଦା କାଳେ ନ ରହିବଟି (୩୭) । ମୋତେ ସୁରତି ଧନ ଦେଇ କିଣି ରଖ । ଏରୂପେ ବିନମ୍ର ହୋଇ ଦୁଇ ହାତ ଯୋଡ଼ି ଚରଣ ଧରିବାକୁ ଆସନ୍ତେ ସେ ଚଞ୍ଚଳାକ୍ଷୀ କାତର ହୋଇ ପ୍ରିୟ ସଖୀ ସୁହାଗୀ ଆଗେ କହିଲା । ବୋଇଲା ଏ କି ଅଚିନ୍ତିତ କଥା, ଏଥିକି ବିଚାର (୩୮) କହ । ତହିଁ କି (୩୯) ସୁହାଗୀ କହିଲା, କଲେ ତ ଲୋକ ଅପବାଦ, ନ କଲେ ପୁରୁଷ ହତ୍ୟା, ଏଣେ ପୁଣି ରାଜପୁଅ, ଏଥିରେ ମୁଁ କଉ (୪୦) କଥା କହିବି । ଏ ସମୟରେ

ରାଜପୁଅ ସୁହାଗୀ ଆଗେ କହିଲା ମୋ ଜୀବନ ରଖ, ତୋ ଚରଣ ଧରି କହୁଛି । ସୁହାଗୀ କହିଲା ହେ କୁମାର ଏ ତ ଦିବସ, ଏଣେ ରାଜମାର୍ଗ, ଏଠାରେ ଆମ୍ଭେ କି କହିବୁଁ ? ଆଜ ସନ୍ଧ୍ୟା ସମୟରେ ଆମ୍ଭ ପୁରକୁ ଯିବ, ସେଠାରେ ଭାଷା ଦେବୁ (୪୧) । ଏମନ୍ତ କହି ଚଞ୍ଚଳାକ୍ଷୀକି ସଙ୍ଗେ ଘେନି ପୁରକୁ ଗଲା ।

ମୋହନାଙ୍ଗ ଆପଣ ଘରକୁ ଯାଇଁ ବେଶ ବାସ ହସ ରସ ଇତ୍ୟାଦି ନାନା କୌତୁକ କଥା ମାନଙ୍କେ (୪୨) ମନ ରସିଲା ନାହିଁ, (୪୩) କେବଳ ଚଞ୍ଚଳାକ୍ଷୀ ଅଙ୍ଗ ସଙ୍ଗ ହେବାକୁ (୪୪) ସନ୍ଧ୍ୟା କେତେବେଳେ ହେବ ଏହି ଭାବନା କରୁଅଛି । କ୍ରମେ କ୍ରମେ ଦିବସ ଶେଷ ହୁଅନ୍ତେ ପଶ୍ଚିମଦିଗଯାକ ଅରୁଣବର୍ଣ୍ଣ ଦିଶିଲା । ମନେହେଲା ସନ୍ଧ୍ୟାବଧୂ ରଙ୍ଗଣୀପାଟ ପିନ୍ଧି କି ଅବା ପୂଆଣି ହୋଇ ଆସୁଛି । (୪୫)

ମୁଦ୍ରିତ ହେଲେ ଅରବିନ୍ଦ, (୪୬) ଫୁଟିଲେ କୁମୁଦ (୪୭)
ଶୁଭେ ଶଙ୍ଖନାଦ, ହରି ହରି ଶବଦ,
ଦ୍ୱିଜେ (୪୮) ପଢ଼ନ୍ତି ବେଦ, ଜାର (୪୯) ପୁରୁଷେ ଆନନ୍ଦ,
ଭ୍ରମର ଗଲେ ବନ୍ଦ, (୫୦)

ରସିକ ରସିକାମାନେ କେଳିପୁର ମଣ୍ଡନ କଲେ କରିବାକୁ କାମକେଳି ବିନୋଦ (୫୧) ଏରୂପେ ସନ୍ଧ୍ୟା ପ୍ରବେଶ ହୁଅନ୍ତେ ମୋହନାଙ୍ଗ ଯେ ସେ ଚଞ୍ଚଳାକ୍ଷୀ ପୁରକୁ ରତି ଇଚ୍ଛାରେ ଗମନ କଲା । ତାହା ପୁରଦ୍ୱାରରେ ଦେଖିଲା ସୁହାଗୀ ଉଭା ହୋଇଛି (୫୨) । ମୋହନାଙ୍ଗ ତାକୁ ନେତ୍ରଭଙ୍ଗି ଇଙ୍ଗିତରେ ଠାରି ରହିଁାନ୍ତେ ତାହା ସୁହାଗୀ ଜାଣିପାରି ଚଞ୍ଚଳାକ୍ଷୀ ପାଶକୁ ଯାଇଁ ବୋଇଲା ରେ ସଖି, ରାଜାପୁଅ ଦ୍ୱାରରେ ଆସି ଉଭା ହୋଇଛି । ତୋଠାରେ ଅନୁରକ୍ତ ହୋଇବା ଘେନି (୫୪) ଅନ୍ନ ସଲିଳ ଭୋଜନ କରି ନାହିଁ (୫୫) ପରା ! ମୁଖ ତ ଶୁଖିଲା ଦିଶୁଛି । ମୋ ମନେ ହୋଉଛି (୫୬) ତୋ ସଙ୍ଗ ନୋହିଲେ ନିଶ୍ଚେ ତା ପ୍ରାଣ ନ ରହିବ, ତୁ ପୁରୁଷ ହତ୍ୟା ଦୋଷ ପାଇବୁ । ସୁହାଗୀ ଏହା କହନ୍ତେ ଚଞ୍ଚଳାକ୍ଷୀ ଏକାନ୍ତପୁରରେ ବସି କହିଲା ତେବେ ତାଙ୍କୁ ଏଠାକୁ ଗୁପ୍ତକରି ଡାକି ଘେନି ଆସ । ଏହା ଶୁଣି ସୁହାଗୀ ଯାଇଁ ରାଜାପୁଅକୁ ନୟନ ଭଙ୍ଗି ଇଙ୍ଗିତରେ ଡାକି ଚଞ୍ଚଳାକ୍ଷୀ ପୁରକୁ ଘେନିଗଲା । ମୋହନାଙ୍ଗକୁ ଚଞ୍ଚଳାକ୍ଷୀ ଦେଖି ମନ୍ଦହାସରେ (୫୭) କହିଲା, ପଲଙ୍କରେ ବସ । ତାହା ମୁଖ ଦେଖି କୁମର ଅତି ଉତ୍ସୁକରେ (୫୮) ରହିଁାନ୍ତେ କୁମାରୀ କହିଲା, ହେ କୁମାର, ତୁମ୍ଭେ ତ ରାଜପୁଅ, ଏରୂପେ ଅସ୍ଥିର କାହିଁକି ହେଉଛ ? ଏବେ ତୁମ୍ଭ ମୋ ଅଙ୍ଗସଙ୍ଗ ହେବାର କିଛି ସନ୍ଦେହ ନାହିଁ । ଅଉ ଏଡ଼େ ସତ୍ୱର କିଂପା । ଅମୃତ ଯେ ସ୍ୱର୍ଗରେ ଅଛି ସେ କେଡ଼େ ସ୍ୱାଦ ତାହା କେହି ପାଇ ନାହିଁ, ସମସ୍ତେ କହନ୍ତି ସେ ବଡ଼ ମଧୁର, ଏମନ୍ତ କହିବାରୁ ତାହା ଖାଇବାକୁ

ଲୋଭ ବଢ଼ୁଥାଇ । ଖାଇଲାଠାରୁ, ଏରୂପେ ମଧୁର ସିନା,—ଏମନ୍ତ ଜାଣି ଆଉ ତା’ଠାରେ କି ତେତେ ଲୋଭ ହେବ ? ସେଠାରୁ ଆଶା ତୁଟିବ (୬୦) । ଅମୃତ ଅନାସ୍ଥ (୬୧) ହେବ । ଭୋଗ ନ କରିଥିଲା ଯାକ ଆଶା ଟେକୁଥାଇ (୬୨) । ଭୋଗ କଲାଠାରୁ ସୁଖ ଉଣା ହୁଅଇ । ତୁମ୍ଭେ ସିନା ପୁରୁଷମାନେ ଭ୍ରମର ଜାତି । ଭୋଗକଲାମାତ୍ରେ ରସ ନେଇ ଛଡ଼ାଫୁଲ ପ୍ରାୟେ ଛାଡ଼ି ଯାଅ । ଆମ୍ଭେ ତ ଅବଳା ନାରୀ । ଆମ୍ଭମାନଙ୍କ ଆଶା ବରଷା ନଦୀ ପରି (୬୩) । ରସ (୬୪) ପାଇଲେ ବେଳକୁ ବେଳ ବଢ଼ୁଥାଇ, କୂଳ ସରକ ବୁଡ଼ାଇ (୬୫) । ଏଥକୁ ତୁମ୍ଭ ମୋ ପ୍ରୀତି ହେବାର ତ ବଧୂ.ତା ଘଟାଇଲଣି, ମାତର ଆଜ ମୋହର ଗରୁଢ଼ି ବ୍ରତ (୬୬) । ଏ ରାତ୍ର ଉଜାଗର ହେବ (୬୭) । ଏ କର୍ମ (୬୮) ଆଜ କିରୂପେ ହେବ । ଆପଣ ଆଜ ଏ ପୁରେ ସୁଖେ ରହ (୬୯) କାଲି ମୋ ଅଙ୍ଗ ସମର୍ପିବ (୭୦) ।

ଏହା ଶୁଣି ମୋହନାଙ୍ଗ ବୋଇଲା ରେ ବାଳା ଉତ୍ତମ ହୋଉ (୭୧) । ଗଙ୍ଗାତଟକୁ ଗଲେ କି ତୃଷା ମାରି ପାରଇ (୭୨) । ଏବେ ତ ମୋ କର୍ଣ୍ଣ ନୟନ ଦୁହେଁ କୃତାର୍ଥ ହେଲେଣି । ଆଜ ତୋ ପାଶରେ ଦାସ ପଣେ ଖଟିଥିବ । କାଲି ତ ଅବଶ୍ୟ ମୋତେ ବର୍ତ୍ତନ ମିଳିବ (୭୩) । ମୁଖକୁ ଗ୍ରହିଲେ ତ କୋଟି ଇନ୍ଦ୍ର ସମ୍ପତ୍ତି ଦଶୁ ନାହିଁ (୭୪) । ଅଜ ତୋ ସଙ୍ଗରେ ମୁଁ ଉନ୍ନିଦ୍ର (୭୫) ହୋଇ ରହିବି ।

ଏହା ଶୁଣି ସୁହାଗୀ କହିଲା ହେ ମୋହନାଙ୍ଗ, ତେବେ କିଛୁ ହାସରସ କଥାଟିଏ କହ ଯେମନ୍ତେ ଚଞ୍ଚଳାକ୍ଷୀ ଶୁଣି ଉନ୍ନିଦ୍ର ହେବ, ବ୍ରତ ଫଳ ମିଳିବ ।

ମୋହନାଙ୍ଗ ବୋଇଲା ଉତ୍ତମ ତେବେ ମୁଁ କଥାଟିଏ କହିବି ତୁମ୍ଭେ ଶୁଣ । ପୂର୍ବେ ସଙ୍କର୍ଷଣ ପଣ୍ଡା ବ୍ରାହ୍ମଣ ରାଜାଙ୍କ ସଭାରେ ଚତୁର ବିନୋଦ ନାମେ ଏକ କଥା ଏ କହିଥିଲେ, ମୁଁ ତାହା ଶୁଣିଛି । ହାସବିନୋଦ, ରସବିନୋଦ, ନୀତିବିନୋଦ, ପ୍ରୀତିବିନୋଦ ଏରୂପେ ଚାରି ବିନୋଦ ହେବାରୁ ଏ କଥା ନାମ ଚତୁର ବିନୋଦ, ଅଥବା ଚତୁର ଲୋକଙ୍କ ବିନୋଦ ହେବାରୁ ଏ ଯେନ ଚତୁର ବିନୋଦ ।

(୭୬) ଏହା ଶୁଣି ଚଞ୍ଚଳାକ୍ଷୀ କହିଲା ସେ କଥା କିରୂପେ ଶୁଣିବାକୁ ମୋହର ବଡ଼ ଶରଧା ହୋଉଛି, ତେବେ କହିବା ହୋଉ ।

ମୋହନାଙ୍ଗ ବୋଇଲା ରେ ବାଳା, ଏତେକ ହେଲେ ସିନା କଥା ଶୁଣିବୁ— ଆନ ଇଚ୍ଛା ଛାଡ଼ିବ,(୭୭)ନିଦ୍ରା ନ ମାଡ଼ିବ, ପଲକ ନ ପଡ଼ିବ, ଚରିତ ନ ହୁଡ଼ିବ(୭୮) ।

ଚଞ୍ଚଳାକ୍ଷୀ କହିଲା, ମୁଁ ଏହିରୂପେ ଶୁଣିବି ।

ମୋହନାଙ୍ଗ କହିଲା, ତେବେ କଉଁ ବିନୋଦ କହିବ ତାହା କହ । ଚଞ୍ଚଳାକ୍ଷୀ କହିଲା, ତେବେ ହାସ ବିନୋଦ କଥା କହିବା ହୋଉ ।

କୁମାର ବୋଇ ରେ ମଣି, ତେବେ ସାବଧାନ ହୋଇ ଶୁଣ ।

## ହାସ ବିନୋଦ

ସେ ଯେ କେଳିନଟ ନାମେ ଏକ ନଗର ଅଛି । ସେ ନଗର ରାଜା ନାମ ଅଙ୍ଗଧର । ସେ ରାଜାଙ୍କ ପୁଣ୍ୟପ୍ରତାପ-ବଳ ସକାଶରୁଁ (୧), ସେ ପୃଥ୍ୱି (୨)ଲୋକମାନେ କରରେ ଭିକ୍ଷାପାତ୍ର ଘେନି ଅନ୍ୟ ଦେଶମାନଙ୍କରୁ ତଣ୍ଡୁଳ (୩) ମାଗି ଆଣି ଉଦର ପୋଷନ୍ତି । ସେ ଭିକ୍ଷା ତଣ୍ଡୁଳରୁ ଧର୍ମବାରଣ ମନ୍ତ୍ରୀବର (୪) କର୍ମଅଙ୍କ ପୁରୋହିତ (୫) କହିବା ପୁରାଣ-ବଚନ ପ୍ରମାଣେ ରାଜଭଣ୍ଡାରକୁ ତଣ୍ଡୁଳ ପାଞ୍ଚଭାଗ ନେଇ ତାଙ୍କ ଖାଇବାକୁ ଭାଗେ ଦଅନ୍ତି (୬) । ସେହି ଭିକ୍ଷା ତଣ୍ଡୁଳ ଭର୍ଜିତ (୭) କରି ଲବଣ ଢାଳି ଦେଇ (୮) ରାଜାରାଣୀ ମଣୋହି (୯) କରନ୍ତି ।

ମାଳାଧରା ନାମେ ସେ ରାଜାଙ୍କର ରାଣୀ,
ସୁନ୍ଦର ପଣରେ ରମ୍ଭାବୃକ୍ଷର ଠାଣି (୧୦),
ତାଙ୍କର ତ ଲମ୍ବ ଲମ୍ବ କୁଚ (୧୧), ଖାଲପଟ ଉଚ (୧୨),
ମନ୍ଦାରଫୁଲ ନେତ୍ର (୧୩), ସାର ସମାନ ଗାତ୍ର (୧୪),
ଶଙ୍ଖ ସୁନ୍ଦର ନାସା (୧୫), ମୟୂର କଣ୍ଠ ଭାଷା (୧୬),
ବିପୁଳ (୧୭) ଗୁରୁ ପାଦ, ଗମନେ ଟେକ ନାଦ (୧୮),
ମୃଦଙ୍ଗ ମୋଟ କଟି (୧୯),

ଦଶମାସ ଗର୍ଭ ହେଲାପରି ବନ୍ଧ୍ୟା ରାଣୀର ସର୍ବଦାକାଳେ
ଆଗକୁ ବାହାରି ଥାଇ ଅନ୍ତ୍ରୋଲ (୨୦) ପେଟ ଗୋଟି ।
ବରଷଯାକେ ସମ୍ଭାଳି ସମ୍ଭାଳି ଧନ,
ପିତୃଶ୍ରାଦ୍ଧ ଦିନ ରାଜା ରାଣୀଙ୍କି ଘେନି ଭୁଞ୍ଜନ୍ତି ଉଦର ପୂରି ଅନ୍ନ (୨୧) ।

ଏମନ୍ତ ସମ୍ପତ୍ତି ଯହିଁ ରାଜାଙ୍କର ତାଙ୍କର ପାତ୍ର ମନ୍ତ୍ରୀଙ୍କ ଦୌଲତ (୨୨) ଅବା କି କହିବା ? କର୍ତ୍ତାମାନଙ୍କର ଅନ୍ତଃସାରରେ(୨୩)ଘନ କର୍ତ୍ତାମାନଙ୍କର ଶୂଳର୍ଦ୍ଧି ମନ୍ଦିର(୨୪), ଆମିଷ ବାସରେ (୨୫) ପରମାନେ ଅତି ସୁବାସନା କରୁଥାନ୍ତି । ସର୍ବଦାକାଳେ ଚଉରାଶି ଭୋଗ (୨୬) କରନ୍ତି ସେ ନର । ଯହିଁ ରାଜ୍ୟରେ ବଡ଼ ବଡ ଲୋକମାନେ ଉଦର (୨୭) କରି ନଷ୍ଟ ଲୁରେ ରହିଅଛନ୍ତି ଏମନ୍ତେ, ଏହି କେଳିନଟ ନଗରେ ରାଜାର ଜୁଆଁଇ

ଆଟର ସେନାପତି ଚଣ୍ଡଚନ୍ଦ୍ର ନାମେ ଏକ କୁମ୍ଭକାର ଥିଲେ ଯେ ତାହାର ଗୁଣ ଅବା କ୍ଷ କହିବା

ଘରେ ଗିଦଡ଼ (୨୮), ଧୀରେ ବାଇ (୨୯),
ଥିରେ ପନଙ୍ଗ (୩୦) ରାଜାର ଜୁଆଇଁ ।

ଏମନ୍ତ ହୋଇ ଯଉଁ ଚଣ୍ଡଚନ୍ଦ୍ର ତାହାର ବଳାପମୁଖୀ ନାମେ ଏକ କୁମାରୀ ଥିଲେ । ତା ସମାନେ (୩୧) ସଂସାରରେ ବର ନ ମିଳିବାରୁ ସେ କେମାଦେଈ ଅନେକ କାଳ ପିତାଘରେ ରହିଲେ । କାହିଁକି ବର ନ ମିଳିଲେ କି ? ନା, ସେ ରାଜ୍ୟରେ ଏମନ୍ତ ଅଛି ଯେ ବିଭା ସମୟରେ କନ୍ୟାମାନଙ୍କୁ ଯେ ହସାଇ ପାରଇ ସେ ବିଭା ହୁଅଇ । ସେ ରାଜ୍ୟ ଲୋକମାନଙ୍କ ମୁଖରେ ତ ହାସ ଦେଖିବାକୁ ସ୍ୱପ୍ନ (୩୨) ପୁଣି ବଳାପମୁଖୀ କନ୍ୟାକୁ ହସାଇବ ଏମନ୍ତ ହୋଇ ଅବା କଉଁ ଲୋକ ଅଛି । ଏ ଯୋଗ୍ୟ କୁମାରୀ କିରୂପେ ବିଭା ହେବ କି ? ଏମନ୍ତେ ବିଭା ବିଳମ୍ବ ହୁଅନ୍ତେ କନ୍ୟାର ଚତୁର୍ଥ କାଳ(୩୩)ପ୍ରବେଶ ହେଲା । ପିତା ଚଣ୍ଡଚନ୍ଦ୍ର ଦୂତମାନଙ୍କୁ ପେଷି ଅନେକ ସ୍ଥାନମାନଙ୍କରେ ବର ତଲାସ (୩୪) କଲେ । କଉଁ କଉଁ ସ୍ଥାନମାନ କି ? ନା,

କୋରଡ଼ (୩୫), ଗୋରଡ଼ (୩୬), ଗାଡ଼ୁଆ (୩୭), ଗାଡ଼; ବିଲ, ଝମ୍ବର (୩୮), ଝଆର (୩୯), ଯୋଡ଼ (୪୦);
ମୁଣ୍ଡା (୪୧), ଖମଣା (୪୨), ଘଣା (୪୩); ଶିକା, ସାମୁକା, ଦେକା (୪୪), ବଣା;
ଦାଣ୍ଡି (୪୫), ଭଗଣ୍ଡି (୪୬), ଦଣ୍ଡି (୪୭), ମଶାଣି;

ଇତ୍ୟାଦି ସ୍ଥାନମାନ ଦରଣ୍ଡି ଖୋଜନ୍ତେ (୪୮) ମୂଷିକ ଗର୍ତ୍ତରୁ ମାର୍ଜାରମୁଖା ପୁରୁଷେ ବାହାର ପଡିଲେ ତକ୍ଷଣି ।

କିରୂପେ ବାହାରିଲେ କି ? ନା,—

ଅଧର ଢାମୋଡ଼, ହଣ ମୋଞ୍ଛ ମୋଡ଼;

ତାହା ହନ୍ତ କର ରନ୍ଧ୍ରମାନ ଗୁଡ଼ ଅଛି ଯେ ଗୁଡ଼ରେ କୋଞ୍ଚ କୋଡ଼ ହୋଏ କୋଡ଼(୪୯) ।

କହିଲେ ହେ ଦୂତମାନେ, ଆମ୍ଭଙ୍କୁ ତୁମ୍ଭେ କି ଜାଣ ନାହିଁ ? ଷଣ୍ଢାପୁରି ଆମ୍ଭର ମଉଳା ଟିଅ ଭଉଣୀ, (୫୦) ମହାପାପୁରର ଆମ୍ଭେ ସୋଦର ବାପର ଝିଅ(୫୧) ! ଦୂତମାନେ ତାଙ୍କୁ ଚିହ୍ନି ବଡ଼ ଆନନ୍ଦରେ କହିଲେ ଭଲରୁ, ଭଲରୁ, ଭଲରୁ । ଅହୋ-ରୂପମହୋଧ୍ୱନଃ (୫୨) । ଏତେ କାଳେ ଆସି ଆମ୍ଭ କେମାଦେଈଙ୍କ ଅନୁରୂପେ ବର ମିଳିଲା । ଏହା ଶୁଣି ମାର୍ଜାରମୁଖା କହିଲେ ଆମ୍ଭେ ତ ବିଧାତା ସର୍ଜନା ଭିତର ପୁରୁଷ ନୋହୁଁ, ଆମ୍ଭ ଗୁଣ ଲକ୍ଷଣ ତ ଦେଖୁଛ, ତୁମ୍ଭ କେମାଦେଈଙ୍କ ଗୁଣ କିରୂପେ କହ ଦେଖି ଶୁଣିମା । ଦୂତେ କହିଲେ ହେ ନରମଳ (୫୩) !

ତୁମ୍ଭର ଯେଉଁରୂପେ କୁମାର ବୟସ,
ଆମ୍ଭ ଜେମାଦେଈଙ୍କର ସେହିରୂପେ ରଞ୍ଜି ଆସୁଅଛୁ ଜଣ (୫୪) ।

ମାର୍ଜାରମୁଖା କହିଲେ ତାଙ୍କ ହୃଦସ୍ଥ ତଟରେ ଶମ୍ଭୁଲିଙ୍ଗ (୫୫)ବିଜେ କଲେଣି କି ନାହିଁ ? ଦୂତେ କହିଲେ, ଲମ୍ବାସ୍ତମ୍ଭ ହୋଇ କ୍ଷୁଦ୍ରଲିଙ୍ଗାଲିଙ୍ଗ (୫୬) ବେନି ତ ବହୁତ କାଳ ହେଲା ବିଜେ ହୋଇଥିଲେ, ଏବେ ସେ ଲକ୍ଷ୍.ସରିକ ବଳିଲେଣି(୫୭)ପରି । ହୃଦସ୍ଥ ତଟ ତ ସମାନ ଦିଶୁଥାଇ ; ଅଥବା ଅତି କ୍ଷୁଦ୍ରରୂପେ ବିଜେ କରିଥିବେ । ଜଣ ପ୍ରାୟ ତ ବହୁତ ପାଣି-ଲଗି ହୋଇଅଛନ୍ତି (୫୮) । ଘରେ ମଧ୍ୟ ଦଣ୍ଡେ ରହିବାର ନାହିଁ ।

ଏମନ୍ତ ଦୂତମାନଙ୍କ ମୁଖରୁ ଶୁଣି ମାର୍ଜାରମୁଖା ପୁରୁଷ ବଡ଼ ଆନନ୍ଦରେ ଟହି ଟହି ହୋଇ ହସିଲେ, ବୋଇଲେ ଶୀଘ୍ରେ ଭବତୁ, (୫୯) ଶୀଘ୍ରେ ଭବତୁ, ଶୀଘ୍ରେ ଭବତୁ । ଏମନ୍ତ କହି ଭାଷିଲେ ଆମ୍ଭ ସମାନେ ତ କନ୍ୟା ମିଳିଲେ, ଆମ୍ଭଙ୍କୁ ତେବେ ବରଣ କରି ନିଅ । ଏହା ଶୁଣି ଦୂତମାନେ କୂପ ରତ୍ନମାଳା (୬୦) ଗଳାରେ ପକାଇ ବରଣ କରି ନେଲେ । ଚଣ୍ଡଚନ୍ଦ୍ର ଗ୍ରାମରେ ମାର୍ଜାରମୁଖା ଭେଟି ଦୁଇପାଦ ତୋଳି ନମସ୍କାର କରନ୍ତେ ଚଣ୍ଡଚନ୍ଦ୍ର କଲ୍ୟାଣ କଲେ 'ଗତାୟୁର୍ଭବ' (୬୧) । କଲ୍ୟାଣ କରି ବଡ ଆନନ୍ଦରେ ଦୂତଙ୍କୁ କହିଲେ, ଅହୋ ଭାଗ୍ୟମହୋଭାଗ୍ୟମ୍ (୬୨) ।' ଅୟଂ ଜାମାତା କସ୍ମିନ୍ ସ୍ଥିତଃ (୬୩) ?

ଦୂତେନ କଥିତଂ—'ମୂଷିକଗର୍ତ୍ତେ ସ୍ଥିତଃ (୬୪) ।'
କିଂ ନାମ (୬୫) ?
ମାର୍ଜାରମୁଖା ।
ତଦା କୁମାରୀ ସମୀପଂ ପ୍ରତିଗଚ୍ଛନ୍ତୁ (୬୬) ।

ଚଣ୍ଡଚନ୍ଦ୍ରଠାରୁ ଏମନ୍ତ ଦୂତମାନେ ଶୁଣି,
ଜେମାଦେଈଙ୍କ ପାଶକୁ ମାର୍ଜାରମୁଖାକୁ ବିଜେ କରାଇଲେ ପୁଣି ।

ନବୀନ ବର ଆସିବା ଦେଖି ଉଲଙ୍ଗ ଶରୀରରେ ଭସ୍ମଲେପନ କରି ଅଧୋମୁଖରେ ବଳାପମୁଖୀ ବିଳାପ କରି ବସିଲେ । ମାର୍ଜାରମୁଖା ଆଗରେ ଛିଡା ହୋଇ ନୟନରେ ଲୋତକ ଜଳ ପୂର୍ଣ୍ଣ କରି ପ୍ରସନ୍ନ ହୋଇ କହିଲେ, ଏତେ ଆନନ୍ଦ କଉଁ କଥାକୁ (୬୭) ? ଧନ୍ୟ ଧନ୍ୟରେଣ୍ଟୁଶାକମଣ୍ଡମୀ (୬୮) ଗୁହିଁଲ ମାତେ ତ ଏତେ ହରଷ ହେଲୁଣି ପୁଣି ଅଙ୍ଗ ସଙ୍ଗ ହେଲେ, ଅବା କି ହେବଟି ! ବଳାପମୁଖୀ ଜାଣିଲ ମୋହ ସମାନ ତ ପତି ମିଳିଲା, ଏମନ୍ତ ବିଗ୍ଭରି ନିଷ୍ଫଳ ହୋଇ (୬୯) କେମନ୍ତେ ଭେଟିବି ବୋଲି ହୃଦସ୍ଥ ତଟରୁ ଘୁଆ ଭ୍ରମରେ ସ୍ତନୁଟିଏ ଛୁଣ୍ଡାଇ ଧରନ୍ତେ ରକ୍ତ ବହିବାରୁ ହୃଦସ୍ଥତଟ

ବଡ଼ ରକ୍ତବର୍ଣ୍ଣ ଦିଶିଲା । ମାର୍କାରମୁଖା ବିଚାରିଲେ ଏତ ଅପୂର୍ବ ନାରୀ, ହୃଦସ୍ଥ ଚଟରେ ପୁଷ୍ପବତୀ ହୁଅଇ ପରା ! ବିଳାପମୁଖୀ ସ୍ତନ ଛଡ଼ାଇବାରୁ ବ୍ୟାକୁଳରେ ଛଟପଟ ହୋଇ ଭୂମିରେ ପାରି ପଡ଼ନ୍ତେ ଲେଟନ୍ତେ ମାର୍କାରମୁଖା ତୋଳି ଧରିବାରୁ ତା' ହୃଦସ୍ଥ ରକ୍ତଯାକ ଆପଣା ମୁଖରେ ଲଗିଲାମାତ୍ରକେ ତାମ୍ବୁଳ ଭୁଞ୍ଜିଲା ପରି ଦିଶିଲା । ଜିହ୍ୱାରେ ଚାଟିଲା ମାତ୍ରକେ ହୃଦସ୍ଥଜ୍ୱାଳା ଊଣା ହେଲା । ସେଠାରୁ ବିଳାପମୁଖୀ ଉଠି ବସି ବିଚାରିଲା 'ଏ ନାୟକ ମୋ ସମାନ ଗୁଣବନ୍ତ, ମୋଠାରେ ବଡ଼ ସ୍ନେହ କଲେ' ଏହା ବିଚାରି ବୋଇଲା, ହେ ପୁରୁଷ, ମୋତେ ହସାଇବାକୁ ଉପାୟ କର । ହସିଲେ ସିନା ମୁଁ ତୁମ୍ଭଙ୍କୁ ବରଣ କରିବି । ଏହା କହି ଛଡ଼ାଇବା ସ୍ତନୁଟା ହାତରେ ଧଅନ୍ତେ ମାର୍କାରମୁଖା ବିଚାରିଲା, ଏ ଜାମ୍ବୁଫଳ (୭୦) ହେବ ପରା ! ବୋଇଲା, ରେ କୁମାରି, ମୋହୋର ଯେବେ କାନ୍ତ (୭୧)ହେବୁ ତେବେ ଅପୂର୍ବ ଅଳଙ୍କାରମାନ ଦେବି ।

ଗୀତ :

ଦାଉଡ଼ିରେ ଗୁନ୍ଥି ଦେବି କଉଡ଼ିର ମାଳା
ଗେଣ୍ଡାର ସୁନ୍ଦର ନୋଥ ନାକେ ଦେବି ବାଳା,
ଖପରା ପଦକ ଚକ ମୁଣ୍ଡିକାର ବଳା,
ବଡ଼ ବଡ଼ ଗରଗଡ଼ ହାର ଦେବି ଗଳା,
ନେଫେ ଗେରୁ ଗୋଳି ଦେବି ସର୍ବାଙ୍ଗେ ଚର ମୁଖି, (୭୨)
ଜୁଣ (୭୩) କାଟି ବାସ (୭୪) ବୁଣି ପିନ୍ଧାଇବି ସଖି,
ହସ ହସ ରେ,
ତୁ ମୋ ପ୍ରାଣଧନା ହସ ଆସ ଆସ ରେ !

କଥା :

ଏ ଗୀତ ଶୁଣି ବିଳାପମୁଖୀ ବଡ଼ ଆନନ୍ଦରେ କହିଲା, ମୋ ଗଣ୍ଡମଣ୍ଡଳେ କିଛି ଭୂଷଣ କରିବ ନାହିଁ କି ? ଏହା ଶୁଣି ମାର୍କାରମୁଖା ଦୁଇ ହାଥ ପ୍ରସାରି ଦୁଇ ଗାଲରେ ନଷ୍ଟର ଗୃପୋଡ଼ ଦୁଇ ଗୋଟା ପ୍ରବେଶ କରାନ୍ତେ ସବୁ ଦନ୍ତମାନେ ଝଡ଼ି ପଡ଼ିଲେ । ବତିଶ ଦନ୍ତରୁ ଦୁଇ ଦନ୍ତ ହସ୍ତୀଦନ୍ତ ପ୍ରାଏ ରହିଲା, ତେତେବେଳେ ଯାଇଁ ବିଳାପମୁଖୀ ଟହଟହ କରି ପାଚିଲା ହସ ପ୍ରକାଶ କଲା । ପାଚିଲା ହସ କେମନ୍ତ କି ? ନା, ଭଗ୍ନ-ଦନ୍ତରୁଧିରେ ମୁଖ ରଙ୍ଗ ହେବାରୁ ସେ ପାଚିଲା ହସ (୭୫) ହୋଇଗଲା । କୁମାରୀ ମହା ଆନନ୍ଦରେ ବିଚାରିଲା ମୁଁ ଗଣେଶମୂର୍ତ୍ତି ଧଇଲି । ଏମନ୍ତ ବିଚାରି ଯୋଡ଼ହସ୍ତ ପ୍ରାଏ ବାମ ହସ୍ତ ପ୍ରସାରି ଆଉ ସ୍ତନୁଟି ଲଡ଼ୁପ୍ରାଏ ଧଇଲା । ମୁଖ ତ ସିନ୍ଦୁରବର୍ଣ୍ଣ, ଦୁଇଦନ୍ତ ତ ହୋଇଛି, ଉଦର ତ ବେଲହୁଁ ଅନ୍ତୋଳ, କେଶ ତ ଜଟାଭାର ପରି, (୭୬)ଶିରମାନେ ତ

ଅଙ୍ଗରେ ସର୍ପ ପ୍ରାଏ ଶୋଭା ପାଉଛନ୍ତି,(୭୭)ମାତ୍ର ଛିଦ୍ର ନେତ୍ର ନ ଥିବାରୁ ମାର୍ଜାରମୁଖା ଖଣ୍ଡିଏ ଘେନି କପାଳରେ ଚକ୍ଷୁ ଗୋଟିଏ ଖୋଲି ଦିଅନ୍ତେ ରକ୍ତ ଚନ୍ଦନ ଟିକା ଘେନିଲା ପ୍ରାଏ ଦିଶିଲା । ମାର୍ଜାରମୁଖା ବିଚାରିଲା ବଡ଼ ଯୋଗ ହେଲା । ଏ ଗଣେଶମୂର୍ତ୍ତି ଧଇଲେ । 'ଅଗ୍ରପୂଜ୍ୟୋ ଗଣାଧିପ' (୭୮) ଯିନା । ଏହାଙ୍କ ଦରଶନରେ ସମସ୍ତ ବିଘ୍ନ (୭୯) ଯିବେ । ମାର୍ଜାରମୁଖା କହିଲା, ରେ ବାଳା ଏବେ ତ ହସାଇଲୁ, ତେବେ ବରଣ କର; ଶୁଣି ବିଳାପମୁଖୀ ବ୍ୟଥାରେ କଥା କହି ନ ପାରି ମୁଖ ହଲାଇ ହୁଁ ହୁଁ ଥା(୮୦) ସରି ହୁଁ ହୁଁ କରି ବରଣ କରନ୍ତେ ଝଟତି (୮୧) ଦୂତମାନେ ଧାଇଁ ଯାଇଁ ଚଣ୍ଡଚଣ୍ଡ ଗ୍ରାମୁରେ ଜୁମାଖ ବରଣଚରିତ୍ର କହିଲେ । ଚଣ୍ଡଚଣ୍ଡ ଦୂତମାନଙ୍କୁ ବହୁତ ଅଭରଣ (୮୨) ଦେଲେ, ବିଳାପମୁଖୀଙ୍କ ମାର୍ଜାରମୁଖାକୁ ବିଭା କଲେ ।

ଏଥି ଉତ୍ତାରୁ କନ୍ୟାର ଅଙ୍ଗସଙ୍ଗ ସୁଖ ପାଇ ମାର୍ଜାରମୁଖା ବିଚାରିଲା, ଏ ଅଶ୍ୱମୋହିନୀ କାନ୍ତାକୁ (୮୩) ଛାଡ଼ି କରି ପରିଶ୍ରେ(୮୪)ଯିବାର ତ ଉଚିତ ନୋହିଇ । ଚକ୍ଷୁ ଥିଲାକୁ ଯିନା ଗମନା ଗମନ ହେଉଛି; ଏ ଚକ୍ଷୁକୁ ଦିନାକେତେ ଆମ୍ଭେ ପେଡ଼ିରେ ବାନ୍ଧି କରି ରଖିବା । ଏମନ୍ତ ବିଚାରି ନାପିତପୁତ୍ରକୁ (୮୫)ଡକାଇ କହିଲେ, ଆହେ ବାପୁ, ଆମ୍ଭ ଉପକାରେ ବସ୍ତୁଟି (୮୬) ନିଅ, ନହୁଣୀରେ ଆମ୍ଭ ଚକ୍ଷୁ ଖୋଲି କରି ଦିଅ, ଆମ୍ଭେ ପେଡିରେ ବାନ୍ଧି କରି ରଖିବୁଁ । ନାପିତ ସେ ବସ୍ତୁଟି ନେଇ ଚକ୍ଷୁ ଖୋଲି ତାଙ୍କ ହସ୍ତରେ ଦେଲା । ପୁଣି ମାର୍ଜାରମୁଖା କହିଲେ, ଏ ପିନ୍ଧାବସ୍ତ୍ରଟିକ ନିଅ, ଅମ୍ଭଙ୍କୁ ବିଳାପମୁଖୀ ପାଶେ ଛାଡ଼ି ଆସ । ପୁଣି ନାପିତ ଆଉ ବସ୍ତ୍ରଟିକ ନେଲା, ମାର୍ଜାରମୁଖା ବାଲ ଧରି ଘୋସାଡ଼ି ନେଇ ବିଳାପମୁଖୀ ପାଶେ ପ୍ରବେଶ କଲା, ବିଳାପମୁଖୀଙ୍କ ଘେନି ମାର୍ଜାରମୁଖା ବହୁତ ସୁଖଭୋଗ କଲେ । କି ରୂପେ ଭୋଗ କଲେ କି ? ନା, ମଶାଣି ଚଅାଁ ଗୁଡ଼ୁ,(୮୭) କଣ୍ଟକଆଲିଙ୍ଗନ, (୮୮) ମଡ଼ାସଢ଼ା ଚୁମ୍ବନ, (୮୯) ଲଭିରହପାନ, (୯୦) ନାସିକାଚଳା ରସନା, (୯୧) ଘଣ୍ଟିକାଲଗା ଦନ୍ତଘାତ, (୯୨) ହାଡ଼ବୁଢ଼ା ନଖକ୍ଷତ, (୯୩) ଘୋଟକ ସୁରତ, (୯୪) ମହିଷିଆ ବିପରୀତ, (୯୫)ଘଡ଼ଘଡ଼ାହାସ,(୯୬)ନଯୁନପୋଡ଼ାବେଶ,(୯୭) ଜଳଜଳା ଗୃହାଣି,(୯୮)ପରପଞ୍ଚ କହଣି,(୯୯)ଇତ୍ୟାଦିର ନାନାରୂପେ ସୁଖଭୋଗମାନ କରି ଚଉଷଠି ରସ (୧୦୦ )ଭୋଗ କଲେ । ଏକ ଦିନକରେ ସେ ବିଳାପମୁଖୀ ସୁହାସ୍ତ୍ର ମାର୍ଜାରମୁଖାକୁ ପଚାରିଲା, ହେ ନାଥକପର୍ଦ୍ଦୀ, (୧୦୧) ତୁମ୍ଭ ମୋ ପ୍ରୀତି କଉତୁକ ତ ଏ ବ୍ରହ୍ମାଣ୍ଡମଣ୍ଡଳକୁ ରଙ୍କ ପ୍ରାଏ(୧୦୨)ଶୋଭା ପାଉଛି । ଏକଥା ଶୁଣିଲେ ନ ହସିବେ ଏରୂପେ କେହି ଅଛନ୍ତି କି ? ଏରୂପେ ପ୍ରିୟବନ୍ତୀ ପଚାରନ୍ତେ ମାର୍ଜାରମୁଖା କହୁଅଛନ୍ତି, ଆରେ କମଳନେତ୍ରି (୧୦୩) ଚତୁର୍ଦ୍ଦଶ ବ୍ରହ୍ମାଣ୍ଡେ ତୋ ମୋ ପ୍ରୀତି ସାର । ଏହା ଶୁଣିଲେ ମରଣଦଶା ଯାଏ ପ୍ରାଣୀମାନଙ୍କୁ ହାସରୋଗ (୧୦୪) କରିବ, କାନ୍ତକୁ ମାନ କରିଥିବା

ମାନିନୀ, ପୁତ୍ର ମରିଥିବା ଜନନୀ, ଅମୂଲ୍ୟଧନ ହରାଇଥିବା ରଙ୍କ, ରାଜଦଣ୍ଡ ଭୋଗିବାକୁ ବସିଥିବା ଲୋକ, ସଦା ମୂର୍ଖ, ବଟୋଇ ଯକ୍ଷ, (୧୦୫) ସନ୍ୟାସୀ ମୁନି, ଯତି ମଉନୀ, ଆଜନ୍ମରୋଗୀ, ମରମତ୍ୟାଗୀ, ଏମାନଙ୍କର ହେଲେ ଦନ୍ତପନ୍ତି ଦିଶିବ, ଆଉ କାହା ପ୍ରତି ଏଡ଼େ ଧଇର୍ଯ୍ୟ (୧୦୬) ଅଛି ଯେ ସେ ନ ହସିବ, କେବଳ ଚୋରଜଣ ଅବା ନ ହସିବା । କେ କେ(୧୦୭)କି ? ନା :—

ତୁମ୍ଭ ମାତା, ଆମ୍ଭ ପିତା, ତୁମ୍ଭେ, ଆମ୍ଭେ;
ଏ ଚାରି ଜଣ ଶୁଣିଲେ ରହି ପାରି ଦମ୍ଭେ ।

ଏହା ଶୁଣି ବିଡ଼ାଳମୁଖୀ କହିଲା ଆମ୍ଭେ ହସିବା ଏରୂପେ ଆଉ କଥା ଅଛି କି ? ମାର୍ଜାରମୁଖୀ କହିଲା, ଆମ୍ଭେ ହସିବାକୁ କଥା ଅଛି ତେବେ କହିବା ଶୁଣ ।

ଅତି ହାସବିନୋଦ ଏ କଥାର ନାମ,
ହସି ହସି ଅନ୍ତ ଛାଡ଼ିଇ ପ୍ରାଣୀ ଯାଏ ଧାମ(୧୦୮)
ଶୁଣରେ ଶୁଣ, ମଣ୍ଡୂକଅଧର(୧୦୯)ଶୁଣ,
ଅତି ହାସବିନୋଦ କଥାର ଯେତେ ଯେତେ ଗୁଣ ।
ଦକ୍ଷିଣ ଦିଗରେ ତା ଉତ୍ତର ଭାଗରେ
ମୋହମାଳା ନାମେ ଅଛି ଏକଇ ନଗରେ;
ସେ ନଗର ଶୋଭାବନ (୧୧୦) କହୁଛଇଁ ଶୁଣ
ଯାକୁ ରଚି ବିଶ୍ୱକର୍ମା ଶିଳ୍ପା-ବିଦ୍ୟାରେ ହେଲା ନିର୍ବାଣ(୧୧୧) ।

ସାରି ନୀଳା ପୁର, ମର୍କତେ (୧୧୨) ସୁନ୍ଦର; ହାଟକରେ (୧୧୩) ଘଟଣ କେବଣ ମନ୍ଦର, ବୈଡ଼ୂର୍ଯ୍ୟ ବିଦ୍ରୁମ,(୧୧୪)ପଦ୍ମରାଗର(୧୧୫)କମ; ରଜତରୁଅ ବତା, (୧୧୬) ଭିଡ଼ାଗଣ୍ଡି ପାଟସୂତା; ପ୍ରବାଳଦଣ୍ଡ ଶେଣୀ, ତେଜପତ୍ର ଚ୍ଛାଏଣି;

ଇନ୍ଦ୍ର-ନୀଳମଣି ଉରି,(୧୧୭)ହୀରାସାର ଠିକକରି;(୧୧୮)
ପିତୁଳାମାନେ ଦିଶୁଛନ୍ତି ହସି କଥା କହିଲା ପରି ।

ନାଟ ରଙ୍ଗମନ୍ଦର, ଚନ୍ଦନ(୧୧୯)ଉଦର;(୧୨୦)ଦ୍ୱାରଗଡ଼ା ତୋରଣା, (୧୨୧)ଅରଗଳ ଧାରଣା, ବାତାୟନମାନଙ୍କରେ(୧୨୨)ନ ଟଳ ଆଖି ପଡ଼ୁଥାଇ ଧରଣା,(୧୨୩) ରାଜାଙ୍କ ନବର, ପାତ୍ର ମନ୍ତ୍ରୀଙ୍କ ଘର, ଗଡ଼ଘେର ପାଚେରି, ଗମ୍ଭୀର ଜଳୀ ପୁର ମୁଗୁନି ପାଷାଣ କାନ୍ଥି, ଭଣ୍ଡି(୧୨୪)କାଙ୍ଗୋଲ(୧୨୫)ପନ୍ତି ପନ୍ତି, ବଜ୍ରକଠୋର(୧୨୬) କବାଟ,

ବିନା ହୁକୁମେ ପଶିବାକୁ ମାର୍ଜାର ମୂଷାକୁ ନାହିଁ ବାଟ ।
ଅକଳିତ ଦଳ ବଳ, ଗଜ ବାଜୀଏ ପ୍ରବଳ,
ଗୁହ୍ୟକ(୧୨୭)ମାତୁଙ୍ଗ ସେନା, ବଇଶ୍ରବଣ ବାନା (୧୨୮)
ଯାହାର ଚତୁରଙ୍ଗ ବଳ (୧୨୯) ସାଜିଲେ ହରଇ ଚନ୍ଦ୍ର ସୂର୍ଯ୍ୟଙ୍କ ଜ୍ୟୋଛନା ।
ଭିକ୍ଷୁକ ଧାନ ଦୁର୍ଲ୍ଲଭ,(୧୩୦)ପର ଧନେ ଅଲୋଭ, (୧୩୧)
ଘରେ ଘରେ କମଳା (୧୩୨) ମାତା ହୋଇଛନ୍ତି ପରମ ଦୁର୍ଲଭ ।
ଏ ରାଜ୍ୟ ନୃପତି ନାମ, କାନ୍ତିଚନ୍ଦ୍ର ଗୁଣଧାମ,(୧୩୩)
କହି ନୋହେ ବଚନରେ ତାଙ୍କର ଯେତେକ ଗୁଣ ।
କଳିତ ନୃହଇ ବଳ, ଦାନେ କର୍ଣ୍ଣ ନୋହେ ତୁଳ,
ରୂପେ ନବ କାମ କି ସେ ପୁଣି, ପଣ୍ଡିତ ଧାର୍ମିକ ଗ୍ୟାନୀ,
ବିବେକ ମାନୀ, ଖଡ଼୍‌ଗବିଦ୍ୟାରେ ଭୈରବ ସମ, (୧୩୪)
ଧନୁର୍ଦ୍ଧରେ କି ଅର୍ଜ୍ଜୁନ, ଦୟା କ୍ଷମା ଯଶପ୍ରସ୍ତ୍ରି ମଲ୍ଲକର୍ମେ(୧୩୫)କିବା ଭୀମ ।

ଏକ ଦିନେ ସଭା କରି, ବସିଛନ୍ତି ଦଣ୍ଡଧାରି, (୧୩୬)
ପାତ୍ର ମନ୍ତ୍ରୀ କବି ସୁପଣ୍ଡିତ,
ଶୂର ବୀର ସେନାପତି ମଲ୍ଲ ମହାରଥୀ ଛନ୍ତି,
ନାନା ଲୋକେ କେ କରିବ ଅନ୍ତ ।
ଏ ସମଏ ତିନ ଲୋକ, ଏକ ତାଙ୍କର ସେବକ
ଗୁରୁଜନ ଭେଟ ହେଲେ ଯାଇଁ,
ରାଜାଙ୍କୁ କଲେ ଜୁହାର, ବୋଇଲେ ଶୁଣ ନୃପବର,
ଆସିଛୁଁ ଚାକର ହେବା ପାଇଁ ।
ନୃପତି ଶୁଣି ପଚାର, କି ବିଦ୍ୟାକୁ ଅଛି ପାର, (୧୩୭)
କି କି କାର୍ଯ୍ୟ କରିବ ହେ କହ,
କହେ ବ୍ରଜନାଥ କବି, କହିଲେ ସେ ଯାହା ଭାବି
ରସିକେ ଆନନ୍ଦ ଶୁଣି ହୁଅ ।

———

ରାଜାଙ୍କ ବାଣୀ ଏ ତିନ ଶୁଣି, କହନ୍ତି ହରଷି ଶୁଣ ନୃପମଣି ।
ବିଦ୍ୟା ଅପାର ଅଛି ଆମ୍ଭର, କହୁଁ ଏକେ ଏକେ ଶ୍ରବଣ କର ।
ମୁଁ ଯେ ବ୍ରାହ୍ମଣ ଜାଣେ ପୁରାଣ, କାବ୍ୟ ନାଟକ ଅଳଙ୍କାର ପୂର୍ଣ ।

ବେଦବିଦ୍ୟାହିଁ ସବୁ ଜାଣେଇଁ, କେବଳ ଗ୍ରାହକ ଦେଖିଲେ କହି ।
ଏ ଯେ ବଇଦ ଔଷଧି ଭେଦ, ଏହା ନ ଜାଣି ନାହିଁ ଗଛ ପଦ ।
ଏ ଯେ ନରେନ୍ଦ୍ର ଜ୍ୟୋତିଷ ଇନ୍ଦ୍ର, ଏହା ହାଥେ ନବ—ଗ୍ରହାଦି ଇନ୍ଦ୍ର ।
ଏହୁ ଗୃହକର ନାପିତବର, ଏହା ପ୍ରସାଦେ ଏ ସ୍ଥୂଳ ଆମ୍ଭର ।
କେବଳ କଳି କାଳକୁ ଝଳି, ବିଦ୍ୟା କରନ୍ତୁ ଘୃର ଜଣ ମିଳି ।
ତୋଷେ ରାଜନ ହାସ ବିଧାନ, ସେହି ରସେ ଆମ୍ଭେ ମଜ୍ଜାଉଁ ମନ ।
ହୁକୁମ ହେଲେ କହିବୁ ଭଲେ, ଭଲ ଭଲ କହ ରାଜା ବୋଇଲେ ।
ସେ ଦ୍ୱିଜ ତୋଷେ ମନ ହରଷେ, କହେ ବ୍ରଜନାଥ ବିଦ୍ୟା ପ୍ରକାଶେ ।

ହେ ମହାରାଜା, ଶୃଣୁ ଶୃଣୁ (୧୩୮) । ସଅଁ ସଅଁ ଘୃତ (୧୩୯) ଅର୍ଥ କରିବା । ଅମ୍ଭ ସର ସମାନ ପଣ୍ଡିତ ଜଣେ ଆମ୍ଭ ମୁଖରେ ଦେଇ ବେଧ (୧୪୦) ବିଦ୍ୟା ଶୁଣିମା ହୋଉ ।

ଏ କଉତୁକ ଶୁଣି, ସେ ନୃପଚୂଡ଼ାମଣି,
ଖଣ୍ଡମଣ୍ଡନ ନାମେ ଚଣ୍ଡନେଜ ଜଣେ,
ତାକୁ ଇସାରା କଲେ ହାସ ନୟନ କୋଣେ ।
ସେ ଖଣ୍ଡମଣ୍ଡନ ଆସି, ନେଉଳ-ଗୃହାଣି (୧୪୧) ପ୍ରକାଶି
ଝଡ ଝଡ଼ କର ହସି କହିଲା ଆସି,
ଆମ୍ଭ ଆଗରେ ବିଦ୍ୟା କହରେ ଉଆଁସ-ଜଶିର ଶଶୀ(୧୪୨) ।
ଶୁଣି ପଣ୍ଡିତ-ଲିଙ୍ଗ(୧୪୩)କହଇ ବାଣୀ,
ଆରେ ବେଧ-ବିଦ୍ୟା ତୁ କେତେ ପ୍ରକାର ଅଛୁ ଜାଣି ?
କରଡ଼ା(୧୪୪)ତରଡ଼ା(୧୪୫)ସଡ଼ପା(୧୪୬)ଡମ୍ଫଣା (୧୪୭),
ଏ ଘୃର ବେଧ-ବିଦ୍ୟାର ସାର ଭୁ ଶୁଣୁରେ ଫଣଫଣା (୧୪୮) ।

ଶ୍ଳୋକ :—

ଗଣେଶ ମୁଁ ନମୁଛୁ ହୋ ତବ ଭଗ୍ନୀପତି ମୁଁ ଯେ,
ତୋ ବାବୁ ଶଙ୍କର ବଂଶ(୧୪୯)ମୁଣ୍ଡା କରବେ ଚଣ୍ଡିକା (୧୫୦) ।

ଗୀତ:—

ଆରେ ଅସ୍ତୁ ଅସ୍ତୁ ଅସ୍ତୁ,
ତୋ ବଂଶକୁ ସର୍ବଦାକାଳେ କାଳସର୍ପ ବନ୍ଧୁ ଗୋଜ ସୂମର ଗ୍ରସ୍ତୁ (୧୫୧) ।
ବଙ୍କଟ ଢେଙ୍କଟ ମଣ୍ଡୁ କରୁଣ୍ଡା,(୧୫୨)ବିକଟମୁହାଁ ଅତି ଝାମ୍ପୁର ମୁଣ୍ଡା(୧୫୩),

ଲେହ୍ୟ ଲକ୍ଷଣ(୧୫୪)ଶୋହ୍ୟ ଆବୁ,(୧୫୫)ବୈଦିକ ବ୍ରାହ୍ମଣ ଚହ୍ଲେ ଏ ବାବୁ ।
ପାହାନ୍ତି ଖାଇ, ଯେ ବାହାନ୍ତି ଗାଇ, ଗୃହାନ୍ତି କେବଳ ମାଉସୀ ମାଇଁ,
ମାହାନ୍ତି ସାଇଙ୍କା ଥାଆନ୍ତି ବହି ସେ, କାହାନ୍ତି ଏମନ୍ତ ପଣ୍ଡିତ(୧୫୬)ମହାରେ ।
ଏତେ ଲକ୍ଷଣରେ ଆମ୍ଭ କୁଳ ପରିପୂର୍ଣ୍ଣ ସୁଖେ ନ ପାଉଁ ଯେ ଦିନେ
ଉଦରପୂରି ଅନ୍ନ,
ଗୋଦ ଆମ୍ଭର ଗୋଧି ସର୍ପ,(୧୫୭)ଗାଦେ ବଡ଼-ବ୍ୟାଧି,(୧୫୮)ଭଡ଼ି ଦାମ୍ଭୋଡ଼ିଆ
ଯୋଡ଼(୧୫୯)ପଢ଼ୁ ନାହିଁ ସିଧି(୧୬୦) ।
ଏବେ ଶୁଣରେ, ଆମ୍ଭ କୁଳ ମର୍ଯ୍ୟାଦାର ଗୁଣ ରେ ।
ଆମ୍ଭର ବିଭାରେ, କଲ୍ୟ ଯେ ସମ୍ଭାରେ,
ବସିଲେ ସଭାରେ, କୈବର୍ତ୍ତି କୁମ୍ଭାରେ (୧୬୧),
ସାମଗ୍ରୀ ପ୍ରଭାରେ, ଖାଇବା ଲୋଭାରେ,
ବାଦ୍ୟକାରେ ଡର ଭାଜିଲେ ବେଭାରେ(୧୬୨) ।
ଆରେ ଯେତେ ଶୁଣାଇଲି କୁଳବିଦ୍ୟା ପାଠ ଶାଠ,
ଶୁଣି ପଲ୍ଲବିତ ଗଛ ଶୁଖି ହେବ କାଠ(୧୬୩) ।
ପଣ୍ଡିତ ଅଗାର,(୧୬୪) ଆଶୀର୍ବାଦ ହୋଉ ମୋର,
ପଦ୍ମଫୁଲ ପରି ଚର୍ମ୍ମରୂପ ହୋଉ ତୋର (୧୬୫) ।

କଲ୍ୟାଣ ଶ୍ଳୋକ :—

ଅଷ୍ଟଚଣ୍ଡୀ କରାଳୀଚ ଚାମୁଣ୍ଡା ଭଦ୍ରକାଳିକା,
ଖାଇ ବଂଶ ତୁଚ୍ଛା ତୋର କରନ୍ତୁ ନିଜ ମନ୍ଦିର ।
ସନ୍ନିପାତ ତ୍ରିଦୋଷଂ ଚ ଉଦରୀ ଗ୍ରହଣୀ ତଥା,
ଗାଳୁକା କାମଳ ବ୍ୟାଧି ପାଇ ସଙ୍ଗେ ସୁଖୀ ହୁଅ(୧୬୬)।

ଗୀତ :—

ଏ ବାଣୀ ଶୁଣି, ସେ ବ୍ୟାଧିବର୍ଦ୍ଧନ-ଚୂଡ଼ାମଣି(୧୬୭),
ଆଗସର ହୋଇ କହଇ ଆରେ କି କହିଲୁ କି କହିଲୁରେ ଘଣ୍ଟମଣ୍ଡନ ଫଣୀ(୧୬୮) ।
ଆହେ ଶୁଣ ହେ, ଶୁଣ ହେ, ମୋ ବଦ୍ୟ ବିଦ୍ୟା କହିବାକୁ ଏ ବ୍ରାହ୍ମଣିଆ
କି ବୋଲିବେ !
ମୁଁ ବଦ୍ୟମାନଙ୍କର ସାର, ଜାଣଇ ବଦ୍ୟ ବିଦ୍ୟା ଅପାର,
ମୋ ହସ୍ତ ଲାଗିଲେ ମନ୍ଦୁଂବାଲୁକା-ଶଯ୍ୟାକୁ ବଳେ,(୧୬୯) କାଠ ଖଟ ଉଆର ।

ନେତ୍ର ଭିତର, ମୂତ୍ର ଦୁଆର, ମଳର ମଳ
ଏ ସ୍ଥାନମାନ ମୁଁ ଆଗ ଦେଖାଇ ନକ୍ଷତ୍ରଚୂର୍ଣ୍ଣୀରେ ଖୋଳ ।
ମଣିବନ୍ଧ ନାଡିକା ଦେଖିବାର ବେଳେ,
ବାମ ଗୋଇଠି ଉଡ଼େ ମାଡ଼ଇ ମନ୍ତ୍ର ଘଣ୍ଟିକା ମୂଳେ ।
ପେଟ ପିଠି ଲମ୍ଭ ବ-କାଠି (୧୭୦),
ଏତେ ସ୍ଥାନରେ ମୁଦ୍‌ଗର ତାଡ଼ନ କଲେ ତେବେ ସେ ବ୍ୟାଧି ବନ୍ଧ-
ଛାଲ୍‌କା ଘରକୁ ଉଠି ।

ଗୀତ

ପିତ୍ତସା ଦେହେ ମୋ ପିତ୍ତ ବଢ଼ି ଗଲା ସବଳେ,
ପଚାଇଲ୍ଁ ତାହାଙ୍କୁ ପନ୍ଥରେ ଖରବେଳେ,
ସଳେ ସଜନା ଟାଙ୍କରେ ଦେଲ୍ଁ ଚତାମୂଳ,
ପାଟି ପାକୁ ପାକୁ ଛଣ ପିତ୍ତସା ନଷ୍ଟଲ (୧୭୧) ।
ପିତ୍ତନାଶିରେ, ପଛ ପଛ ବୋଲି ପୁଣି କାନ୍ଦନ୍ତ ମାଉସୀରେ । ୧ ।
ଆମବାତ ଧରିଥିଲା ମୋ ଦାଦର ଅଣ୍ଟା,
ଆଠ ଦନ ବର୍ଷା ଡାଲ ତେଲ-ସାରୁଘଣ୍ଟା,
ଚୂଡ଼ୀ ଆଣି ଦଅନ୍ତ ମଇଁଷି ଘୋଳ ଦହି,
ଆଖି ବାଟେ ବାତ ଗଲା ଧଇଁ ସଇଁ ହୋଇ ।
ଆହେ ଶୁଣ ହେ ଆମବାତ ମନ୍ତ୍ରଖିଆ ନାମ ଏ ପାଚନ (୧୭୨)ହେ । ୨ ।
ଦୁର୍ବଳ ଦେହ ବଢ଼ଇ ଏ ଔଷଧ ବଳେ,
ଉପବାସରେ ଖାଇବ ମୁଷ୍ଟିକା ସଳେ ସଳେ,
ଦୁଇଦନ ଘୋଳ ଦହି ନଶିରେ ପିଇବ,
ଦେଖୁ ଦେଖୁ ଗଣେଶ ଅନ୍ତଲ ପେଟ ହେବ,
ଦେଢ଼ ମାସରେ, ଦଶଜଣ କ ତା' ଖଟ ଉଠାଇବେ ଲେଶରେ(୧୭୩) । ୩ ।

କଥା :

କେବଳ ଗ୍ରହମାନଙ୍କୁ ପ୍ରାର୍ଥିତ କଲେଟି ଏରୂପେ ମନୁଷ୍ୟମାନେ ଆରୋଗ୍ୟ ହୁଅନ୍ତ । କ କ ପ୍ରାର୍ଥିତ କ ? ନା, ଶନଙ୍କି ଶୃଙ୍ଗାର, ଗୁରୁଙ୍କୁ ଅଙ୍ଗାର, ମଙ୍ଗଳକୁ ଟେଳା, ରବଙ୍କି ମୂଳା, ଚନ୍ଦ୍ରଙ୍କୁ ଭେକ. ଶୁକ୍ରଙ୍କୁ ଜୋକ, ବୁଧଙ୍କୁ ଚର୍ମ, ରାହୁଙ୍କୁ ରୋମ, କେତୁଙ୍କୁ ଗେଣ୍ଡା, ବ୍ରାହ୍ମଣିଆଙ୍କୁ କୁଣ୍ଡା, ଜଉଡ଼ଷକୁ ନେଉଳ, ଦଣ୍ଡୁଆସିକ ଶେଉଳ, ଭଣ୍ଡାରିଆଙ୍କୁ ମୂତ୍ର, (୧୭୪) ଆମ୍ଭେ ଯେ ଅଟୁଁ ବଦ୍ୟ ପୁତ୍ର !

ମନୁଷ୍ୟମାନଙ୍କଠାରୁ ନେଉଁ ତରଳ ଅଭିସାର ମାଇ ।
ଏମନ୍ତ ବଚନ ବଦ୍ୟ ମୁଖରୁ ବାହାରନ୍ତେ ଶୁଣି ଜ୍ୟୋତିଷମର୍ଦ୍ଦନ,
କୋପେ କହଇ କରେ କ କ କହିଲୁ ବ୍ୟାଧିବେଦନାବର୍ଦ୍ଧନ ।
ଆରେ ଜ୍ୟୋତିଷମର୍ଦ୍ଦନ ମୋହର ପଦ,
ପୌର୍ଣ୍ଣମୀ ଉଆଁସ ଏ ଗ୍ରହ ତିଥି ସାଧି ରଖିଛୁ ଯହିଁରେ ହୁଅଇ ଚନ୍ଦ୍ର ସୂର୍ଯ୍ୟ
ବାପ ପୁଅଙ୍କର ଭେଦ(୧୭୫)

କଙ୍କାଳ ଯୋଗ, (୧୭୬) ଚଉରଶି ଭୋଗ (୧୭୭) ଝିର୍ଣ୍ଣିକା ଲଗ୍ନ (୧୭୮), ହସ୍ତପାଦୁକା ଭଗ୍ନ (୧୭୯) ମୃତବସ୍ତୁ ଖଣ୍ଡ, (୧୮୦) ନାସା ଛେଦନ ନାଡ଼ି, (୧୮୧) ବାଲକସୂତିଛି,(୧୮୨)ବିବାହେ ବିଧବାଗ୍ରତି (୧୮୩)ସପିଣ୍ଡି ଅନୁକୂଳ (୧୮୪), ଶ୍ମଶାନଆ କବଳ(୧୮୫),ନାଡ଼ିଛୁଡ଼ା ଖର(୧୮୬),ଘଡ଼ଘଡ଼ିଆ ତୃଷ୍ଣା(୧୮୭),ଶିଘ୍ରନାଶନନାଗରୀ(୧୮୮
ଏତେ ଯୋଗ ମୋ ପାଞ୍ଜିରେ ବସା କରିଛନ୍ତି ଜିଣିଲି ଦିଲ୍ଲୀ ନାହୋର (୧୮୯) ଆଗରା (୧୯୦) ।

ଏବେ ମହାରାଜାଙ୍କ ଆଗରେ କିଛି ଜୌତିଷ ବିଦ୍ୟା ପ୍ରକାଶ କରୁଛି ।
ତାରା ଦେଖିଲେ ଦିବସ କହି ଖରା ଦେଖିଲେ ରାତି,
ହାଥ ଗୋଡ଼ ଦୁଇ ଦୁଇ ଯାହାର ଥାଇ ସେହିଟି ମନିଷ ଜାତି,
ବାବୁ ପୁଅକୁ ପୁଅ ବୋଲି ପୁଅର ପୁଅ ନାତି,
ଶୁକଲ ବର୍ଣ୍ଣ ସୁନାର ଜ୍ୟୋତି ହଳଦିଆ ରୁପା ମୋତି,
ପାଣି ଭିତରେ ପକ୍ଷୀର ବସା ଗଛରେ ଥାଇ ମାଛ
ମାଇ ଅର୍ଣ୍ଡିରକୁ ପୁରୁଷ ନାରୀ କହି, ମହାରାଜା,
ଏଥିର କଉଁ କଉଁ କଥା (୧୯୧) ମିଛ ?

ସପ୍ତାଙ୍ଗ (୧୯୨) ଶୁଣିବାକୁ ସାବଧାନ ମଣିମା । ଆଜ ଦିବସ ଗ୍ରହ ପହର, ରାତି ପାଞ୍ଚ ପହର, ଗାଏ (୧୯୩) ଛଅ ପହର । ମଙ୍ଗଳବାର ଦିନ ବେଳ ଛଅଘଡ଼ି ଠେକିକ (୧୯୪) ଭିତରେ ଶୁକ୍ରବାର ଆଦ୍ୟରୁଁ ଭେଟଣା ଯୋଗ (୧୯୫) ହେବ । ଧନୁ ଶର ବଣା ଲଗ୍ନରେ ବିଛୁଆତି ଯୋଗ ପଡ଼ୁଛି (୧୯୬) । ଆଜ ମନୁଷ୍ୟମାନେ ବେଳ ଦୁଇ ପହର ଆଠଘଡ଼ି ଭିତରେ ଶଯ୍ୟାରେ ସ୍ନାନ କରି ପାକ ତଣ୍ଡୁଳ ଉପରେ ତରୁଆର କରିବେ ପରା(୧୯୭) ! ମୂଳା ମୀନ ଘେନ ତ ପଖାଳ ଉପରେ ଶନିଙ୍କର ଦୃଷ୍ଟି ପଡ଼ିଲାଣି । ରୋଦର ବ୍ୟାଧି ଏହି ଯୋଗରୁ ହୁଅଇ(୧୯୮) । ମେଷ ବୃଷ ଦୁଇଗୋଟା ଗ୍ରହ ତ ରାଶିଯାକ ଖାଇ ଯାଉଅଛନ୍ତି (୧୯୯) । ଏ ସମ୍ବତ୍ସରେ (୨୦୦) ତେଲ ବଢ଼ ମହରଗ ହେବ । ବଦ୍ୟମାନେ ମୁହଁରେ କ ପକାଇ ରୋଗ ଚିହ୍ନିବେ (୨୦୧) । ଏ ସମ୍ବନ୍ଧରେ ରୋଗୀ ବଢ଼

ବଳବତ୍ତର ହେବେ । ତୈଳ ବିନା ତ ସଂସାର କିଛି ହେବାର ଦିଶୁ ନାହିଁ । କେବଳ ଏହି ଶୁକ୍ଲ ଉଆଁସ ବେଳ ନଅଘଡ଼ିଠାରେ ଚନ୍ଦ୍ର ଗ୍ରହଣ ଛିଟାଙ୍କ ଦେଉ (୧୦୨) ଲାଗୁଛି । ଚନ୍ଦ୍ରଙ୍କୁ ପଶ୍ଚିମ ଦିଗରୁ ହୋଇ ଲାଗିଯିବ (୧୦୩) । ଏହିତ ଦାନ୍ତ ଘସି ବସିଲଣି (୧୦୪)ମହା ଚଡ଼ାଇଙ୍କି ପଡ଼ାଲକ୍ଷଣୀ ଗିଳିବ(୧୦୫) । କୁମ୍ଭାର ଚକ ବୁଲୁଥିବା-ଯାକ ମଙ୍ଗଳ ଅଛି ନୋହିଲେ ଗଉଡ଼ୁଣୀ ପରି ହୁଳହୁଳି ଦେଇ ଡେଇଁଲଣି (୧୦୬) । ବୁଦ୍ଧିର ଦୋଷ ? ବିଗୁରିଲେ ପେଟା ଭଣ୍ଡାର ସବୁ ବୁଡାଇଲା ।

ଏ ସମ୍ବତ୍ସରରେ ଗୋଦାନ୍ତ ପୁରାଣେ ଲେଖୁଛି (୧୦୭) ପହିଲି ଖେଉଦୁଆ ଧନୁମାସରେ ସ୍ତ୍ରୀମାନେ ପୁରୁଷମାନଙ୍କୁ ବଶ ହେବେ । ମୀନ ତୁଳ ହେଲକ୍ଷଣୀ ଖଣ୍ଡୀ ବ୍ରାହ୍ମଣୀ ହାତେ ଅଡ଼ା ପଡ଼ିବ । ଏ ଦେଶ ଅନ୍ନ ବଡ଼ ସୁଲଭ ହେବ । ପ୍ରାଣୀମାନେ ପିମ୍ପୁଡ଼ି ଗାଡ଼ ଖୋଳି ଧାନଘର କରିବେ (୧୦୮) । କଙ୍କଡ଼ା ମାସରେ ମେଘ ଖଣ୍ଡେ ଘୋଟିବ ବୋଲି ଲେଖୁଛି । ବିଜୁଳି ଗୋଟାଏ ମଧ୍ୟ ଦେଖାଯିବ । ବରଷା ବଳବତ୍ତର ହେବ ଯେ କେବଳ ପୃଥ୍ୱୀରେ ଜଳବିନ୍ଦୁ ପଡ଼ିବ ନାହିଁ ପରି !

ସାଗର ଭିତରେ ରହିବ ଅଢ଼େଇ ହାଥ ପାଣି,
ଦଶ ବିଶ କୋଶେ ରହିବେ ଦୁଇ ଏକ ପ୍ରାଣୀ ।

ଶାଗୁଣାମାନେ ବଳବାନ ହେବେ । ନାପିତମାନେ ସେ ପିଣ୍ଡରୁ ବହୁତ ଧନ ପାଇବେ ।

ଏହା ଶୁଣି ନାପିତ କହିଲା କରେ ଜୈାତଷିଆ, ଏ ଗ୍ରନ୍ଥରେ ମୋ ନାଆଁରୁ କାହିଁକି ଧରିଲୁ ?

ଆହେ ମଙ୍ଗଳସ୍ଥାନ ବଂଶରେ(୧୦୯)ମୁଁ କାଳକୁଣ୍ଡଳୀର ପୁତ୍ର(୧୧୦)
ଉଜ୍ଜ୍ୱଳ କାକବର୍ଣ୍ଣ ମୋ ବେନ କୁଳ ଗୋତ୍ର(୧୧୧),
ବିବାହ କାଳରେ ମୁଖାଗ୍ନି ଦିଅଇ, ବନ୍ଦାପନା କାଳରେ ଉଚ୍ଛିଷ୍ଟ ଅନ୍ନ ଖୁଆଇ,
ନଖ କାଟିଲେ ମଣିବନ୍ଧ ଛୁଟିକଇ, ଉଦର ହେଲା ଲୋକ ମଲି ମଲି ଡ଼ାକଇ,
ଚିରଇ କାଠ ଯେ ଖୋଳଇ ମସ୍ତ, ଏମନ୍ତ ପ୍ରକାରେ ମୋ ଖୁର ନଚୁରୁଣୀ ଯହିଁ.
ଶିରହଣା ପୁତ୍ର ମୁଁ ମୋର ରକ୍ତହିଣ୍ଡୋଳ ନାମ,
ମୋ ହାଥ ଯା ମୁଣ୍ଡେ ଲାଗଇ ତାକୁ ବିହି ହୁଅଇ ବାମ ।
ମୋ କାନ୍ତା ଅମଙ୍ଗଳମୁଖୀ ଯହିଁ ହୁଳହୁଳି ଦିଅଇ,
ସେ ଧନ ରଜକ ତାର ଖଟ ଶେଯ ନଅଇ । (୧୧୨)

ପୃଷ୍ଠ କୂର୍ମ କର ତୈଳଘଟ ସ୍ଥାପଇ,
ଶୁଷ୍କ ମାଂସ ଉପରେ ଥୋଇ ଚଡା ଭସ୍ମେ ଲେଖଇ । (୨୧୩)
କାଫଡ଼ଚର୍ଣ୍ଣ ନାଶାରେ ଭର ବଧବା ନାଗ୍ରୀ ଝିଣ୍ଟି ଦିଅଇ(୨୧୪,)
ବେଢ଼ ମାର ହୁଳହୁଳ ଦଅଇ ପରମାୟୂଷ ଖଣ୍ଡଇ (୨୧୫),
ଏମନ୍ତେ ଆମ୍ଭ କୁଳ ଲୋକେ ଯଉଁ ଗ୍ରାମକୁ ଗଲେ,
ସେ ଗ୍ରାମ ନଷ୍ଟ କର ଆନ ଗ୍ରାମକୁ ଯୋଟନ୍ତି । (୨୧୬)
ଯଉ ଗ୍ରାମ ସେବା କରୁ ଆମ୍ଭ କୁଳ ଜାତ,
ବଡ଼ପିତା ପିତା ପୁଣ ନାତ ପଣନାତ;
ପରଲୋକେ ପ୍ରବେଶ କରନ୍ତ ଏକାବେଳେ,
ଆମ୍ଭ ଘେନ ଯମ ଦେବତା ଅଛୁ ଅପ୍ରବଳେ । (୨୧୭)

ନୃପଗ୍ରଣ ହେ,
ଆମ୍ଭ ଘର ଜଣର ଏ ଗୁଣ ହେ ।

ଏହା ଶୁଣି ସେ ରାଜସଭା ଲୋକେ ବହୁତ ହାସ ପ୍ରକାଶ କଲେ । ସେ ଘର ଜଣଙ୍କୁ ରାଜା ବହୁତ ଧନ ଦେଲେ ।

ମାର୍ଜାରମୁଖଠାରୁ ଏହାଶୁଣି ବଳାପମୁଖୀ ମାଧୁର୍ଯ୍ୟ ହାସ ପ୍ରକାଶ କରନ୍ତେ ଲମ୍ବ ଓଷ୍ଠ ଯାଇଁ କର୍ଣ୍ଣରେ ଲାଗିବାରୁ ମନେ ହେଲା କି କାଳୌକା ଦୁଇଗୋଟି ଅବା ଅସ୍ଥି ଖଣ୍ଡ ଜଡ଼ଗଲେ (୨୧୮) । ସେ ହାସ ପ୍ରକାଶ ହୁଅନ୍ତେ ପାଏ ପର୍ଯ୍ୟନ୍ତ (୨୧୯) ଘୋର ଅନ୍ଧାର ଦିଶିଲା । ସନ୍ଧ୍ୟା ହେଲା ବୋଲି ପେଚକମାନେ ସଞ୍ଚାର କଲେ । ଜନମାନେ ଭାବିଲେ ଏ କି ଉତ୍ପାତ ପ୍ରବେଶ ହେଲା । ଏହି ଅକସ୍ମାତ କଥା ଶୁଣିପାର ପିତା ଚଣ୍ଡଚକ୍ର ବିଚାରିଲେ ଏ କନ୍ଦଳକାରୀ ଦୁହିତା (୨୨୦) ଥିଲେ ତ ଅଚିରାତ୍ ସଂସାର ପ୍ରଳୟ ହେବ । ଏମନ୍ତ ବିଚାର ଦୂତମାନଙ୍କୁ ଆମ୍ଭ କେମାଦେଇଙ୍କର ବିବାହ ତ ହେଲା, ତାଙ୍କ ଯୌତୁକ ସାମଗ୍ରୀମାନ ଘେନାଇ ସେ ଦୁହିତାଙ୍କୁ ନେଇ ଜାମାତାଙ୍କ ପୂର୍ବ ଆଶ୍ରମରେ ପ୍ରବେଶ କରାଅ । ଦୂତମାନେ ଏମନ୍ତ ଶୁଣି ବେଙ୍ଗ, ଏଣ୍ଡୁଅ, କଙ୍କଡ଼ା, କୋଚଥା ଏମାନଙ୍କୁ ଧରି ଆଣି ତାଙ୍କଠାରେ ଘାର ବୋଝ ବୁହାଇ ଝିଅ ଜୁଆଁଇ ଦୁହିଙ୍କ ଗଳାରେ ଫାଶ ଲଗାଇ ନେଇ ପୂର୍ବ ଆଶ୍ରମ ମୂଷିକ ଗର୍ତ୍ତରେ ପ୍ରବେଶ କରି ଅଇଲେ । ଏତେବେଳେ (୨୨୧) ଅନ୍ଧାର ନିବର୍ତ୍ତିଲା । (୨୨୨) ସଂସାର ଜନମାନେ ଆନନ୍ଦ ହେଲେ ।

ହାସବିନୋଦ କଥା ସମ୍ପୂର୍ଣ୍ଣ ହେଲା ।

ଏହା ଶୁଣି ଚଞ୍ଚଳାକ୍ଷୀ ଅତ୍ୟନ୍ତ ଆନନ୍ଦରେ ହାସ ପ୍ରକାଶ କଲା । କହିଲା, ହେ ବନ୍ଧୁ, ଏ କଥା ଶୁଣି ମନ ବଡ଼ ଆନନ୍ଦ ହେଲା । ଏବେ ଆଉ କଥା ଗୋଟିଏ କହିବା ହେଉ ।

—ଃ✳ଃ—

## ରସବିନୋଦ କଥା

ପୁଣି ଚଞ୍ଚଳାକ୍ଷୀ ବୋଇଲା ହେ ବନ୍ଧୁ, ରସବିନୋଦ ବୋଲି ଯଉଁ କଥା ସେ କଥା କେମନ୍ତ ପ୍ରକାର କହିଲେ ଶୁଣନ୍ତୁ । ମୋହନାଙ୍ଗ ବୋଇଲା ରେ ଧନ, ତୋ ହୃଦରେ ତ କନ୍ଦର୍ପ ଦୀପ ଜଳୁଛୁ(୧) ତହିଁରେ ଏ ରସ ପଡ଼ିଲେ ଅଥଏ (୨) ହୋଇ ଥାଉ ? ଚଞ୍ଚଳାକ୍ଷୀ କହିଲା ତୁମ୍ଭ ଲାବଣ୍ୟ ନଦୀ ତ ନିକଟରେ ଅଛି, ଯେବେ ଅତ୍ୟନ୍ତ ଜ୍ୱଳିତ ହେବ ତେବେ ତହିଁରେ ବୁଡ଼ିଲେ ସାମ୍ୟ ହୁଅଇ ସିନା (୩) ! ଏହା ଶୁଣି କୁମାର ଅତ୍ୟନ୍ତ ସ୍ନେହରେ କହିଲା ତେବେ ରସବିନୋଦ କଥା କହିବା ଶୁଣ ।

ଶ୍ଳୋକ :

ରସଃ ପ୍ରାଣୀ ପ୍ରାଣାଦପି ଚ ନିଖିଳାନାଂ ସୁଖକରେ-(୪)
ରସଜ୍ଞତା ଲୋକେ ବରତନୁଧରଶ୍ରେଦନପଶୁଃ । (୫)
ରସାଭ୍ୟାସୀ ନିତ୍ୟଂ ଭବତି ହି ଚ ମୂର୍ଖୋଽପି ଗୁଣବାନ୍ (୬)
ରସସ୍ତସ୍ମାଦ୍ଦେତୋ ସ୍ଥି ଦେବ-ନର-ନାଗାଦ୍ୟଭିମତଃ । (୭)

କଥା :

ସେ ଯେ କାଞ୍ଚନବତୀ ନାମେ ଏକ ନଗର ଅଛି; ପୂର୍ଣ୍ଣକାମ ବୋଲି ସେ ରାଜାର ନାମ । ସେ ରାଜାଙ୍କ ମଣୋହି ସ୍ୱପକାର (୮) ଚନ୍ଦ୍ରକର ବୋଲି ଏକ ବ୍ରାହ୍ମଣ ଥିଲା । ତାହା କୁମାରୀ ନାମ ହେମାଙ୍ଗୀ । ସେ ହେମାଙ୍ଗୀ ଏକ ଦିନକରେ ସନ୍ଧ୍ୟାକାଳରେ ପୁରଦ୍ୱାରରେ ଛିଡ଼ା ହୋଇ ରାଜମାର୍ଗକୁ ଚାହିଁଥିଲା । ଏହି ସମୟରେ ସେହି ରାଜ୍ୟ ମନ୍ତ୍ରୀପୁଅ ତରୁଣକାନ୍ତ ଅଶ୍ୱ ଆରୋହଣ କରି ଗମନ କରୁଥିଲା । ହେମାଙ୍ଗୀକି ତା' ପୁର ଦ୍ୱାରରେ ଦେଖିଲେ ତା' ଶୋଭାରେ ମୋହିତ ହୋଇ ଲୌହଚୁମ୍ବକ ପରି ତା'ଠାରେ ଚକ୍ଷୁ ଜଡ଼ିତ ରହିଲା(୮) । ଅଶ୍ୱକୁ ଜୋଡ଼ାଇବା ଅଗ୍ରରେ(୯)ରଖି ହେମାଙ୍ଗୀକି ଅପଲକ

ହୋଇ ଗୃହିଛୁ, ସେ ହେମାଙ୍ଗୀ ତରୁଣକାନ୍ତଙ୍କୁ ଦେଖି ତା ଶୋଭାରେ ମୋହିତ ହେଲା । ଏରୂପେ ଦୁହେଁ ଦୁହିଁଙ୍କଠାରେ ଆସକ୍ତ (୧୦) ହେଲେ । ଦଣ୍ଡେ ଉତ୍ତାରୁ ହେମାଙ୍ଗୀ ଚନ୍ଦ୍ରରେ ଲଜ ପ୍ରବେଶ ହୁଅନ୍ତେ ଚଞ୍ଚଳ ନେତ୍ରଗତିରେ ଗୃହିଁ ଅଳପ ହସି ପୁର ଭିତରକୁ ଗଲା । ଚନ୍ଦ୍ର ଆଲୋକରେ ଚନ୍ଦ୍ରକାନ୍ତମଣି ତରଳିଲା ପରି ବା'ଳା ସ୍ତବାଙ୍ଗଯାକ କାମ ରସରେ ଦ୍ରବ ଯାଉଛୁ । ସେଠାରୁ ମନ୍ତ୍ରୀପୁଅ ବଡ଼ କଷ୍ଟରେ ପୁରକୁ ଗଲା । ଅଶ୍ୱରୁ ଉତୁରି ସେବକ ଲୋକମାନଙ୍କୁ ବୋଇଲା ଶଯ୍ୟା ପାରି ଦିଅ । ଦେହରେ ତ ଅତନୁ-ଜ୍ୱର (୧୧) ଘୋଟିଲାନ, କୁମାରୀଠାରେ ଧ୍ୟାନ ରଖି ଶଯ୍ୟାରେ ଶୟନ କଲା । ତେଣେ ହେମାଙ୍ଗୀ କୁମାର ରୂପ ଧ୍ୟାନ କରି ବାଉଳ (୧୨) ପରି ହୋଉଛୁ । କୁମାର ଅଶ୍ୱ ଉପରେ ଚଢ଼ି ଯଉ ରୂପେ ଅଙ୍ଗଭଙ୍ଗି କରୁଥିଲା ସେହି କେବଳ ଦିଶୁଛୁ । ଅଙ୍ଗହିଁ ଚମକି ପଡ଼ୁଛୁ । ପୁରଜନମାନେ ଏହା ଦେଖି ପଗ୍ଚରିଲେ, କଲେ, ଏ କି କଥା ? ତହିଁକି କିଛୁ ନ କହଇ । ଚକ୍ଷୁ ବୁଜି କୁମାର ଧ୍ୟାନରେ ଏକଚିତ୍ତ ହୋଇଛୁ । ଏମନ୍ତେ କୁମାରୀଚେଷ୍ଟା(୧୩) ଦେଖି ସମସ୍ତେ ବିଗ୍ଚରିଲେ, ଏ ତ ଦିନେ ଏରୂପ ନୁହଇ ଆଜି ଏ କି କଥା ! କେ ବୋଲଇ ଉନ୍ମାଦ, କେ ବୋଲଇ ଦେବତା, କେ ବୋଲଇ ବାତ, କେ ବୋଲଇ ପିତ, ଏରୂପେ ନାନାମତେ ତର୍କଣା (୧୪) କରୁଛନ୍ତି । ମରମ କଥା କେ ଅବା ଜାଣିବ, ହେମାଙ୍ଗୀର ମନ ନୟନ କେବଳ ତରୁଣକାନ୍ତଠାରେ ରହିଲା । ମୁଖରେ ମାତ୍ର ଏତିକି ବୋଲୁଛୁ, 'ବାଜୀ ପରେ ମୋ ଜୀବନ ନେଉଛୁ' (୧୫) । ଏହା ଅବା କେ ଠଉରାଇବ । (୧୬) ଏରୂପେ କୁମାରୀ ବିରହରେ ବଡ଼ ଦୁଃଖିତ ହେଲା ।

ଏଣେ ତରୁଣକାନ୍ତ ଅଙ୍ଗରେ ଅନଙ୍ଗ ଶର ବୃଷ୍ଟି (୧୭) କରିବାରୁ ସବୁ ସୁଖ ବିଷପରି ଲାଗିଲାଣି । ଅଧରୁ ହାସ, ମନରୁ ରସ, କଣ୍ଠରୁ ବାସ୍ନ, ସରିକି ଅନ୍ତର ହେଲା । ହେମାଙ୍ଗୀଠାରେ ଏକମନ ହୋଇ ଭୂମି କରି ଏତିକି ମାତ୍ର ବୋଲୁଛୁ !

'ତରଙ୍ଗ ନୟନ ଅଧର ରଙ୍ଗ, ଅଳପ ହାସପ୍ରକାଶ କି ରଙ୍ଗ(୧୮),
କର୍ଣ୍ଣ ଯାଏ ଖେଳୁଥାଇ ଅପାଙ୍ଗ (୧୯), ହା ହା ନ ପାଇଲେ ଗ୍ଭଡ଼ିବ ଅଙ୍ଗ ।'

ଏ ଗୀତ ପଦକ ବୋଲୁଥାଇ, ଆଉ ପଗ୍ଚରିଲେ କିଛୁ ନ କହଇ । ଏମନ୍ତେ କୁମାର ବେଦନା ଶୁଣି ମନ୍ତ୍ରୀ ଯାଇଁ ଦେଖିଲେ, ଏ କି ବେଦନା କିଛୁ ଠଉରାଇ ନ ପାରିଲେ । ବଦ୍ୟମାନଙ୍କୁ ଡକାଇ କହିଲେ, 'ତରୁଣକାନ୍ତର କି ବେଦନା ହେଲା ଦେଖ ।' ବଦ୍ୟ-ମାନେ ଦେଖି ବହୁତ ଉପାୟ କରନ୍ତେ କିଛୁ ଗୁଣ ନୋହିଲା । ବେଳୁଁ ବେଳ ବିରହ ବେଦନା ବଳବତ୍ତର ହେଲା । ଆହାର ନ ରୁଚିବାରୁ ଅଙ୍ଗ ଦୁର୍ବଳ ଦଶାକୁ ବହିଲା । ମୁକ୍ତା ସୁବର୍ଣ୍ଣ ରୂପା ତମ୍ବା ଅଭ୍ର ବଙ୍ଗ ଇତ୍ୟାଦି ଭସ୍ମମାନଙ୍କେ ନାନା ଔଷଧରେ ତିଆରି

ଇଶ ବଅନ୍ତେ ଉଭଏ ମାଝ ସ୍ଥିଣ ନ କଲ (୨୦) । ତାହାର ତ କୁମାରୀଅଙ୍ଗସଙ୍ଗରତି ଇଚ୍ଛାରେ ମନ ଅଛି, ଔଷଧରେ କାହିଁ ଭଲ ହେବ ?

ତେଣେ ହେମାଙ୍ଗୀ ଦଶା ବେଳକୁ ବେଳ ପ୍ରବଳ ହେଲା । କେବଳ ଅଜ୍ଞାନରେ ଚକ୍ଷୁ ବୁଜି ପଲଙ୍କରେ ଶୋଇଥାଇ, 'ବାଛା ପରେ ମୋ ଜୀବନ ନେଉଛୁ ବୋଲି ଚେତା ହେଲ ବେଳେ ବୋଲୁଥାଇ । ସୂପକାର ଚନ୍ଦ୍ରକର ଦୁହିତାର ଏ ଦୁଃଖ ଦେଖି ବଡ଼ ଚନ୍ତାର୍ଥୀ ହେଲ ।କୁମାରୀଙ୍କ ଅନ୍ନ ନ ରୁଚିବାରୁ ଅନେକ ରୋଚକ (୨୧) ଦ୍ରବ୍ୟମାନ ତିଆର କଲ । ସହଜେ ତ ସେ ସୂପକାର, ପିତା ରନ୍ଧକ ଭଲେ ପହ୍ନାର ପିତା (୨୨) ବୋଲନ୍ତି ନର । କଉଁ କଉଁ ଦ୍ରବ୍ୟ ସଜାଡ଼ିଲ କ ? ନା, ଅରୁଚି ଛଡ଼ା ଗୁଇ (୨୩), ଜିଭ୍ୟା ସରସା କାଞ୍ଜି (୨୪), ପଥ୍ୟ ପଦ୍ମସ୍ତା ପିତ୍ତ(୨୫),ପତରଚଟା ଡାଲି(୨୬),ପଲହହ୍ନ୍ୱ ପଖାଳ (୨୭), ଇନ୍ଦୁ ଚୂଉଲା ଟଭାଡ଼ାଣି (୨୮), ବାସନସନ୍ନ ପାଣି (୨୯), ଚଉଚଞ୍ଚଲା ଚଟ୍ଣି(୩୦),ମନମସ୍ତୁରା ଶାକ(୩୧), ମନରସା ଶାକର ରସ (୩୨), ନାସିକାହର ମହୁର (୩୩), ବଚଷରସ ପାଚଲ (୩୪), କବଳଚର୍ବ କଡ଼ି (୩୫), ଘଚଣାରୂପା ଘଣ୍ଟା (୩୬), ରୋଗୀରୋଚନ ଭଜା(୩୭),ନାରଙ୍ଗକମଳା କୋଷ(୩୮), କପିତ୍ଥଥଟତନ୍ତୁଳ ରସ (୩୯), କର୍କଟୀ ଖଣ୍ଡଗୁଡ଼ (୪୦), ତରୁଭୁଜ ସପୁର, ନାଡ଼ ନାରକେଳ (୪୧), ଦ୍ରାକ୍ଷାଫଳ, ଆମ୍ବ ଲେମ୍ବୁ ବୀଜପୁର, ଅଦା ମଞ୍ଜା ଅଙ୍ଗୁର—ଏରୂପେ ଷଡ଼ ରସରେ (୪୨) ନାନା ଦ୍ରବ୍ୟମାନ ବାଢ଼ି ମାଆ ମାଉସୀ ଖୁଡ଼ୀ ଖୁଡ଼ୁତା ଅଜା ଆଈ ଏ ସମସ୍ତେ ବସି କୁମାରୀଙ୍କ ଉଠାଇ ମୁଖ ଧୋଇ ପୋଛି ଆଶ୍ୱାସି (୪୩) କହିଲେ, ଆରେ କୁମାରି ପଥ୍ୟ କର, ପ୍ରାଣ ଉପରେ ପଡ଼ିଲଣିଟି, ଏମନ୍ତ କହି ସେ ଦ୍ରବ୍ୟମାନଙ୍କରୁ କିଛି କିଛି ନେଇ ଦଅନ୍ତେ. ଥାଉ ଖାଇବାର, (୪୪) ଅଧରେ ଲାଗିଲ ମାତ୍ରକେ ନାଁ ନାଁ ଉଁ ହୁଁ, ଛି ଛି, ଥୂ ଥୂ, କରି ଜିଭରେ ନ ଲଗାଇଲା । ଯେତେ ଯତ୍ନ କଲେ ପ୍ରଥମୁଁ ନ ଛୁଇଁଲା । ଅନ୍ନ ବନା କୁମାରୀ ମହାଦୁର୍ବଳ ହେବାରୁ ସମସ୍ତେ ମନେ କଲେ—ଏ କଷ୍ଟେ ନ ଜୀଇବ (୪୫) । ଚନ୍ଦ୍ରକର ମନରେ ଚନ୍ତା କରି ବହୁତ ଖେଦନ କଲା । ବଦ୍ୟମାନେ ବେଦନା ଚହ୍ନି ନପାରି ନବର୍ତ୍ତିଲେ । (୪୬)

ତେଣେ ମନ୍ତ୍ରୀପୁଅ ତରୁଣ କାନ୍ତର ଏହିରୂପେ ପ୍ରାଣ ମାତ୍ରକ ଅଛି ।
'ତରଙ୍ଗ ନୟନ ଅଧର ରଙ୍ଗ, ଅଳପ ହାସପ୍ରକାଶ କି ରଙ୍ଗ,
କର୍ଣ୍ଣଯାଏ ଖେଳୁଥାଇ ଅପାଙ୍ଗ, ହା ହା ନ ପାଇଲେ ଛାଡ଼ିବ ଅଙ୍ଗ ।'

ଅଜ୍ଞାନ ହେଲବେଳେ ଏହି ପଦକ ବୋଲୁଥାଇ । ଆଉ କିଛି ନ କହଇ । ଏମନ୍ତେ ସେ ବେଦନା ବେଳକୁ ବେଳ ପ୍ରବଳ ହେବାରୁ ମନ୍ତ୍ରୀ ବଦ୍ୟମାନଙ୍କୁ ଡକାଇ ବଡ଼ ଦୁଃଖ

କର କହିବାରେ ବଇଦ୍ୟମାନେ ଏକମଣ୍ଡଳୀ ହୋଇ (୪୭) ଭାଳନ୍ତେ ୪୮ ରସପୂର ନାମେ ଏକ ବଇଦ୍ୟ ଜଣେ ଥିଲେ ଯେ ସେ କହିଲେ କି, ଏ ବେଦନା ତ ବାତପିତ୍ତ-ଶ୍ଳେଷ୍ମାଜନିତ ନୁହଇ, ଏ ଉପାୟରେ କି ରୂପେ ଭଲ ହେବ, ନର୍ମଦା ମୂର୍ଚ୍ଛିକ ପରି କିକ ହୋଇଥାଇ ? ତହିଁକି ସମସ୍ତେ କହିଲେ, ସେ କଥା କେମନ୍ତ କି ? ତାହା କହ ଶୁଣିବା । ରସପୂର କହୁଛନ୍ତି :

ସେ ଯେ ତମାଳକାନ୍ତି ନାମେ ଏକ ନଗର ଅଛି । ତହିଁରେ ରତ୍ନଶେଖର ନାମେ ଏକ ବଣିଆ ଜଣେ ଥିଲା ଯେ, ସେ ବଣିଆ ବାଣିଜ୍ୟ କରିବାକୁ ମନ୍ଦର ଦ୍ୱୀପକୁ ଗଲା । ସେଠାରେ ବାଣିଜ୍ୟ କରିବାରେ ବହୁତ କାଳ ଗଲା । ନର୍ମଦା ନାମେ ତାର ଏକ ନାରୀ, ସେ ପୁଣି ଅତ୍ୟନ୍ତ ସୁନ୍ଦରୀ । ପୁଣି ତାର ନବୀନ ବୟସ । ଏମନ୍ତେ ତା ପତି ବିଦେଶରେ ବହୁତ କାଳ ରହିବାରୁ ସେ ନର୍ମଦାର କାମପୀଡ଼ା ପ୍ରବଳ ହେଲା । ଏକେ ତ କୁଳବଧୂ, ବୁଝେ (୪୯) ଭଲଲୋକ ଘରବନ୍ଧୁ, ଏଥିରେ ମନକଥା ଅବା କାହାକୁ କହିବ । ଅହର୍ନିଶିରେ ବିରହ ଦୁଃଖରେ ବିବଶ ହୋଇ ଥାଇ । ଏକ ଦିନକରେ ତାହାର ଜାତି କିଶୋରଚନ୍ଦ୍ର ବୋଲି ବଣିଆ ପୁଅ ଜଣେ ସେ ଏହା ପୁରଠାକୁ କିଛି କାର୍ଯ୍ୟ ପ୍ରସଙ୍ଗରେ ଆଇଲା । ନର୍ମଦାର ତାହାର ଚକ୍ଷୁରକ୍ଷ (୫୦) ହୁଅନ୍ତେ ଦୁହେଁ ତ ତରୁଣ ତରୁଣୀ, ଦୁହିଙ୍କ ମନ କାମକେଳିରେ ବଡ଼ ଲୋଭ ହୋଇଛି, ଦୁହିଙ୍କି ଦୁହେଁ ମନ୍ଦହାସରେ ଗୃହିଁ ଅଙ୍ଗସଙ୍ଗ ହେବା—ଏ ରୂପେ ଠାରିଠାରି ହେଲେ । କିଶୋରଚନ୍ଦ୍ର କହିଲା, ଆଜ ମୋତେ ଜାଣା (୫୧) କର । ନର୍ମଦା କହିଲା, ମୁଁ କିରୂପେ ତାହା କରି ପାରିବି, ଗୃହରେ ତ ସମସ୍ତେ ଅଛନ୍ତି ? ତହିଁକି କିଶୋରଚନ୍ଦ୍ର କହିଲା, 'ଯାହାର ମନ ଯହିଁକି, ସେ ସାଗର ଲଙ୍ଘେ ତହିଁକି ।' ଭୁ ପ୍ରସନ୍ନ ହେଲେ ତୋ ମୋ ଭେଟ ଅବଶ୍ୟ ହେବ । ଆଜି ତ ଅନ୍ଧାର ରାତି, ତୋ ଅବଧାନ (୫୨) କରିଥିଲେ ଆସିବି । ନର୍ମଦା କହିଲା, ତେବେ ବାଡ଼ିବଉଳ ବୃକ୍ଷ ତଳକୁ ଯାଇଥିବ, ସେଠାକୁ ଆଇଲେ ଭେଟ ହେବା । ଏମନ୍ତ କହି ହସି ଅପାଙ୍ଗ ଚାଳି ଗୃହାକ୍ରାନ୍ତ କିଶୋରଚନ୍ଦ୍ର ଆନନ୍ଦରେ ଗଲା । ଏମନ୍ତେ ନିଶି ପ୍ରବେଶରେ ଅନ୍ଧାର ଘୋଟନ୍ତେ କୁଟ୍ଟାଭିସାରୀମାନେ (୫୩) ଅଭିସାର (୫୪) କରିବାକୁ ବାହାରିଲେ । ଚୋରମାନେ ଖନ୍ତ (୫୫) ଘେନି ଚଳିଲେ, ଖଦ୍ୟୋତମାନେ (୫୬) ଉଡ଼ିଲେ, ନିଶାଚରମାନେ (୫୭) ବିହରିଲେ । ମନେ ହେଲା ଏ ସନ୍ଧ୍ୟାକାଳ ନୁହଇ ନିଶାନାୟିକା ଅବା କଳାମେଘୀ ଶାଢ଼ୀ ପିନ୍ଧି, ଫୁଲ ଅଳଙ୍କାର ମଣ୍ଡି ହୋଇ ଅଭିସାର କରିବାକୁ ବାହାରିଲା । ଏ ସମୟରେ କିଶୋରଚନ୍ଦ୍ର କନ୍ଦର୍ପ-କେଳି-ଦ୍ୱନ୍ଦ୍ୱ-ଆନନ୍ଦ-ଚିତ୍ତରେ (୫୮) ନର୍ମଦାଠାକୁ ଗଲା । ସଙ୍କେତ ବଉଳ ବୃକ୍ଷ ତଳେ ନର୍ମଦା ତନୁ ସୁବେଶ କରି ରଥଶ୍ରଦ୍ଧାରୁ ପୂର୍ବରୁ ବସିଅଛି, ଏହିକାଳେ କିଶୋରଚନ୍ଦ୍ର ମିଳନ୍ତେ ଗଙ୍ଗା ସାଗର ଭେଟ ହେଲାପରି ଦୁଇଜଣଯାକ ଆନନ୍ଦ ହେଲେ । କାମ ପ୍ରବଳରେ ତୁ

ମଣ୍ଡ ଲକ୍ଷକରଣୀ (୫୯) ପ୍ରାଏ ହୋଇଥିଲା; ନାନାପ୍ରକାରରେ ସୁରତ କଉତୁକ କରି ପ୍ରେମ ରସରେ ବୁଡ଼ିଗଲେ । ଆଲିଙ୍ଗନ, ଦନ୍ତଘାତ, ନଖକ୍ଷତ ଇତ୍ୟାଦି ସଂଯୋଗରେ ନର୍ମଦା ତନୁ ଭିନ୍ନଭିନ୍ନ ହୋଇଗଲା । ସୁରତରସବଶେ ଅଜ୍ଞାନ କାଳରେ କଣ୍ଠୀରଚନ୍ଦ୍ର ସେ ନର୍ମଦା କଣ୍ଠରୁ ମୁକ୍ତାମାଳୀ ଫିଟାଇ ଅଣ୍ଟାରେ ରଖିଲା । ରାତ୍ରି ଶେଷ ହୋଇଥିବା ଗୃହିଁ ମୁକ୍ତାମାଳି ଘେନି ନର୍ମଦାଠାରୁ ମେଲାଣି ହୋଇ ବାହାରିଗଲା । ନର୍ମଦା ଆପଣା ଘରେ ମିଳ ପଲଙ୍କରେ ଶୋଇଲା । ଅଙ୍ଗରେ ତ ଦନ୍ତଘାତ ନଖକ୍ଷତମାନ କରୁଛି, "ରାତ୍ର ପାହାନ୍ତେ ନର୍ମଦା ଦେଖିଲା କଣ୍ଠରେ ମୁକ୍ତ ମାଳା ନାହିଁ, ବିଚାରିଲା କଣୋରଚନ୍ଦ୍ର ନେଲା । ମର୍ମ କଥା ଅବା କାହାକୁ କହିବ । ଏମନ୍ତେ ଅତି ବିମୁଖରେ (୬୦) ଚକ୍ଷୁରେ ଲୋତକ ଠକାଇଲା (୬୧) ପର ଦିନ ପୁରଜନମାନଙ୍କ ଆଗକୁ ଯାଇଁ କହିଲା କି ଆଜି ମୋ ଧନ ଜୀବନ ଉପରେ ବ୍ୟାଘାତ ପଡ଼ିଲା । 'କି କଥା ଗୋ' ବୋଲି ପଚାରନ୍ତେ କହିଲା, ଏ ରାତ୍ରରେ ମୁଁ ପଲଙ୍କରେ ଶୋଇ ମୁକ୍ତାମାଳା କାଢ଼ି ଶେଯ ଉପରେ ଥୋଇଥିଲି । ମତ୍ତ ମୂଷିକେ (୬୨) ଆସି କେତେବେଳ ମୁକ୍ତାମାଳ ନେଇଗଲା ମୁଁ ତାହା ନ ଜାଣେ । ପୁଣି ଶେଯ କାଟୁଥିଲା । ମୁଁ କର କେଉଟାଇ ଶୋଇଲାବେଳେ ଦନ୍ତ ନଖରେ ମୋତେ ବିଦାରି ପକାଇଲା । ଦେଖ ମୋ ଦେହରେ କେତେ ଚିହ୍ନ ବସିଛି । ଏତେବେଳଯାଏ ଜ୍ୱାଳା ଊଣା ହୋଇ ନାହିଁ । ମୁକ୍ତାମାଳୀ ଗଲା । ଏବେ କି ବୁଦ୍ଧି କରିବି । ଏହା ଶୁଣି ପୁରଜନମାନେ ବଡ଼ ବିଷାଦ ହେଲେ (୬୩) । ବୋଇଲେ ଏ ବିପତ୍ତିସୂଚକ (୬୪) । ଆଏ କ୍ଷତ ପୁଣି ପ୍ରାଣ ପୀଡ଼ା । ଏରୂପ ସମସ୍ତେ ମିଳି ସେ ଘରେ ଥିବା ମୂଷା ଗାତମାନ ଖୋଳାଇ କାନ୍ଥ ବାଡ଼ ଭାଙ୍ଗି ଗୃହରେ ବସାମାନ ଖୋଜନ୍ତେ ହାର ନ ମିଳିଲା । ମୁକ୍ତାମାଳା ଅମୂଲ୍ୟ ଦ୍ରବ୍ୟ, ତାହା ନ ପାଇବାରୁ ବଡ଼ ଚିନ୍ତାରେ ସମସ୍ତେ ଦୁଃଖିତ ହେଲେ ।

ସେହି ନିକଟରେ ମାଳତୀ ବୋଲି ଏକ ବ୍ରାହ୍ମଣୀ ଜଣେ ଥିଲା ଯେ ତାହାର ବିଟ ପୁରୁଷସଙ୍ଗ ପ୍ରୀତି (୬୫) ଥାଏ, ସେ ଏ ଚରିତ ଶୁଣି ରତ୍ନଶେଖରପୁରଠାକୁ ଅଇଲା, ନର୍ମଦାକୁ ଦେଖି ବିଚାରିଲା ଏ ତ ମୂଷିକ ଦନ୍ତଘାତ ନୁହଇ, ଏହା ସଙ୍ଗେ ରାତିରେ ଥିଲା ଯଉଁ ରସିକ ସେ ମାଳ ଘେନିଗଲା । 'ତଚ୍ଛି ଜନନ୍ତି ତଦ୍‌ବିଦଃ' (୬୬) ସାପ ଗୋଡ଼ ସାପକୁ ଦିଶଇ ସିନା (୬୭) ? ଏମନ୍ତେ ପୁରଜନମାନଙ୍କୁ କହିଲା, 'ଆଗୋ ମାଆମାନେ, ଶ୍ରେଷ୍ଠା ଦ୍ୱାର ନାଗି (୬୮) ଯେମନ୍ତେ ସିଂହଦ୍ୱାର ଜଗଇ, ମୂଷିକ ଗର୍ତ୍ତ ଖୋଳିଲେ କି ମୁକ୍ତାମାଳୀ ମିଳଇ ।' ଏହା ଶୁଣି ନାରୀମାନେ କହିଲେ, ଆଗୋ ମାଳତୀ ନାନି, ଏ କେମନ୍ତ କଥା କହ ତେବେ ଶୁଣିମା । ବ୍ରାହ୍ମଣୀ କହିଲା, ଏ ବଡ଼ ରହସ୍ୟ କଥାଟିଏ, ତେବେ କହିବା ଶୁଣ ।

ସେ ଯେ ରସସାଗର ନାମେ ଏକ ନଗର ଅଛି । ସେ ରାଜ୍ୟ ରାଜା ନାମ ଅମରକନ୍ଦ, ତାହାଙ୍କ ନଗରରେ ରତିପ୍ରିୟା ବୋଲି ଏକ ପାଳଙ୍ଗ (୬୯) ଥିଲା; ସେ ରତିପ୍ରିୟା ସଙ୍ଗେ ଯେହୁ ନଗ୍ର କଟୁଆଳ ପୁଅ ସୁବଳ ସିଂହ ପ୍ରୀତି କରିଥାଏ । କିରୂପେ କି ? ନା ସେ ରାଜା ରାତିରେ ବାହାର ଅବକାଶ (୭୦) ହେଲା ବେଳେ ସ୍ତ୍ରୀବେଶ ଧରି ନଗରରେ ପଶଇ, ରତିପ୍ରିୟା ପୁରେ ରହି ତା ସଙ୍ଗେ କ୍ରୀଡ଼ା କରି ରାଜା ବାହାର ଅବକାଶ ସାରି ନଗରକୁ ଆସିବାବେଳ ଜାଣି ସିଂହଦ୍ୱାର ବାଟେ ବାହାରି ଆସଇ । ସେ ତ କଟୁଆଳ, ନଗ୍ର ବୁଲି ଯାଏ । ସେ ସିଂହଦ୍ୱାରରେ ଶ୍ରେଷ୍ଠ ଦ୍ୱାରୀ ଜଣେ ଜଗିଥାଏ । ଆଉ ଦ୍ୱାରୀମାନେ ଘରକୁ ଯାଆନ୍ତି । ସେ କଟୁଆଳ ପୁଅ ନଗର ଭିତରକୁ ଗଲା ଅଇଲା ବେଳରେ ପ୍ରତିଦିନ ଶ୍ରେଷ୍ଠ ଦ୍ୱାରୀ ଡାକୁଥାଏ 'କିରେ, କେ ଗଲା ରେ, ଦେଖ ତ ରେ, ଖବରଦାର ରାଜା ଘରଟି ଏ ବାବୁ' ଏରୂପେ ବୋଲି ଥାଇ । ଶ୍ରେଷ୍ଠ ଲୋକ ତ ଧାଇଁ ଯାଇ ନ ପାରେ । କଟୁଆଳ ପୁଅ ନିତ୍ୟ ବିଚାରୁଥାଏ, ଶ୍ରେଷ୍ଠ ମୋହର କଣ୍ଟକ ହେଲା । ଏଠାରୁ କିରୂପେ ଏ ଯିବ, ଏମନ୍ତେ ଏକ ଦିନକରେ ରତିପ୍ରିୟାକୁ ଭୋଗକରି ନଗର ଭିତରୁ ଆସନ୍ତେ ଶ୍ରେଷ୍ଠ ଦ୍ୱାରୀ ଡାକିଲା, 'ଆରେ କେ ଗଲା ରେ, ଦେଖ ରେ ଦେଖ ରେ' ବୋଲନ୍ତେ କଟୁଆଳ ପୁଅ ସତ୍ୱର ହୋଇ ଆସି ଅନଳ ଖଣ୍ଡେ ଯେଉଁ ଶ୍ରେଷ୍ଠ ଥିବା ପାଖ ସ୍ଥଳରେ ଫୋପାଡ଼ି ଦେଇ ନଗରକୁ ବୁଲି ଗଲା । ଏ ସମୟରେ ଅଗ୍ନି ଜଳି ଉଠି ଦ୍ୱାର ପୋଡ଼ିଲା । ଲୋକ ଧାଇଁ ଆସୁ ଆସୁ ସିଂହଦ୍ୱାର ଜଳି ଗଲାଣି । ରାଜା ନଗରୁଁ ବାହାରି ଆସି ଦ୍ୱାରୀ ଶ୍ରେଷ୍ଠକୁ ଡକାଇ ଆଜ୍ଞା ଦେଲେ 'ଆରେ ଦ୍ୱାରୀ ଶ୍ରେଷ୍ଠ, ତୁ ସିଂହଦ୍ୱାର ପୋଡ଼ି ଦେଲୁ, ଏହା ହାଥ କାଟି ପକାଅ ରେ ।' ଏମନ୍ତ ଆଜ୍ଞା କରନ୍ତେ ଦ୍ୱାରୀ ଶ୍ରେଷ୍ଠ ହାଥ ଯୋଡ଼ି କହିଲା, ମହାରାଜା, ମୋଂ ଛାର ଦ୍ୱାର ପୋଡ଼ି ପାରଇ ? ଗୋସାଇଁ ରାଜା ବୋଲି ଅଦୋଷେ ଦଣ୍ଡିବ, ତହିଁକି ହାଜର ଅଛି (୭୧) । ହେଲେହେଁ ମୋହୋର ଦୋଷ ନାହିଁ । ଅଦୋଷେ ଦଣ୍ଡିଲେ ଅଧର୍ମ ପାଇବ । ଆଉ ଜଏ ଏହା କରିଥିବ ତାହା ତଲସ (୭୨) ହୋଉ ।

'କୁଞ୍ଜଗଲୀ ଶାରୀ ଚର୍ମୀ ପରବାରୀ ଏକ ମଲା ଏକ ଗଲା,
ମଞ୍ଜରୀ କୁମାରୀ ଦଣ୍ଡ ଶିରଧାରୀ କଥା କେହି ନ ବୁଝିଲା ।'

ହେ ମହାରାଜା, ଏରୂପେ ନିକ ହୋଇ ଥାଇ । ତହିଁକି ରାଜା କହିଲେ, ଆରେ ଶ୍ରେଷ୍ଠ, ଏ କେମନ୍ତ କଥା କି ? ସେଠାରୁ ଦ୍ୱାରୀ ଶ୍ରେଷ୍ଠ କହୁଛି, ହେ ଚକ୍ରବର୍ତ୍ତି ନୃପତି, ଶୁଣିବାକୁ ସାବଧାନ ମଣିମା ।

ଯେ ଯେ ସିଂହଳ ଦ୍ୱୀପରେ କାଳସୁନ୍ଦର ଶିଠ ନାମେ ଏକ ମହାଜନ ଜଣେ ଥିଲା । ତାହା ସମ୍ପତ୍ତି କହି ତ ନୁହଇ, ଯାହାକୁ ଲକ୍ଷ୍ମୀ ପ୍ରସନ୍ନ ହୋଇ ବର ଦେଲେ

କ—ଚନ୍ଦନପୁରରେ ଚନ୍ଦନ ପହ୍ଣର ରହିବ ତୋ ପୁରରେ ପହ୍ଣରେ ରହୁଛ । ଏଇରୂପେ ବର ପାଇବାରୁ ତାହାର ଅଚଳାଚଳ ସମ୍ପତ୍ତି ହେଲା । ସୁବର୍ଣ୍ଣ ରୂପା ତମ୍ବା କଂସା ଇତ୍ୟାଦ ଦ୍ରବ୍ୟମାନ କେ ପଗ୍ଭରଇ; (୭୩) ହୀରା ନୀଳା ମୋତି ମାଣିକ୍ୟ ବୈଡ଼ୂର୍ଯ୍ୟ ବଦ୍ରୁମ ଗୋମେଦ ମରକତ ଇତ୍ୟାଦ ରତ୍ନମାନ ଯାହାର ଗଣ୍ଠିରେ ମାପ ହୁଅଇ (୭୪) ଇନ୍ଦ୍ରହିଁ ତାକୁ ଭଣ୍ଡାରୀ ପ୍ରାଏ ଦଶନ୍ତ (୭୫) । ସେ ମହାଜନର ମନ୍ତ୍ରୀସ୍ଥ ବୋଲି ଏକ କୁମାରୀ ଥିଲା । ସେ ରୂପରେ ତ୍ରିଭୁବନ ମୋହ ପାଉଇ । କଣ୍ଠରେ ପାନ ବୋଲ ବଶଇ । ଗ୍ଭଲିବା ବେଳେ ପାଦରୁ ପଦ୍ମ ଉଠୁଇ (୭୬) । ଭାଷା କହିଲେ ଅମୃତ ବରଷଇ । ହସି ଗ୍ଭହିଁ ମୋହିବା ମନ କଲେ ଯୁଗ ଯୁଗାନ୍ତ ଯୋଗୀମାନେ ଯୋଗ ଗ୍ଭତ୍ତ ଭୁଲିବେ । ସେ କୁମାରୀଙ୍କ ଚମ୍ପା ବୋଲି ପରିବାରୀସ୍ଥିଏ ସେବା କରୁଥାଇ । ପୁଣି ସେ ମନ୍ତ୍ରୀସ୍ଥ କୁତ୍ତଳୀ ନାମେ ଶାରୀଟିଏ ପୋଷି ଥାଏ । ପୁଣି ସେ ଶାରୀର ଆଚମ୍ବିତ ଗୁଣ । କ ଗୁଣ କି ? ନାଁ, ଯାହା ଶୁଣଇ, ଯାହା ଦେଖଇ ତାହା ପଢ଼ଇ । ଏଣୁ କର ମନ୍ତ୍ରୀସ୍ଥ ତାକୁ ପ୍ରାଣରୁ ଅଧିକ କର ପାଳୁଥାଇ । ଏମନ୍ତେ ସେହି ପୁରର ଆଉ ଏକ ମହାଜନ ଜଣଙ୍କର ପୁଅ ଗିରଧାରୀ ଦତ୍ତ ବୋଲି ସେ ମାଳସୁନ୍ଦର ଶିଠ ପୁରଠାକୁ କନ୍ଥ କାର୍ଯ୍ୟ ପ୍ରସଙ୍ଗରେ ଯିବା ଆସିବା କରୁଥାଇ । ଏକ ଦନକରେ ମନ୍ତ୍ରୀସ୍ଥ ଗବାକ୍ଷ ମାର୍ଗରେ ବାହାର ପ୍ରରକୁ ଗ୍ଭହିଁଥିଲା, ଗିରଧାରୀ ଦତ୍ତର ତାହାର ଚତୁରାକ୍ଷ ହେଲେ । ମନ୍ତ୍ରୀସ୍ଥଙ୍କ ଗ୍ଭହିଁ ଦତ୍ତ ବଗ୍ଭରିଲା, କ ଶୋଭା ଏ ? ହେମଲତା ମାଡ଼ିଛୁ, କ ବଜୁଳି ଛୁଡ଼ୁଛୁ, କ ରତ୍ନସିଖା ବେଢ଼ିଛୁ, କ ଚନ୍ଦ୍ରକଳା ବଢ଼ିଛୁ କ ଶରଚ୍ଚ କ ଲେଉଡ଼ୁଛୁ (୭୭) । ଏଥିରେ ତ କଛୁ ଅନୁମାନ ଘଟୁନାହିଁ । ଏ ନଷ୍ଟେ ଯୁବାଜନ ମରିବା ବଗ୍ଭର କନ୍ଦର୍ପ ଅମୋଘ (୭୮) ବାଣ କବାଉଛୁ (୭୯) । ଦତ୍ତର ଏମନ୍ତ ବଗ୍ଭର ସମଏ ମନ୍ତ୍ରୀସ୍ଥ ଅଳ୍ପ ହସି ନେତ୍ର ଗଡରେ ଗ୍ଭହିଁ ଅନ୍ତର ହୋଇ ଯାଆନ୍ତେ ଗିରଧାରୀ ଦତ୍ତ ଚକ୍ଷୁ ଫୁଟିଗଲା ପର ହୋଇ ଆଉ କଛୁ ନ ଦଶିଲା । ଦେହରେ ମଦନ ପୀଡ଼ାହିଁ ହେଲା । ସେଠାରୁ ଆସି ବଗ୍ଭରିଲା 'ଏ ପ୍ରାଣ ପଞ୍ଚକେ ଯିବ ଏହା ସଙ୍ଗ ଲଭିବ କ ? ବଗ୍ଭରିଲାକ ବୁଦ୍ଧି କରିବ ।' କାମମଞ୍ଜରୀ ନାମେ ଏକ ମାଲୁଣୀ ଥିଲା ଯେ ସେ ମନ୍ତ୍ରୀସ୍ଥଙ୍କ ଫୁଲ ନାଗୁଆ କର (୮୦) ଦେଉଥାଏ । ଗିରଧାରୀ ଦତ୍ତ ଏହୁ କଥା-ସନ୍ଧି ପାଇ (୮୧) ଶହେ ସୁବର୍ଣ୍ଣ ଘେନ କାମମଞ୍ଜରୀ ପୁରକୁ ବୋଲି ଗଲା । ଗିରଧାରୀ ଦତ୍ତକୁ ଦେଖି କାମମଞ୍ଜରୀ ବଡ଼ ଆଦରରେ ଆସନରେ ବସାଇଲା, ବୋଇଲା କ ଗୋ, ମୋର ଆଜ କ ଭାଗ୍ୟ ଏ । ଅପୂର୍ବ ପଦାର୍ଥ ଦେଖା ଦେଲେ । ଏବେ କ କାର୍ଯ୍ୟରେ ବଜେ କଲ ତାହା କହ । ଦତ୍ତ କହିଲା, ମୁଁ ଯହିଁକି ଆସିଛୁ ତୁ ସହି କଲେ ସିନା କହିବ । ମାଲୁଣୀ କହିଲା, କ ଗୋ, କ କହୁଛ, ତୁମ୍ଭଙ୍କୁ ନ ଦେଇ ଆଉ କାହାକୁ ଦେବ ? କହିଲେ ଅଙ୍ଗ ସମର୍ପିବ, (୮୨) ପ୍ରାଣ ସରିକ ଦେବ, (୮୩) ଏ ମୋହର ପ୍ରମାଣ (୮୪) । ସେଠାରୁ ଦତ୍ତ କହିଲା, ମୁଁ ମାଳସୁନ୍ଦର ଶିଠ ପୁରଠାକୁ

ଯାଇଥିଲି । ବାହାରପୁର ଗବାକ୍ଷ ମାର୍ଗରେ ଗୃହିଁଥିଲା । ଏ ସମୟରେ ତା ମୋ ଦୃଷ୍ଟି ଏକ ହୋଇବାରୁ ଅଲକ୍ଷ ହସି ନେତ୍ର ଗତରେ ଗୃହିଁ ଅନ୍ତର ହୁଅନ୍ତେ ଏତେବେଳେ ମୋ ପ୍ରାଣ ଯାଉଛୁ । ଯେବେ ତାଅଙ୍ଗସଙ୍ଗ କରିଦେବୁ ତେବେ ଜୀବନ ରହିବ ନୋହିଲେ ନ ଜୀଇଁବ । ଆଉ ଉପାୟ ନ ଦଶିଲାକୁ ତୋଠାକୁ (୮୫) ଅଇଲି (୮୬), ଶଙ୍ଖେ ସୁବର୍ଣ୍ଣ ହଅ । ତା ମୋ ଅଙ୍ଗସଙ୍ଗ ହେଲା ଉତ୍ତାରୁ ପୁଣି ଯାହା ମାଗିବୁ ତାହା ଦେବି, ତୋ ବାପ୍ପରଲେ ଏକଥା ଅବଶ୍ୟ ହେବ । ତା ନୟନ ଭଙ୍ଗିରୁ ଜାଣିଛୁ ସେ ମୋଠାରେ ଅବଶ୍ୟ ସ୍ନେହ କରିବ । ଏବେ ମୋ ପ୍ରାଣ ତୁ ରଖ । ଏହା ଶୁଣି କାମମଞ୍ଜୀ ହସି କହିଲା, ମଦନପୀଡ଼ା କେମନ୍ତ ଯେ ! ଏତେବେଳେ ମନ କେତେ ଆସେ (୮୭) ହୋଉଥାଇ ! ଯୁବାଯୁବତୀଙ୍କ ସଙ୍ଗସୁଖଭୋଗ ସ୍ୱର୍ଗରେ ନାହିଁ ପର ! ଯତ ଯୋଗୀ ଭୋଗୀ ତ୍ୟାଗୀ ଏମାନଙ୍କର ଜନ୍ମ ବିଫଳ ସିନା ! ଯାହା ଦେହରେ ତରୁଣୀତନୁ ଲଗି ନାହିଁ ତାହାର କି ଭୋଗ ! ନାରୀ ଅଭାବେ ଇନ୍ଦ୍ର ସମ୍ପଦ ବ୍ୟର୍ଥ । ଅସ୍ତୁ, ମୁଁ ମଞ୍ଜୁଳୀ ସଙ୍ଗେ ତୁମ୍ଭକୁ ଭେଟ କରିବି । ତୁମ୍ଭେ କିଛି ନ ବାପ୍ପର ଧଇର୍ଯ୍ୟ ହୁଅ(। ୮)। ଦତ୍ତ କହିଲା, ଆଜି ନୋହିଲେ ଜୀବନ ନ ରହିବ । ନିଜ ତୋ କଥା ସେ ଘେନି ନ ଥାଇଟି ? ମୋତେ ଭରସା କରି କହ । କାମମଞ୍ଜୀ କହିଲା, "ଇନ୍ଦ୍ରର ଶଚୀ, କାମର ରତି, ନଳର ଦମୟନ୍ତୀ, ସୂର୍ଯ୍ୟର ଛାୟା—ଏମାନଙ୍କର ମୁଁ ତରଳ କରିପାରଇ କାୟା, (୮୯) ମଞ୍ଜୁଳୀ ଗ୍ରୁର ମନଙ୍କୁ (୯୦) ସିନା ।

କଳଙ୍କଲଗା କଳା, କାମତରଳା ସିନ୍ଧୁର,
ହିତାହିତକର ଧୂଳି, ମଦନମତ୍ତ ମାଳୀ,
ତନୁ ତରଳା ତେଲ, ଜୀବନଘେନା ଫୁଲ,
ଛନ ଛନକା ପାଣି, ମୋହ ଶିରୋପା ମଣି,
କାଉଁରୀ କାମମଞ୍ଜୀ,

ଯତ ସତୀ ମନରଞ୍ଜନ କରି ଚରଣତଳେ ଖଟାଇ ପାରଇ।କାମମଞ୍ଜୀ(୯୧) । ଆଜ ତୁମ୍ଭଙ୍କୁ ତାସଙ୍ଗ ନ କଲେ ମୋତେ କାମକୁଞ୍ଜୀ (୯୨) ବୋଲି ଡାକିବ । ଏମନ୍ତ କହି ମଞ୍ଜୁଳୀର କତ୍ୟାନ (୯୩) ଫୁଲ ଗୁଚ୍ଛି ଆଉ ଅଧିକ କରି ଅପୂର୍ବ ମାଳୀ ଖଣ୍ଡିଏ ଗୁଚ୍ଛି ଧଇଲା । ଦତ୍ତକୁ କହିଲା, ତୁମ୍ଭେ ଥାଅ, ମୁଁ ତାଠାକୁ ଫୁଲ ଘେନି ଯାଉଛୁ । ଏମନ୍ତେ କାମମଞ୍ଜୀ ଯାଇଁ ମଞ୍ଜୁଳୀ ପାଖେ ମିଳି ନାଗୁଆ ଫୁଲ ଦେଇ ଅଧିକ ଫୁଲ ଖଣ୍ଡି ହସି ଦିଅନ୍ତେ, ମଞ୍ଜୁଳୀ ବୋଇଲା, କିଲୋ, ଆଜି ତ ଏଡ଼େ ସୁନ୍ଦର ମାଳ ଆଣିଛୁ । କାମମଞ୍ଜୀ କହିଲା କିଛି ମାଗିବ ବୋଲି ଭେଟିଲି । ମଞ୍ଜୁଳୀ ବୋଇଲା, ପୁଣି କି ମାଗବୁ, ଆସ ତେବେ ତୋଟାପୁର ଆଡେ ଯିବା । ଏମନ୍ତେ କାମମଞ୍ଜୀ ମଞ୍ଜୁଳୀ ତୋଟାପୁର (୯୪) ଆଡ଼େ

ଗଲେ । ଯାଇଁ ଅଶୋକ ଗଛ ମୂଳେ ଚନ୍ଦ୍ରକାନ୍ତମଣି ଉପରେ ବସିଲେ । କାମମଞ୍ଜରୀ କହିଲା, ଆରେ ଦେଇମଣି, ଛଗ ପଦ୍ୟଟିଏ ଗାଇବ ଶୁଣିବୁ କି ? ମନ୍ତ୍ରୀ ବୋଇଲା, ପଢ଼ ଦେଖି, ସେଠାରୁ କାମମଞ୍ଜରୀ ପଢ଼ୁଛି :—

ଛଗ

"ଅତି ସୁରୂପା ଚମ୍ପକଚମ୍ପା ଭ୍ରମର ନ ଯାଇଁ ପାଶ ରେ,
ମୁଁ ନ ଯାଉ ବନ ପାଟ ଫୁଟିଅଛୁ ପୁରୁଷର ନାହିଁ ଆଶ ରେ । ୧ ।
କଟି ସରୁଆ କୁଚ ଗରୁଆ ଏଥି କଉଁ ରସ ନାହିଁରେ,
ରସିକ ହାଥରେ ଯେବେ ନ ପଡ଼ିବ କେ ଭୋଗ କରିବ ଆଉରେ । ୨ ।
ଲଜ୍ଜା ହିଁ ବଢ଼ିଲା କଢ଼ି ହିଁ ଧରିଲା ଫୁଟି ଚମ୍ପଟିଲା ବାସରେ,
ଭୟରେ ଭ୍ରମର ପଶି ପାରୁ ନାହିଁ ଘେରିଉଛୁ ଚଉପାଶ ରେ" । ୩ ।
ଏହା ଶୁଣି ମନ୍ତ୍ରୀ କହିଲା, ତେବେ ମୁଁ ଗୋଟିଏ କହିବ ଶୁଣ ।
"ଅତି ମଧୁର ଶୀତଳ ନୀର ବହୁଛୁ ନିର୍ମଳ ନଈ ରେ,
ତୃଷା କଲା ଲୋକ ଆସି ପିଇବ କି ସେଠାକୁ ଏ ପିବ ବହିରେ ?" ୪ ।
କାମମଞ୍ଜରୀ ପଢ଼ୁଛି :—
"ସରଗ ଶଶୀ କି ଶୋଭା ବଶି ତାକୁ ଅନାଇଲେ କେ ବା ନ ରସି,
ରସିଲେ ପାଇବ କାହିଁ ରେ ?
ହାଥ ପାଇବ କି ଗୋଡ ପାଇବ ବହିଥିବ ସିନା ଗୃହିଁରେ ?" । ୫ ।
ମନ୍ତ୍ରୀ କହୁଛି :—
"ପଥର ଦେଇଲେ କବାଟ ପଡ଼ିଛୁ ହସ୍ତୀ ପଶି ନ ପାରଇରେ,
କୋଳପ କଣ୍ଠରେ କଳ ଫିଟାଇଲେ ଅଳପକେ ଫିଟିଯାଇ ରେ" ।୬।(୯୫)

ଏମନ୍ତେ ପଦ୍ୟଲ ସଇଲା (୯୬) । କାମମଞ୍ଜରୀ କହିଲା, ରେ ଦେଇମଣି, କଥାଏ କହନ୍ତୁ ଯେ ଡର ମାଡ଼ୁଛି । ମନ୍ତ୍ରୀ ବୋଇଲା ଡରୁଛୁ କାହିଁକି, କହ । ମାଲୁଣୀ କହିଲା, ଗବାକ୍ଷ ମାର୍ଗରେ ବାହାର ପୁରକୁ ଗୃହିଁଥିଲୁ । କାହା ଉପରେ ଖଞ୍ଜନ ନୟନ (୯୭) ପଡ଼ିଲ କି ? ଏବେ ସେ ମର ଯାଉଛି । ଯଉଁ ନୟନ କୋଣେ ଗୃହିଁଲେ ମହେଶ ଧୃତି ଟଳଇ, (୯୮) ଯୁବା ପୁରୁଷ ଧୃତି ଗ୍ରୁର କେତେକ ? ଯେବେ କହନ୍ତୁ ତାଙ୍କୁ ଆଣି ଭେଟାନ୍ତି ! ମନ୍ତ୍ରୀ ବୋଇଲ ଏ କିରୁପେ ହେବ, କଉଁଠାରେ ଭେଟ କରିବୁ ? କାମମଞ୍ଜରୀ ବହିଲ, ତୁ ସମ୍ମତ (୯୯) କଲେ ଏହି ପୁରେ ଭେଟାନ୍ତି । ଏମନ୍ତେ ଆଣିବ ଯେ କାହାର ଗୋଚର ନୋହିବ । ମନ୍ତ୍ରୀ କହିଲ, ମୋ ପାଶେ ତ ଚମ୍ପୀ ଶୁଅଇ, ସେ

ଜାଣିବ ପରା । କାମମଞ୍ଜରୀ କହିଲା, ତାକୁ ଏମନ୍ତ ମୋଦକ ଦେବ ଯେ ଖାଇଲେ ଦୁଇ ଦିନ ଯାଏ ଅଗ୍ୟାନ ହେବ । ମନ୍ତ୍ରଣୀ ବୋଇଲା, ମୋର ତ ଭରସା ପାଦ ନାହିଁ, ତୁ ଯେବେ କରି ପାରିବୁ କର । ମନ୍ତ୍ରଣୀ ଏମନ୍ତ କହନ୍ତେ କାମମଞ୍ଜରୀ ମୋଦକଟିଏ ଅଣ୍ଟିରୁ କାଢି କରି ଦେଲା । ବୋଇଲା ମୁଁ ପୂର୍ବରୁ ଜାଣି ଆଣି ଥିଲି । ତୁ ମାତ୍ର ଚର୍ମୀକି ଏ ମୋଦକ ଖୁଆଇବୁ । ମୁଁ ତାକୁ ରାତ୍ର ଘେନି ଆସିବି ବୋଲି କହି ମନ୍ତ୍ରଣୀଠାରୁ କାମମଞ୍ଜରୀ ମେଲାଣି ହୋଇଗଲା । ଯାଇଁ ଗିରିଧାରୀ ଦତ୍ତକୁ କହିଲା, ତୁମ୍ଭକାର୍ଯ୍ୟ ସଫଳ ହେଲା ରାତ୍ର ହୋଉ, ତୁମ୍ଭଙ୍କୁ ମନ୍ତ୍ରଣୀ ପଣେ ଭେଟ କରିବ । ଏହା ଶୁଣି ଗିରିଧାରୀ ଦତ୍ତ ବଡ଼ ଆନନ୍ଦ ହେଲା । ଏମନ୍ତେ ଏଣେ ମନ୍ତ୍ରଣୀ କହିଲା, ଆଲୋ ଚର୍ମୀ, ମୁଁ ତୋତେ ଅପୂର୍ବ ପଦାର୍ଥଟିଏ ଦେବି ଖାଇବୁ କି ? ଚର୍ମୀ କହିଲା, ତେବେ କି ଦ୍ରବ୍ୟ ଦେବୁ ଦେଏ ତ । ମନ୍ତ୍ରଣୀ କହିଲା, ଯାହା ଖାଇଲେ ମନରୁ ନ ଯିବ ତାହା ଦେବି । ଏମନ୍ତ କହି ସେ ମୋଦକ ତାକୁ ଖୁଆଇଲା । ଏଥି ଉତ୍ତାରେ ମନ୍ତ୍ରଣୀ ମନ ରତି ଇଚ୍ଛାରେ (୧୦୦) ବଡ଼ ଚଞ୍ଚଳ ହୋଉଛି । କ୍ରମେ କ୍ରମେ ସନ୍ଧ୍ୟା ପ୍ରବେଶ ହୁଅନ୍ତେ କାମମଞ୍ଜରୀ ଗିରିଧାରୀ ଦତ୍ତକୁ ନାରୀବେଶ କରି ସଙ୍ଗେ ଘେନି ବାହାରିଲା । ଯାଇଁ ମାଳସୁନ୍ଦରୀ ଶିଠା-ପୁରରେ ମିଳି ଭିତର ପୁରକୁ ବୋଲି ଯାଆନ୍ତେ ସ୍ତ୍ରୀମାନେ ଦେଖି ପଚାରନ୍ତି, ଏ କାମମଞ୍ଜରୀ, ଏ ଟି କେ, ସେ କି ? ତହିଁକି କାମମଞ୍ଜରୀ କହଇ, ମାଗୋ, ମୋ ଝିଆରୀ ଏ ଟି । ଦେଇମଣିଙ୍କଠାକୁ ଫୁଲ ଘେନି ଆସିଛି । ଏମନ୍ତ କହି ମନ୍ତ୍ରଣୀ ଥିବା ପୁରକୁ ବୋଲି ଗଲା । ସେ ତ ଦଇବେ ଏକାନ୍ତପୁର, (୧୦୧) କାହାରି ଗତାଗତ ନ ଥାଇ, (୧୦୨) ଚର୍ମୀକି ମୋଦକ ଅମଲ (୧୦୩) ଲଗିବାରୁ ସେ ଅଚେତନ ହୋଇପଡ଼ିଛି । କାମମଞ୍ଜରୀ କହିଲା ଆରେ ଦେଇମଣି, ତୋ ପଦାର୍ଥ ପରା ଏ ଚିହ୍ନି ନଥ । ଏମନ୍ତ କହି ଦତ୍ତକୁ ସେ ଗୃହ ଭିତରକୁ ପେଲି ଦେଲା କହିଲା ଏଥର ଝର୍ଭସ୍ୱରେ କେଳିକର (୧୦୪) । ଯଉଁଦିନ ବୋଲିବୁ ସେ ଦିନ ଏହାକୁ ନେବି, ଏମନ୍ତ କହି କାମମଞ୍ଜରୀ ମେଲଣି (୧୦୫) ହୋଇ ଅଇଲା । ତହିଁ ଉତ୍ତାରୁ ଏ ଦୁହେଁ ମହା ଆନନ୍ଦ ହୋଇ ନାନା ଜାତି ଗୃଷ୍ଟ, ନାନା ଜାତି ପରିହାସ, ନାନା ଜାତି କେଳି, ନାନାପ୍ରକାର ବିପରୀତ ଏ ରୂପେ ଆଚରଣ କରି କନ୍ଦର୍ପ ଭଣ୍ଡାର ଧନ ଲୁଟ କରି ଦେଲେ । ଚର୍ମୀ ଯେ ଆରଘରେ ଶୋଇଥିଲା, ତାହାର ତ ଅମଲରେ ଗ୍ୟାନ ନାହିଁ, ଯେତେବେଳେ ଚେତା ହୁଅଇ କଙ୍କଣ, ଝୁଣ୍ଟିଆ, ନୂପୁର, ପାହୁଡ଼ ଏମନ୍ତଙ୍କ (୧୦୬) ଧ୍ୱନି ଶୁଣି ଡାକୁଥାଏ କି ରେ ଦେଇମଣି, ଘରେ କି ରୁଣୁଝୁଣୁ ଶୁଭୁଛି ? ତହିଁକି ମନ୍ତ୍ରଣୀ କହଇ, ଚର୍ମୀ କିଛି ନାହିଁ ଲୋ, ତୋତେ ମୋଦକ ଅମଲରୁ ଏରୂପେ ଶୁଭୁଛି । ଉଠିଲେ ପଡ଼ୁଛି, ଥିର ହୋଇ ଶୋଇଥା । ଏରୂପେ ରତି ରସ ପଦ୍ମରଯାକୁ ନାନା କଉତୁକରେ ମାତିଲେ । କୁଞ୍ଜଗଳୀ ଶାରୀ ସବୁ ଏହା ଶୁଣୁଥାଇ । ଏମନ୍ତେ

ଗୀତ ଶେଷ ହୁଅନ୍ତେ ମଞ୍ଜୁଷା ଦତ୍ତଙ୍କୁ କହିଲା, ଆଜ ଦିନ ତୋଟାପୁରେ ରହି, ଅମୃତ ଖାଇ ପେଟ ପୂରି ନାହିଁ, (୧୦୬) ଦୁଇ ଗୃହ ଦିନ ଭୋଗ ନ କଲେ କିରୂପେ ବଞ୍ଚିବ । ତହିଁକି ଦତ୍ତ କହିଲା ରେ ଧନ, ତୋ ଚନ୍ଦ୍ରମୁଖ ଦେଖି ତ ମୋ ମନଚକୋର ତୋଷ ହୋଇନାହିଁ, ମୁଁ ତୋତେ କିରୂପେ ଛାଡ଼ିପାରିବି ? ଏମନ୍ତ କଥାପ୍ରସଙ୍ଗେ ତୋଟାପୁରେ ଦତ୍ତଙ୍କୁ ରଖି ମଞ୍ଜୁଷା ଆପଣା ପୁରକୁ ଅଇଲା । ଗୀତ ପ୍ରକାଶ ହୁଅନ୍ତେ ପୁରନାରୀମାନେ ଅଇଲେ । ମଞ୍ଜୁଷା ସେମାନଙ୍କୁ ଘେନି ଚମ୍ପା ପାଶକୁ ଯାଇଁ ଦେଖିଲା ଯେ ତା ଦେହରେ ଗ୍ୟାନ ନାହିଁ, ମଞ୍ଜୁଷା କହିଲା, ମୁଁ ଶରଧା କରି ମୋଦୁକଟିଏ ଦେଲି ଖାଇଲା, ଏତେବେଳେ ମୋତେ କାଲି ରାତିରେ କେତେ ଭଙ୍ଗି (୧୦୭) କରୁଛୁ । ବୋଲଇ କରେ ଦେଇମଣି, ଘରେ କି ରୁଣୁଝୁଣୁ ଶୁଭୁଛି କି ? ଏହା ଶୁଣି ମୁଁ ରାତିଯାକ ହସି ହସି ମରୁଛୁ । ମଞ୍ଜୁଷା ଏମନ୍ତେ କହନ୍ତେ କୁଂଜଗଲୀ ଶାରୀ ପଢ଼ିଲା ।

ଚୁଁ ଚୁଁ ଝୁମ୍ ଝୁମ୍, ଝୁଣ ଝୁଣ କଣି କଣି
ହୁଁ ହୁଁ ନାଁ ନାଁ ଦେ ଦେ ମଣି ମଣି ।'

ଏରୂପେ ପୁଣି ପୁଣି ପଢ଼ି ଲଗିଲା । ଏହା ଶୁଣି ସମସ୍ତେ ବିସ୍ମରିଲେ ଏ ତ ଦିନେ ଏରୂପେ ପଢ଼ିନାହିଁ, ଆଜ ତ ବଡ଼ କଉତୁକ କରି ପଢ଼ୁଛି । ତହିଁକି ମଂଜୁଷା କହିଲା, ରାତିରେ ଚମ୍ପୀ ଏହିପରି ହୋଇଥିଲା, ତାହା ଶୁଣିଥିଲା, ସେହିରୂପେ ପଢ଼ୁଛି । ଏ ରୂପେ ପଦ ବଖାଇ କହିଲା, ସେ ଦିନ ପୁଣି କାମମଞ୍ଜୁ ଫୁଲ ଘେନି ଆସି ମଂଜୁଷାଙ୍କ ଫୁଲ ଦେଇ କହିଲା, ଆରେ ଦେଇମଣି ଆଜ ତ ତୋ ମୁଖ ବଡ଼ ଶୁଖିଲା ଦିଶୁଛି । ମଞ୍ଜୁଷା କହିଲା ଆଗୋ କାମମଞ୍ଜୁ, ଚମ୍ପୀ କଥା ବୁଝି ନାହୁଁ କି ? କାଲି ଶରଧା କରି ତାକୁ ମୋଦୁକଟିଏ ଦେଲି, ଖାଇଲା, ଏତେବେଳେ ରାତିଯାକ ମୋତେ ହସାଇ ନାଗିଛି ! ମୁଁ ଶୋଇପାରି ନାହିଁ, ଯେସେ ଯେତେ ଭଙ୍ଗି ହୋଇଛି ତାହା ଅବା କି କହିବି । ଏମନ୍ତ ଶୁଣି କାମମଞ୍ଜୁ କହିଲା କି ଗୋ ଚମ୍ପୀ, ଦେଇମଣି କି କହୁଛନ୍ତି, ତୋତେ ଏଡ଼େ ବିଡ଼ମ୍ବଣ (୧୦୮) କଲେ ! ଏବେ ମୁଁ ଔଷଧଟିଏ ଦେବି ଖାଅ, ଏତେବେଳେ ଅମଳ ଛାଡ଼ିବ, ଆଜ ସୁଖେ ଶୋଇବୁ । ଏମନ୍ତ ବୋଲି ନିଦ୍ରାରସ ମୋଦୁକଟିଏ ଦିଅନ୍ତେ ଚମ୍ପୀ ତାହା ଖାଇଲା । ମାଲୁଣୀ ମଞ୍ଜୁଷାଙ୍କ କହିଲା ଆଜ ତ ଚମ୍ପୀ ମଲପରି ପଡ଼ିବ, ମନ ଇଚ୍ଛାରେ ରାତିଯାକ କେଳି କର । ଏମନ୍ତ କହି କାମମଞ୍ଜୁ ଅଇଲା, ରାତି ପ୍ରବେଶ ହୁଅନ୍ତେ ମଞ୍ଜୁଷା ତନୁ ସୁବେଶ କରି ଗିରଧାରୀ ଦତ୍ତ ସଙ୍ଗେ ମାତିଲା (୧୦୯) । ଚମ୍ପା ତ ନିଦ୍ରାରେ ଅଚେତନ ହୋଇ ପଡ଼ିଛି, ମଞ୍ଜୁଷାଙ୍କ ଗିରଧାରୀ ଦତ୍ତ ଗୃହକୁ କରି କହୁଛି ।

## ଗୀତ

ଦେଉ କନା ଧନ ଗୋଟିଏ ଚୁମ୍ବନ
ଯାହୁ କାମ ଭସ୍ମ ଗୁଢ଼,
କୁଚ ଯୋଡ଼ ଯୋଡ଼, ଧରୁ କ ନା ଭିଡ଼ି
ଯାଉଛି ମୋ ତନୁ ଜାଡ଼, ରେ ବାଳା,
ସ୍ୱର୍ଗପୁରେ ଦୁର୍ଲ୍ଲଭ ତୋ ଲୀଳାରେ ।
ମୁଁ ତୋ ଝୁଣ୍ଟିଆ ତୁ ଗଳାମାଳାରେ ।
ତୁ ମୋ ଶିରୋମଣି ମୁଁ ତୋ ବଳାରେ (୧୧୦) ।

ଏରୂପେ ନାନା କଉତୁକରେ ରାତିଯାକ କ୍ରୀଡ଼ା କଲେ । ରାତ୍ର ପ୍ରକାଶ ହୁଅନ୍ତେ କୁଣ୍ଡଗଳୀ ଶାରୀ ପଢୁଛି ।

ଦେଉ କ ନା ଧନ ଗୋଟିଏ ଚୁମ୍ବନ
ଯାହୁ କାମ ଭସ୍ମ ଗୁଢ଼
କୁଚ ଯୋଡ଼ ଯୋଡ଼, ଧରୁ କ ନା ଭିଡ଼ି
ଯାଉଛି ମୋ ତନୁ ଜାଡ଼, ରେ ବାଳା
ସ୍ୱର୍ଗପୁରେ ଦୁର୍ଲ୍ଲଭ ତୋ ଲୀଳାରେ
ମୁଁ ତୋ ଝୁଣ୍ଟିଆ ତୁ ଗଳାମାଳାରେ
ତୁ ମୋ ଶିରମଣି ମୁଁ ତୋ ବଳାରେ ।

ଏ ଗୀତ ପଦକ ପୁଣି ପୁଣି ପଢିବା ଲାଗିଲା । ଶାରୀ କ ପଢୁଛି ବୋଲି ନାରୀମାନେ ଶୁଣିବାକୁ ଆସନ୍ତେ ମଞ୍ଜୁରୀ ପାଚିଲା ଡାଳିମ୍ବ ବୀଜ ମୁଠାଏ ନେଇ ଖୁଆଇବାରୁ ଏତେକେ ତା ପଢ଼ା ବନ୍ଦ ହେଲା । ମଞ୍ଜୁରୀ କହୁଛି ଏ ଶାରୀ ଚମ୍ପା ଦୁହେଁ ମୋରେ ବଡ଼ ଭଗାରି ହେଲେ (୧୧୧) । ଏ ଗଲେ ନିଶ୍ଚିନ୍ତରେ କେଳି କରନ୍ତୁ । ଏହା ବିଚାରି ଚମ୍ପୀକି କହିଲା, ଆଲୋ ଚମ୍ପୀ, ଆଜି ତୁ ଶାରୀକି ଗାଧୁଆଇ ଦୁଧସର ଖୁଆଇବୁ । ମୋ ଦେହ ଅଳସ ଲାଗୁଛି; ମୁଁ ଯାଉଛି ଶୋଇବି, ଏମନ୍ତ କହି ଯାଇଁ ପଲଙ୍କରେ ଶୋଇଲା । ଚମ୍ପୀ ଶାରୀକି ଗାଧୁଆଇ ଦୁଧସର ଦେଇ ଭାତ ଖାଇବାକୁ ଆର ପୁରକୁ ଯାଆନ୍ତେ ମଞ୍ଜୁରୀ ଉଠି ଆସି ଶାରୀ ତଣ୍ଟି ଚିପି ଦେଇ ମାରି ପକାଇଲା । ପୁଣି ଯାଇଁ ସେହି ପଲଙ୍କରେ ଶୋଇଲା । କେତେବେଳ ଉତ୍ତାରୁ ପୁରଜନମାନେ ଆସି ପଞ୍ଜୁରୀକି ଚାହାନ୍ତେ ଦେଖିଲେ ଶାରୀ ମରି କରି ପଡ଼ିଛି । ସମସ୍ତେ ହା ହା କରି ହୁରି କଲେ, ଆଗୋ ଶାରୀ ମଲା, ଶାରୀ ମଲା । ଏ ଚହଳ ଶୁଣି ମଞ୍ଜୁରୀ ଉଠି ଆସି ଶାରୀକି ଦେଖି ଭୂମିରେ କଚାଡ଼ି ହୋଇ ପଡ଼ିଲା । ବୁକୁରେ କୋଡ଼ି

ହୋଇ (୧୧୨) କହିଲା, ମୋ ପ୍ରାଣ ନ ନେଇ ଚମ୍ପୀ ଏହା କଲା ? ସମସ୍ତଙ୍କ ଆଗେ କହିଲା, ମୋ ଦେହ ଅଳସ ହେବାରୁ ଚମ୍ପୀକି କହିଲି ଆଜ ତୁ ଶାରୀକି ଗାଧୋଆଇ ଦୁଧସର ଖୁଆଇବୁ । ଏହା କହି ମୁଁ ଯାଇଁ ପଲଙ୍କରେ ଶୋଇଲି, ଏତେବେଳେ ମୋ ଶାରୀକି ମାରି ପକାଇଲା । ମୁଁ ଆଜ ପ୍ରାଣ ନ ରଖିବି । ଏମନ୍ତ କହି ବହୁତ କାନ୍ଦି କବାଟ କିଳି ଶୋଇଲା ଯେତେ ଡାକିଲେ କହିଲେ ନ ଯେନିଲା । ବୋଇଲା ମୁଁ ନଷ୍ଟେ ମରିବି, ନୋହିଲେ ମୋ ଶାରୀ ଦିଅ । ଏମନ୍ତେ ଅନେକ ବେଦନ କରନ୍ତେ ମାତା ପିତା ପ୍ରବୋଧ କରି କହିଲେ, ମଲା ଶାରୀକି କେ ଜୀଆଇ ଦେବ, ଆନ ଶାରୀ ଦେବୁଁ । ତହିଁକି ବୋଇଲା ମୁଁ ଚମ୍ପୀ ମୁହଁ ନ ଚାହିଁବି, ତାକୁ ଦେଖିଲେ ଶାରୀ ମନେପଡ଼ିବ, ଏ ପୁରରୁ ସେ ଯାଉ, ତେବେ ମୁଁ ଉଠିବି । ଏରୂପେ ହଠିବସି (୧୧୩) ଚମ୍ପୀକି ସେ ପୁରରୁ ବାହାର କରିଦେଲା, ଶାରୀକି ଘୁଆଘିଅ ଚନ୍ଦନ କାଠରେ ଜଳାଇଲା । ଶାରୀ ମଲା, ଚମ୍ପୀ ଗଲା । ଏମାନେ ଅନ୍ତର ହେବାରୁ ଗିରିଧାରୀ ଦଇକୁ ଯେନି ନିଶ୍ଚିନ୍ତରେ ବିହାର କଲା ।

ହେ ମହାରାଜା, ଏହା ଯେନି ମୁଁ କହିଲି,
କୁଞ୍ଜରାଳୀ ଶାରୀ ଚମ୍ପୀ ପରିବାରୀ ଏକ ମଲା ଏକ ଗଲା,
ମନ୍ତ୍ରୀ କୁମାରୀ ଦଇ ଗିରିଧାରୀ କଥା କେହି ନ ବୁଝିଲା ।'

ଏ ଦ୍ୱାର ମୁଁ ଯୋଡ଼ନାହିଁ ଆଉ କିଏ ଯୋଡ଼ିଥିବ ତାହା ବୁଝିବାର ଅଙ୍କକୁ ଆସନ୍ତୁ, ଏରୂପେ ଦ୍ୱାରୀ ଶ୍ରେଷ୍ଠା ରାଜାଙ୍କ ଆଗେ କହିଲା ।

ମାଳତୀ ବ୍ରାହ୍ମଣୀ କହିଲା, ଆଗୋ ମାଆମାନେ ଏହି କଥାକୁ ମୁଁ ମନେ କରି କହିଲି,

'ଦ୍ୱାରୀ ଶ୍ରେଷ୍ଠା ଲଗି ଯେମନ୍ତ ସିଂହଦ୍ୱାରେ ଜଳଇ
ମୂଷିକ ଗଣ୍ଡି ଖୋଳିଲେ କି ମୁକ୍ତାମାଳ ମିଳଇ ?'

ରସପୁର ବଇଦ୍ୟମାନଙ୍କ ଆଗେ କହିଲେ ଏ ନର୍ମଦା ମୂଷିକ କଥା ତ ଶୁଣିଲ । ଏରୂପେ ମନ୍ତ୍ରୀପୁଅ ବେଦନା କଷ୍ଟ ହେଉରୁ ହୋଇଥାଇ ନାହିଁ ? ଏମନ୍ତେ ରସପୁର ମନେ ବିଚାରିଲା, ଏ ବିରହବ୍ୟାଧି ହେଲେ ହୋଇପାରେ । ଭଲ ଏଥିର ଉପଚାର (୧୧୪) କଷ୍ଟ କରିବା । ଏମନ୍ତ ବିଚାରି କାମଶାସ୍ତ୍ର ପୋଥି ଦେଖି ବିରହ ଉପଚାର ସାମଗ୍ରୀ ଅଣାଇ ସେ ବିଧାନମାନ କଲା । କି କି ବିଧାନ କଲା କିଂ? ନାଁ —

ପଦ୍ମପତ୍ରର ଶେଯ, ଚନ୍ଦନ କର୍ପୂର ରଜ,
ଉଶୀରବାସ ପାଣି, ଶିବଳବତ ପୁଣି,
ଦିବ୍ୟ ମୁକ୍ତାମାଳୀ,
ଇତ୍ୟାଦି ବିରହ ଶାନ୍ତି ଉପଚାରମାନ ରସପୂର କଲାଭଳି ।
ଶେଯ ଶୁଖି ଜଳ ଚନ୍ଦନ କର୍ପୂର ଧୂଳି,
ତପ୍ତ ଶୀତଳ ନୀର ଶିବଳବତେ କାତର,
ହାର ହୃଦେ ଫୁଟିଲା,
ରସପୂର ମନେ ବିଚାର କଲା, ଏ କଷ୍ଟେ ବିରହବ୍ୟାଧି ଘୋଟିଲା (୧୧୫) ।

ସବଳ କଉଁ ନାଗରୀ ଏହାଙ୍କୁ ଏତେ ଦୁଃଖ ଦେଉଛି । ଭଲ ସେ ନୁହଇ କିକ ? ଏହା ଏବେ କିରୂପେ ଜାଣିବା, ଧନ୍ୟ ଧନ୍ୟ ସେ ସୁନ୍ଦରୀ, ଏଡ଼େ ସୁବୁଦ୍ଧି ରତ୍ନକୁ (୧୧୬) ବାଇ କରି (୧୧୭) ଦେଇ ଏତେ ଦଶା ଦେଲା । ଏବେ ଏ ବେଦନା ତ ତାହା ସଙ୍ଗ ବିନା ଆନ ଉପାୟରେ ନ ତୁଟିବ । ତାହାର ଯଉଁ କଟାକ୍ଷ କାଣ୍ଡ (୧୧୮) ସେତ କୁମାର ମରମକୁ ବୋଲି ଗଳିଯାଇଛି, ତାହାର ଚୁମ୍ବନ ଚୁମ୍ବକ (୧୧୯) ବିନା ତ ଆନରେ ନ ବାହାରିବ । ତାହାର ଯଉଁ ମନ୍ଦହାସ ସେ ତ ଏହାର ସର୍ବାଙ୍ଗରେ ବିଷ ପ୍ରାଏ ଘୋଟିଯାଇଛି, ତାହାର ମଧୁରବାଣୀମନ୍ତ୍ର ବିନା ଆନନ୍ଦରେ ତ ନ ଝଡ଼ିବ । ତାହାର ଯଉଁ ଚନ୍ଦ୍ରମୁଖ ସେ ତ ଏହାର ହୃଦୟକମଳକୁ ମୁଦ୍ରିତ କରିଦେଇଛି, ତାହାର ଅଧର ଅରୁଣ ଉଦୟରେ ସିନା ପ୍ରଫୁଲ୍ଲ ହେବ । ତାହାର ଯଉଁ ସ୍ନେହରସ ସେ ଏହା ହୃଦୟରେ ପଡ଼ି ବିରହ ଅନଳକୁ ଜାଳୁଛି, ତାହା ତନୁଲାବଣ୍ୟ ଜଳ ସଂଯୋଗରେ ସିନା ଲିଭିବ । ଏମନ୍ତ ହୋଇ ସେ କଉଁ ଚତୁରୀ ନାରୀ ଅଛି ସେ ଏବେ କିରୂପେ ଗୋଚର ହେବ (୧୨୦) ।

ଏରୂପେ ରସପୂର ହୃଦୟରେ ବିଚାରନ୍ତେ ତେଣେ ହେମାଙ୍ଗୀର ବେଦନା ପ୍ରବଳ ହେବାରୁ ଚନ୍ଦ୍ରକର ସୂପକାର ରସପୂର ବଦ୍ୟଠାକୁ ଆସି କୁମାରୀ ବେଦନା ଚରିତ ସବୁ କହନ୍ତେ ରସପୂର ବିଚାରିଲା ଏହା ବେଦନା ତ ମଧ୍ୟ ବିଘଟଣ (୧୨୧) ହୋଇଛି, ଭଲ ଅରେ ଦେଖିବା । ଏମନ୍ତ ଭାଳି ଚନ୍ଦ୍ରକରକୁ କହିଲା ନ ଦେଖିଲେ କିରୂପେ ଉପାୟ କରିବା; ଚାଲ ତେବେ ଦେଖିବା । ଏମନ୍ତେ ରସପୂରକୁ ସୂପକାର ନେଇ କୁମାରୀକି ଦେଖାନ୍ତେ ହେମାଙ୍ଗୀକି ଚାହିଁ ରସପୂର ମନେ କଲା ଧନ୍ୟ ଧନ୍ୟରେ ବିଧାତା, ତୁ ପୁଣି ଏରୂପେ ମୋହନ ରୂପ (୧୨୨) ନିର୍ମାଣ କରୁ । ବିଚାରିଲା ଏ ତ ମନୁଷ୍ୟ (୧୨୩) ନୁହଇ—

କୁନ୍ଦନସୁନା ପ୍ରତିମା   ଦୁତିଆ ନୂଆ ଚନ୍ଦ୍ରମା
ଶାଣସୁନ୍ଦର ମଣି   ସୁବର୍ଣ୍ଣରେଖା ଜାଣି,
ନୟନପକ୍ଷୀ ପାଣ   ଯୁବା ମୋହନ ବେଶ,
ଯୋଗୀନ୍ଦ୍ର ମନ ଶାଙ୍କୋଳି,
ତରୁଣକାନ୍ତକୁ ଏତେ ଦଶା ଦେଲା ପଗ୍‌ ଏ ଅପୂର୍ବ ସୁନ୍ଦରୀ ବାଳୀ (୧୨୪) ॥

ମନେକଲା ଏହାକୁ ଗୃହିବା ମାତ୍ରେ ତ ତନୁକାତର ହେଲିଣି. ଛୁଇଁଲେ ତ ଗ୍ୟାନ ନ ରହିବ । ଏହି ଭୟରେ ହାଥ ନ ଦେଖି କହିଲା, ଗିନା ଟିକେ ଜଳ ପୂରାଇ ତହିଁରେ କୁମାରୀହସ୍ତ ବୁଡାଇ ଆଣ ଦେଖି । ଚନ୍ଦ୍ରକର ଏହା ଶୁଣି ଗିନାଏ ଜଳରେ କୁମାରୀହସ୍ତ ବୁଡ଼ାଇ ଆଣିଦେଲା । ରସପୂର ଦେଖିଲା ଜଳ ତପ୍ତ (୧୨୫) ହୋଇଯାଇଛୁ ! ବିଚାରିଲା ଏ ତ ବିରହବ୍ୟାଧି, ମନ୍ତ୍ରୀ ପୁଅର ଏହାର କିରୂପେ ଭେଟ ପଡ଼ିଲା ଯେ ଦୁହେଁ ଦୁହିଁଙ୍କ ଶୋଭାରେ ମୋହିତ ହୋଇ ବିରହରେ ଏତେ ଦଶା ପାଉଛନ୍ତି । ଭଲା ଏ ଦୁହିଁଙ୍କର ଭେଟ କିରୂପେ ହେବ ଏହା ଦେଖି ଚତୁର ହେବା । ରସପୂର ଏମନ୍ତ ଭାଳି ଚନ୍ଦ୍ରକରକୁ କହିଲା ଏ କୁମାରୀ ବେଦନା ଅତି ବିଷମ ହୋଇଛୁ, କାଲି ଏଥିକି ବୁଟି ଉଜାଗ୍ର (୧୨୬) କହିବା । ଦେବତା ବିକାର ମଧ୍ୟ ଅଛୁ (୧୨୭) । ଆମ୍ଭେ ଏ ଜଳ ନେଉଗ୍ଛୁଁ (୧୨୮), ଏଥିଁ ବେଦନା ଅନୁମାନ କରିବା (୧୨୯) । ଏମନ୍ତ କହି ସେ ଜଳ ଘେନି ମନ୍ତ୍ରୀ ପୁଅ ପାଶକୁ ଗଲା । ସେ ଜଳରୁ ଟିକିଏ ତରୁଣକାନ୍ତ ହୃଦୟରେ ସିଞ୍ଚି ଦିଅନ୍ତେ ସେ ଅତି ଆନନ୍ଦରେ କହିଲା, 'ମୋ ହୃଦୟରେ କେ ଅମୃତ ବରଷିଲା. କି ଚନ୍ଦ୍ରମା ବିକାଶିଲା, କି ପ୍ରାଣ ଆସି ପଶିଲା, ଏହା କହ କହ ବୋଲି ତରୁଣକାନ୍ତ ବୋଲନ୍ତେ ଶୁଣି ରସପୂର ଭାଷିଲା, ହେ କୁମାର, ଏ ଯଉଁ ପଦାର୍ଥ ତାହାତ ଆମ୍ଭେ କହିବା । ଆଗ ତୁମ୍ଭର ଏ ବେଦନା କାହିଁକି ହେଲା ତାହା ଆମ୍ଭ ଆଗେ ଫିଟାଇ କହ । ସେଠାରୁ ତରୁଣକାନ୍ତ ସମସ୍ତ ଲୋକଙ୍କୁ ଅନ୍ତର କରି ଦେଇ ଆଦ୍ୟରୁ କୁମାରୀ ଭେଟଠାରୁ ଯେରୂପେ ବ୍ୟାଧି ହେବାର ତାହା କହିଲା । ଏମନ୍ତ ଶୁଣି ରସପୂର କହିଲା ତାହାର ଅଙ୍ଗଲଗି ପାଣି ଏ । ହଉ ତେବେ ତାହା ତୁମ୍ଭ ସଙ୍ଗ ଆମ୍ଭ ଘଟଣା କରିବା, ତୁମ୍ଭେ ତମ୍ଭ ହୋଇଥାଅ । ଏମନ୍ତେ ଅନୁମାନ କଲା ହରଷମତି କେଲୁଣୀ ଏହା ଘଟଣା କରିବ । ଆପଣେ ତା'ଠାକୁ ଗଲା, ତାକୁ ନିର୍ଜନ ସ୍ଥାନରେ ଡ଼ାକି କହିଲା, ଆଗୋ ହର୍ଷମତି, ତୁ ବ୍ୟବସାୟ କଲେ ମନ୍ତ୍ରୀପୁଅ ତରୁଣକାନ୍ତ ଜୀଇବ, ତୁ ବହୁତ ଧନ ପାଇବୁ । ସେ ବୋଇଲା କେଉଁ କଥା ଦେଖି କହ କନା । ସେଠାରୁ କୁମାରୀ କୁମର ଭେଟଠାରୁ ଯେଉଁରୂପେ ଦୁହିଁଙ୍କର ବିରହବେଦନା ହୋଇଛୁ ତାହା ରସପୂର କହନ୍ତେ ଶୁଣି ହର୍ଷମତି କହିଲା, ଏହି କଥା ସିନା ମୁ ଆଜି ଦିନ ଭିତରେ ଏହା କରିବି । ପୁଣି ରସପୂର କହିଲା, ତୁ ଚନ୍ଦ୍ରକର ଘରଠାକୁ ଯାଇ କହିବୁ ରସପୂର ବଇଦ୍ୟ ମୋତେ ପଠିଆଇ ଦେଲେ, ତୁମ୍ଭ କୁମାରୀ ଦେହ ଦେବତା

ବିକାର ହୋଇଛି, ମୁଁ ଏହା ଭଲ କରିବି; ମୋତେ କୁମାରୀକି ଦେଖାଅ । ମୋ ନାମରେ ଏରୂପେ କହିଲେ ସେ ଦେଖାଇବେ । ତହିଁ ଉତ୍ତାରୁ ଯେ ତୋ ଉପାୟ ଥିବ ତାହା କରିବୁ । ହର୍ଷମଣି ଶୁଣି ରସପୁରକୁ ମେଲାଣି ଦେଇ ତରୁଣକାନ୍ତ ଯଉଁରୂପେ ଘୋଡ଼ା ଉପରେ ଚଢ଼ି ବାହାର ଥାଇ ସେହି ମୂର୍ତ୍ତି ଲେଖି ସେପଟ ଅଣ୍ଟିରେ ଘେନି ଚନ୍ଦ୍ରକର ଘରଠାକୁ ଗଲା । କହିଲା ରସପୁର ବଦ୍ୟ ମୋତେ ପଠାଇ ଦେଲେ । ତୁମ୍ଭ କୁମାରୀକି ମୋତେ ଦେଖାଅ, ଯେବେ ଦେବତା ବିକାରରୁ ବେଦନା ହୋଇଥିବ ତେବେ ମୁଁ ଭଲ କରିବି । ଏହା ଶୁଣି ଚନ୍ଦ୍ରକର ତାଙ୍କୁ ନେଇ କୁମାରୀକି ଦେଖାଇଲା । ହର୍ଷମଣି ଦେଖିଲା ମାତ୍ରକେ ବୋଇଲା, ଆହା, ଆହା, କି କଲି, କି କଲି, କି ପଦାର୍ଥକୁ ଏଡ଼େ ଦଶା ଦେଲି । ଏହାକୁତ ଦେବତା ଆଉ ନଷ୍ଟ ରଖିନାହିଁ । ହୃଦରେ ବସିଲା, ରକ୍ତ ଶୋଷିଲା, ଆନମ୍ବ୍ରା ନଶିଲା (୧୩୦) । ତଣ୍ଟି ସଳଖେ କାମୋଡ଼ି ରହି ଏହାକୁ ଛାଡ଼ି ଦେଉନାହିଁ, ପେଟକୁ ଆହାର ଆଉ କଉଁବାଟେ ପଶିବ । ଏବେ ଏମନ୍ତ କର, ନିର୍ଜ୍ଜନ ଘରୁଟିକେ ଏହାକୁ ବସାଅ, ପାଖେ ଆଖେ କେହି ନ ଥିବେ, ସେଠାରେ ଏ କଉଁ ଦେବତା ଦେଖି ମୁଁ ବୁଝିବି । ଏହା ଶୁଣି ସେହିରୂପେ ସମସ୍ତେ ଅନ୍ତର ହୋଇଗଲେ । ହର୍ଷମଣି କୁମାରୀ ପାଶେ ଏକା ହୋଇ ରହିଲା । ପଚାରିଲା ଆରେ ହେମାଙ୍ଗୀ, ଛତାହର ଏ ଯେଉଁ ଯୁବାକାଳ, ଏଥିରେ ନାହିଁ ରସିକ କାନ୍ତ ମେଳ, ହସାଇ ହସନ୍ତା ରସାଇ ରୁସନ୍ତା, କୋଳେ ଘେନି ଅହର୍ନିଶି ବସନ୍ତା, ଏରୂପେ ହେଲେ ସିନା ଦେଅରୁ ବ୍ୟଥା ଖସନ୍ତା (୧୩୧), ଏବେ ତୋହୋର କାହିଁକି ମନ ଟେକୁଛି ତାହା ମୋତେ କହ, କିଛି ଲାଜ ଭୟ ନ ରଖି ସତ କହ । ଏହା ଶୁଣି ହେମାଙ୍ଗୀ ଅଳପ ହସି କହିଲା, ଯହିଁକି ମନ ହୋଉଛି ତାହା ମୋତେ କିଏ ଦେବ ? ଏ ଜୀବନ ଯିବାର ମୂଳ ହେଲାଣି । ଏହା ଶୁଣି ହର୍ଷମଣି ଅଣ୍ଟିରୁ ଚିତପଟ କାଢ଼ି କୁମାରୀକି ଦେଖାଇଲା । ସେ ପଟ ଦେଖି ତାହାର ଯଉଁ ଆନନ୍ଦ ଉପୁଜିଲାଟି ତାହା ବଚନେ କେ କହିବ । ଦରିଦ୍ର ଧନ, ଭୋକୀ ଭୋଜନ; ରସିକ ଚିରପ୍ରବାସୀ ନବୀନ କାନ୍ତାକୁ ଦେଖିଲେ ଯେମନ୍ତ ହୁଅନ୍ତି ତହିଁରୁ ସହସ୍ରଗୁଣେ ଆନନ୍ଦ ହେଲା ତା ମନ । କହିଲା ମୋ ହାଥକୁ ଦିଅ । ମୁଁ ନେଇ ସୁଫଳ କରିବି । ହର୍ଷମଣି କହିଲା ଦୂରରୁ ଚାହାଁ, ହାଥକୁ ଦେଲେ ଅଗ୍ୟାନ ହେବୁଟି । ଏହା ଶୁଣି ହାଥ ଗୋଡ଼ ଧରି ମାଗି ନେଇ ହୃଦରେ ଲଗାନ୍ତେ ପରମାନନ୍ଦ ରସ ଭୋଗ କଲା (୧୩୨) । ବୋଇଲା ଏ ପଦାର୍ଥକୁ ମୋତେ ଦେଇ ପାରିବୁ କି ? ହର୍ଷମଣି କହିଲା ଆଜ ହିଁ ଦେବି । ତୁ ଥିର ହୋଇଥାଅ । ଏମନ୍ତ କହି ତହିଁ ଉତ୍ତାରୁ ସମସ୍ତଙ୍କୁ ଡାକିଲା, କହିଲା ଏତ ନଗର ଉପାନ୍ତ ଦେବତା (୧୩୩) । ତା ଭ୍ରମଣ ବେଳେ କୁମାରୀ ହାବୋଡ଼େ (୧୩୪) ପଡ଼ିସିବାରୁ ମହାକୋପାନଳ (୧୩୫) ହୋଇ ଗ୍ରାସିଛି । ମାତ୍ର ଏବେ ବୋଧ କରି ନେଲେ (୧୩୬) ଯିବ କୁମାରୀ ବଞ୍ଚିବ । ଏବେ ଏଥିକି ଏମନ୍ତ

କର କି ଗ୍ରାମ ଉପାନ୍ତରେ ଚଣ୍ଡେଶ୍ୱରୀ ଦେବୀଙ୍କ ଛୋଟ ପାର୍ଶ୍ୱରେ ଯଉଁ ମଣ୍ଡପ ଅଛି ସେଠାକୁ କୁମାରୀକି ହାନ୍ଦୋଳାରେ (୧୩୭) ବସାଇ ନିଅ । ପୂଜା ବିଧାନ ହିଁ ନେଇଥିବ । ଚନ୍ଦନ ଘସାଇ, କର୍ପୂର ମିଶାଇ, ତାମ୍ବୁଳ ଭଙ୍ଗାଇ, କୁସୁମ ଗୁନ୍ଥାଇ, ବାସମାର ଝରୀ (୧୩୮), ଅତର କସ୍ତୁରୀ (୧୩୯); ଇତ୍ୟାଦି ନାନା ରସଭୋଗ ଉପସ୍କରମାନ ନେବ ଯେମନ୍ତେ ଦେବତା ପ୍ରିତି ଆନନ୍ଦରେ ଭୋଗ କର । ଏହା ଶୁଣି ହର୍ଷମତିକି ଚନ୍ଦ୍ରକର କହିଲା ଆଗୋ ହର୍ଷମତି, ତୁ ମୋ କୁମାରୀକି ଜୀବଦାନ ଦେ । ତୋ ମନ ଅନୁରୂପେ ମୁଁ ଧନ ଦେବ । ସେଠାରୁ ହର୍ଷମତି ରସପୁରଠାକୁ ଗଲା । କହିଲା ଚଣ୍ଡେଶ୍ୱରୀଦେବୀଙ୍କ ଛୋଟ ମଣ୍ଡପକୁ ହେମାଙ୍ଗୀକି ଆଣିବ । ତୁମ୍ଭେ ଆଗ ଭଳି ସନ୍ଧ୍ୟାବେଳୁ କୁମାରକୁ ଘେନି ଯାଇଥିବ । ଏହା ଶୁଣି ରସପୁର କୁମାର ପାଶକୁ ଯାଇଁ ହର୍ଷମତି କଥା କହି ବୋଇଲା, ତୁମ୍ଭ ନୟନପ୍ରତିମା ଚଣ୍ଡେଶ୍ୱରୀଦେବୀଙ୍କ ଛୋଟ ମଣ୍ଡପକୁ ଆସିବ, ତୁମ୍ଭେ ସେଠାକୁ ଯାଇପାରିଲେ ପ୍ରିୟା ଭେଟ ହେବ ! ତରୁଣକାନ୍ତ କହିଲା ତା ସଙ୍ଗ ହେବାକୁ ବୋଇଲେ ସମୁଦ୍ର ଡେଇଁପିବ, ଏ ବାଟ ଅବା କେତେ, ଏମନ୍ତେ ସରପୁରକୁ କହିଲା, ତୁମ୍ଭେ ମୋ ଶେଯ ପାଶେ ମୁଁ ଶୋଇଛି ବୋଲି ବସିଥାଅ, ମୁଁ ଗୁପ୍ତ ହୋଇଯିବ ।

ଏମନ୍ତେ ଗୃହ ପ୍ରବେଶ ହୁଅନ୍ତେ ତରୁଣକାନ୍ତ ହରଷ ହୋଇ ରସବତୀଠାରେ ଭେଟ ହେବାକୁ ଚଣ୍ଡେଶ୍ୱରୀଙ୍କ ଛୋଟ ମଣ୍ଡପକୁ ଗଲା । ଏଥିଉତ୍ତାରୁ ହର୍ଷମତି ହେମାଙ୍ଗୀକି ହାନ୍ଦୋଳାରେ ବସାଇ ସେହି ମଣ୍ଡପକୁ ଘେନାଇ ଅଇଲା । କହିଲା କୁମାରୀକି ହାନ୍ଦୋଳାରେ ଥୁଇ ତୁମ୍ଭେ ସମସ୍ତେ ଗ୍ରାମକୁ ବେଲ ବାହାର ଯାଅ, ମୁଁ ଦେବତା ଏହା ଦେହରୁ କାଢି ନେବି । ତେତେବେଳେ ଯେ ଦେବତା ମୁଖରେ ପଡ଼ିବ ତାକୁ ଗ୍ରାସିବ ପକାଇବଟି, ମୋର ଏକା ଦୋଷ ନାହିଁ । ଦୂରକୁ ପଳାଇ ଥାଅ । ଏହା ଶୁଣି ସମସ୍ତେ ପ୍ରାଣ ଭୟରେ ଗ୍ରାମକୁ ବେଲ ପଳାଇଲେ, ହରଷମତି ହେମାଙ୍ଗୀ କର ଧରି ନେଇ ତରୁଣକାନ୍ତ ହାଥେଦେଲା, ବୋଇଲା ଏବେ ଦୁହିଁଙ୍କ ବେଦନା ଭଲହେବ । ମନ ଅନୁରୂପେ ରତି ଔଷଧ (୧୪୦) ଭୋଗ କର । ମୁଁ ତେଣେ ଅନ୍ତର ହୋଇ (୧୪୧) ବସିଛି । ଏହା କହି ସେଠାରୁ ଅନ୍ତର ହୋଇ ଅଇଲା । ତହିଁ ଉତ୍ତାରୁ ସେ ଦୁହିଙ୍କର କଉତୁକ କହିବାକୁ ତ ବଚନ ନ ମିଳଇ । ତଥାପି କିଛି କହିବା ଶୁଣ । ରତି କାମରତି,(୧୪୨) ଶଚୀ ଇନ୍ଦ୍ର ପ୍ରୀତି, (୧୪୩) ହର ଗଉରୀ ପ୍ରେମ, (୧୪୪) ଚନ୍ଦ୍ର ରୋହିଣୀ କାମ, (୧୪୫) ଏମାନଙ୍କ ପ୍ରୀତି ଭାବନା ବଡ଼ ବୋଲି ଜାଣି, ତଥାପି ଏ ଦୁହିଁଙ୍କ ସୁଖଭୋଗ ଏହି ସମାନ ମନୋରମ ହେଲା—ଅନେକ କେଳି ବଢ଼ାଇ, (୧୪୬) ବିରହ ଜ୍ୱର ଛଡ଼ାଇ, (୧୪୭) କନ୍ଦର୍ପ ଘର ବୁଡ଼ାଇ, (୧୪୮) ଚିର ପ୍ରେମକୁ ବଢ଼ାଇ (୧୪୯) । ଏହିକାଳେ ହର୍ଷମତି ବିଚାରିଲା, ପୁଣି ପ୍ରୀତି ଲୀଳା କରୁ କରୁ ରାତ୍ରି ଶେଷ ହୋଇଯାଇ ଥାଇ ନିକି ।

ଏମନ୍ତ ଭାଳି ଜାଣି ଶେଷ ହୋଇଗଲାଣି ବୋଲି ଭସ୍ମ ଦେଖାଇ ତାଙ୍କ ସଙ୍ଗ ଛଡ଼ାଇ ଦେଲା । ସେଠାରୁ ତରୁଣକାନ୍ତ ଆପଣା ପୁରକୁ ଗଲା । ହର୍ଷମତି ହେମାଙ୍ଗୀ କର ଧରି ନେଇ ଚନ୍ଦ୍ରକର ପାଶେ ସମର୍ପି ଦେଲା । ବୋଇଲା ଏହାଠାରୁ ଦେବତା ଗ୍ରୁଞ୍ଜି ସନ୍ତୋଷରେ ଗଲା । ଏବେ ନିଶ୍ଚିନ୍ତ ହୁଅ । ଚନ୍ଦ୍ରକର ହର୍ଷମତିକି ବହୁତ ଧନ ନେଲା । ତରୁଣକାନ୍ତକୁ ରସପୁଞ୍ଜ ଆରୋଗ୍ୟ କଲା ବୋଲି ଜଗତରେ ଖ୍ୟାତି ହେଲା । ମନ୍ତ୍ରୀ ରତିପୁରକୁ ଅନେକ ଦ୍ରବ୍ୟ ଦେଲେ । ତରୁଣକାନ୍ତ ହରଷମତିଠାରେ ଅନେକ ସମ୍ଭାବନା ରଖି (୧୬୦) ଅପୂର୍ବ ପଦାର୍ଥମାନ ଦେଇ ଚିରକାଳକୁ ସ୍ନେହ ରଖିଲା ।

ରସବିନୋଦ କଥା ଏରୂପେ ସମାପତ (୧୬୧) ହେଲା । ମୋହନାଙ୍ଗଠାରୁ ଏହା ଶୁଣି ଚଞ୍ଚଳାକ୍ଷୀ ହୃଦରେ ରସପୂର୍ଣ୍ଣ କରି ମହାଆନନ୍ଦ ହେଲା ।

---

## ନୀତି ବିନୋଦ

ପୁଣି ମୋହନାଙ୍ଗକୁ ଚଞ୍ଚଳାକ୍ଷୀ କହିଲା ହେ ବନ୍ଧୁ, ନୀତି ବିନୋଦ ବୋଲି ଯେଉଁ କଥା ତାହା ଶୁଣିବାକୁ ବଡ଼ ଶରଧା ବଳୁଛି (୧) । ସେ କଥା କହି ମୋ ମନ ସନ୍ତୋଷ କରିବା ହୋଉ । କୁମାର କହିଲା ଆରେ ମଣି; ତେବେ ନୀତି ବିନୋଦ କଥା କହିବା ଶୁଣ ।

ଶ୍ଳୋକ :—

ନୀତିର୍ବିତ୍ତବିବର୍ଦ୍ଧିନୀ ଗୁଣକରୀ ସତ୍କର୍ମସମ୍ପାଦନୀ
ଲୋକାହ୍ଲାଦମୟୀ ଯଶଃସୁଖଦଯ୍ୟାପାର୍ଣ୍ଣି ତ୍ୟକୀର୍ତ୍ତିପ୍ରଦା
କାର୍ଯ୍ୟାକାର୍ଯ୍ୟବିବେକକର୍ମକୁଶଳା କ୍ଷୌଣୀପତେର୍ମଣ୍ଡନମ୍
ତସ୍ମାନ୍ନୀତିମୁପାସତାଂ ବୁଧଗଣା ଲୋକତ୍ରୟୀତୁଷ୍ଟୟେ (୨) ।

କଥା :—

ସେ ଦେଶ ପୂର୍ବଦିଗରେ କୀର୍ତ୍ତିମଣ୍ଡନ ନାମେ ଏକ ରାଜ୍ୟ ଅଛି । ସେ ରାଜ୍ୟ ରାଜା ନାମ ଚନ୍ଦ୍ରାଲୋକ । ସେ ରାଜାଙ୍କ ଧର୍ମକର୍ମ ନୀତି ବିଦ୍ୟା ବୀର ଶୂରପଣ କୁଳଶୀଳତା ଇତ୍ୟାଦି ଗୁଣମାନଙ୍କରେ ଅଦ୍ୱିତୀୟ ଅଟନ୍ତି । ତାହାଙ୍କ ଗୁଣ କୀର୍ତ୍ତିମାନ ଦିଗମାନଙ୍କରେ ପ୍ରକଟ (୩) ହୋଇ ଶୋଭା ପାଉଛି । ପ୍ରଜାମାନଙ୍କୁ ପୁତ୍ର ପରି କରି ପାଳନ୍ତି । ସେହି

ରାଜ୍ୟରେ କୁଶଳକର୍ମା ନାମେ ଏକ ବ୍ରାହ୍ମଣ ଜଣେ ଥିଲା । ତାହାର ଏକ ଭାର୍ଯ୍ୟା, ଏକ ପୁତ୍ର, ଏକ ଦୁହିତା (୪) ଏରୂପେ ଗୃହ ପ୍ରାଣୀ । ସେ ବ୍ରାହ୍ମଣ ବେଦବିଦ୍ୟାରେ ନିପୁଣ ବୋଲି ବିଚିତ୍ରବୀର୍ଯ୍ୟଙ୍କ ଦେଶ ରାଜା ଅମରଧ୍ୱଜଙ୍କ ନୃପତି ସେ ବ୍ରାହ୍ମଣଙ୍କୁ ବେଦପାରାୟଣ (୫) କରିବା ନିମିତ୍ତେ ବରଣ କରି ନେଲେ । ସାମବେଦ ପାରାୟଣରେ ସେ ବ୍ରାହ୍ମଣ ରାଜାଙ୍କ ରାଜ୍ୟରେ ବହୁତ କାଳ ରହିଲା । ଏଣେ ଏକ ଦିନକରେ ଛନ୍ଦରେଖା ନାମେ ସେ ବ୍ରାହ୍ମଣ ଝିଅ ସନ୍ଧ୍ୟା ସମୟରେ ନଗ୍ର ଉପାନ୍ତ (୬) କୂପରୁ ଜଳ ଆଣିବାକୁ କୁମ୍ଭ (୭) ଘେନି ଗଲା, କୁମ୍ଭ କଣ୍ଠରେ (୮) ରଜ୍ଜୁ ବନ୍ଧନ କରି (୯) କୂପରୁ ଜଳ ଘଟେ (୧୦) ପୂରାଇ ଓଟାରି ଆଣନ୍ତେ ପାଦ ଖସି ଯିବାରୁ କୂପରେ ପଡ଼ିଗଲା । ପୁଣ୍ଡରୀକ ପଣ୍ଡା ନାମେ ଏକ ବ୍ରାହ୍ମଣ ପୁତ୍ର ସେ କୂପ ନିକଟେ ବସି ସନ୍ଧ୍ୟା କରୁଥିଲା, କୁନ୍ଦରେଖା କୂପରେ ପଡ଼ିବାର ଶବ୍ଦ ସନ୍ଧ୍ୟା ଛାଡ଼ି ସତ୍ୱରେ ଆସି କୂପକୁ ଚାହିଁନ୍ତେ ଦେଖିଲା କୁମାରୀ ଉବୁଡ଼ି ଟୁବୁଡ଼ି (୧୧) ହୋଉଛି । ଏହା ଦେଖି ସେ ବ୍ରାହ୍ମଣ କୂପକୁ ଡେଇଁ ପଡ଼ି ସେ କୁମାରୀକି ସମ୍ଭାଳି ଧରିଲା । ଅନେକ ଶ୍ରମରେ ତାକୁ ଉପରକୁ ଆଣିଲା । ସେ କୁନ୍ଦରେଖା ଦେହ ସମ୍ଭାଳି ଉଠନ୍ତେ ବ୍ରାହ୍ମଣ ପାଦ ଧରି କହିଲା ତୁମ୍ଭେ ମୋତେ ପ୍ରାଣ ଦାନ କଲ, ମୁଁ କିରୂପେ ଏ ଉପକାର ଶୁଝିବି ? ଆଜ ମୁଁ ତୁମ୍ଭଙ୍କୁ ସ୍ୱାମୀ କରି ବରଣ କଲି । ତୁମ୍ଭର ପତ୍ନୀ ହୋଇ ସେବା କରି ଏ ଉପକାର ଶୁଝିବି । ଏ କଥା ମୋହର ସତ୍ୟ ସତ୍ୟ ସତ୍ୟ, ତୁମ୍ଭ ବିନା ଆନ ପୁରୁଷ ନ ଛୁଇଁବି । ଯେବେ ଏହା ନ କରିବ ତେବେ ହୃଦୟ ଫାଟିଯିବ । ଏହା ଶୁଣି ବ୍ରାହ୍ମଣ କହିଲା ଆରେ କୁମାରୀ, ଏରୂପେ କିମ୍ପା ସତ୍ୟ କଲୁ ! ତୋ ଉପରେ ତ ପିତାମାତା ଅଧିକାରୀ, ସେ ଯାହାକୁ ଦେବେ ସେ ସିନା ବର ହେବ ।

ଶ୍ଳୋକ :—

ପିତା ରକ୍ଷତି କୌମାରେ ଭର୍ତ୍ତା ରକ୍ଷତି ଯୌବନେ,
ପୁତ୍ରୋ ରକ୍ଷତି ବାର୍ଦ୍ଧକ୍ୟେ ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟମର୍ହତି (୧୨) ।

କଥା :—

ଏ ଶ୍ଳୋକ ଶୁଣି କୁନ୍ଦରେଖା କହିଲା ଯେବେ ତୁମ୍ଭ ବିନା ଆନକୁ ଦେବେ ପ୍ରାଣ ହାରିବି, (୧୩) ଏ ମୋହର ପ୍ରମାଣ (୧୪) । ବ୍ରାହ୍ମଣ ବୋଇଲା ଏଥକୁ ସାକ୍ଷୀ କେ ? କୁମାରୀ କହିଲା ଏଥକୁ ସାକ୍ଷୀ ଅଷ୍ଟଦିଗପାଳ, ଚନ୍ଦ୍ର ସୂର୍ଯ୍ୟ । ଏହି ସମୟରେ ଶୁକ ଶାରିକା ଦୁଇଗୋଟି ପକ୍ଷୀ କୂପ ସମୀପ ବଟ ବୃକ୍ଷରେ ଥାଇଁ ଏ ଚରିତ୍ର ଶୁଣୁଥିଲେ । ମଧୁରବାଣୀ

ପଠନ କରନ୍ତେ କୁନ୍ଦରେଖା କହିଲା ଯେ 'ଶୁକ ଶାରିକେ, ଏ ବ୍ରାହ୍ମଣଙ୍କୁ ମୁଁ ସ୍ୱାମୀ କରି ବରଣ କଲି, ଏ ବିନା ଆନ ପତି ନ କରିବି, ଏଥିକୁ ତୁମ୍ଭେ ସାକ୍ଷୀ ହୁଅ । ଏମନ୍ତ କହି ସୁଶ୍ରାବ୍ୟ ପଣ୍ଡା କୁନ୍ଦରେଖା ଦୁହେଁ ଯେଝା ପୁରକୁ ଗଲେ ।

ତେଣେ ବିଚିତ୍ରଭୂଙ୍ଗ ଦେଶରେ ସେ ବ୍ରାହ୍ମଣ କୁଶଳକର୍ମା ଦେହ ବ୍ୟାଧି-ପୀଡ଼ିତ ହେଲା (୧୫) । କଫ ଜ୍ୱରରେ ଅବଶ ହେବାରୁ ଚଳି ନ ପାରିଲା । ସେହି ନଗରସ୍ଥିତ ଗୋପକଦମ୍ବ ନାମେ ଏକ ବ୍ରାହ୍ମଣ ସେ କୁଶଳକର୍ମାଙ୍କୁ ପୁରକୁ ନେଇ ବହୁତ ଯତ୍ନ କଲା । ତିନମାସ ପର୍ଯ୍ୟନ୍ତ ଅନେକ ସେବା କରିବାରୁ ସେ ବ୍ରାହ୍ମଣଙ୍କୁ କୁନ୍ଦରେଖା ଦୁହିତାକୁ ପ୍ରଦାନ କରିବ ବୋଲି କୁଶଳକର୍ମା ସତ୍ୟ କଲା । ଏମନ୍ତ ସତ୍ୟ କରନ୍ତେ ସେ ଗୋପକଦମ୍ବ ବ୍ରାହ୍ମଣ କୁଶଳକର୍ମାଠାରେ ଇଷ୍ଟଦେବତା ପରି ଭାବନା ରଖି ବିବାହ କର୍ମରେ ନିଶ୍ଚିନ୍ତ ହେଲା ।

ଏଥି ମଧ୍ୟରେ କୁଶଳକର୍ମା ଆସିବା ବିଳମ୍ବ ହୁଅନ୍ତେ ତାହା ପତ୍ନୀ ସତ୍ୟଭାମା ବ୍ରାହ୍ମଣୀ ପୁତ୍ର ଦୁହିତା ଘେନି ଅନ୍ନବସ୍ତ୍ରରେ ବଡ଼ କଷ୍ଟ ପାଇଲା । କାହାରି ମୁଖରୁ ପତି-ବାର୍ତ୍ତା ହିଁ ନ ମିଳଇ । ପଥ ତ ଅନେକ ଦୂର । କାହାକୁ ଅବା ସେ ଦେଶକୁ ପଠିଆଇବ (୧୬) । ଏମନ୍ତେ ଅତି କ୍ଳେଶ ପାଇବାରୁ ସେହି ନଗର ଚନ୍ଦ୍ରଶ୍ରୀ ନାମେ ଏକ ବ୍ରାହ୍ମଣ ଜଣେ ତାକୁ କୁନ୍ଦରେଖାକୁ ବିଭା କରିବ ବୋଲି ସତ୍ୟ କରି ମହାଜନ-ମାନଙ୍କୁ ସାକ୍ଷୀ ବସାଇ କିଛି ଟଙ୍କା ଆଣି ଆପଣା ଚରିତାର୍ଥ ଗ୍ରହିଲା (୧୭) । ଚନ୍ଦ୍ରଶ୍ରୀ ବ୍ରାହ୍ମଣ କୁନ୍ଦରେଖାକୁ ବିଭା ହେବ ଏହା ମୂଳ କରି ବହୁ ସାମଗ୍ରୀ ତିଆର କରୁଥାଇ ।

ସେହି ସମୟରେ (୧୮) ଆଗକୁ ସିଂହ ବୃହସ୍ପତି ଯୋଗ ଅଶୁଦ୍ଧ କାଳରୁ ବିବାହ ନାହିଁ ବୋଲି କୁଶଳକର୍ମା ଗୋପକଦମ୍ବକୁ ସଙ୍ଗେ ଘେନି ଦୁହିତା ପ୍ରଦାନ କରିବ ବୋଲି ପୁରକୁ ଅଇଲା । ଏହି କାଳ ଅଶୁଦ୍ଧ ଜାଣି ଚନ୍ଦ୍ରଶ୍ରୀ ବ୍ରାହ୍ମଣ ସମ୍ଭାର ତିଆରି କରି ବିଭା ଲଗ୍ନ ପ୍ରମାଣ କରିଅଛି (୧୯) । କୁମାରୀ ସତ୍ୟ ବଚନ ମନେ ଘେନି ପଣ୍ଡ୍ୟାଳକ ପଣ୍ଡା ବିଭା ହେବା ନିମନ୍ତେ ଭୂଷଣମାନ ନିର୍ମାଣ କରଇ । ଏମନ୍ତେ କୁଶଳକର୍ମା ଗୋପକଦମ୍ବକୁ ଘେନି ମନ୍ଦିରେ ମିଳି ବିବାହ ଉଦ୍ୟମ କରନ୍ତେ ଚନ୍ଦ୍ରଶ୍ରୀ ବ୍ରାହ୍ମଣ ମହାଜନ ସାକ୍ଷୀ ବସାଇ ଗୋପକଦମ୍ବକୁ ଦୁହିତା ପ୍ରଦାନ ନ କରି ବୋଲି କୁଶଳକର୍ମାକୁ ରାଣ ଦେଲା (୨୦) । ଏହିରୂପେ ପରସ୍ପରରେ ସେ ତିନି ବ୍ରାହ୍ମଣ ଦ୍ୱନ୍ଦ୍ୱ ହୁଅନ୍ତେ (୨୧) ସେ ଦୁଇ ବରଯାକ ଚନ୍ଦ୍ରାଲୋକ ରାଜାଙ୍କ ଗ୍ରାମକୁ (୨୨) ଗୁହାରି କରିବାକୁ ଗଲେ । ସେ ରାଜା ଏ ଦୁହିଁଙ୍କ କଥା ଶୁଣି ବିଚାରିଲେ, ଦୁହେଁ ତ ଗରହିତ ନ୍ୟାସ (୨୩), କାହାକୁ

କନ୍ୟା ଦେବା । ଏହି ଧର୍ମ ବିଚାରଣା କରି (୨୪) ନ୍ୟାୟ ଛିଣ୍ଡାଇ ନ ପାରିଲେ (୨୫) । ସମସ୍ତ ବ୍ରାହ୍ମଣଙ୍କୁ ଡକାଇ ଆଜ୍ଞା ଦେଲେ, ଆହେ ବ୍ରାହ୍ମଣ ଗୋସାଇଁମାନେ, ଅଶୁଚି ଦ୍ରବ୍ୟ ପଡ଼ି ଯେଉଁ ସ୍ଥାନ ଅପସ୍ମାର (୨୬) ହୋଇଥାଇ ସେ ସ୍ଥାନରେ ପବିତ୍ରଜଳ ପଡ଼ିଲେ ସିନା ଶୁଦ୍ଧ ହୁଅଇ । ଏ ଯେଉଁ ବ୍ରାହ୍ମଣଙ୍କ ନ୍ୟାୟ ବ୍ରାହ୍ମଣ କରିବ । ଯାହାର କନ୍ୟା ପ୍ରବର୍ତ୍ତିବ (୨୭) ତାହା ଆମ୍ଭ ଛାମୁରେ କହିଲେ ତାକୁ କନ୍ୟା ବିଭା କରିବା । ଏମନ୍ତ ଆଜ୍ଞା ପାଇ ସକଳ ବ୍ରାହ୍ମଣମାନେ—ନନ୍ଦ, ମିଶ୍ର, ମହାପାତ୍ର, କର, ରଥ, ଆଚାର୍ଯ୍ୟ, ଷଡ଼ଙ୍ଗୀ, ଭଞ୍ଜ, ଦୁବେଇ, ତିହାଡ଼ୀ, ପାଣି, ଶତପଥୀ, ପତି, ଚକ୍ରବର୍ତ୍ତୀ, ଦାଶ, ଦୀକ୍ଷିତ, ମୂନ, ଦେବତା, ବ୍ୟାସ, ଚଇନ, ପଣ୍ଡା, ପତ୍ରୀ—ଏମାନେ ସମସ୍ତେ ଆସିଲେ । ରାଜାଙ୍କ ଛାମୁରେ ଥିବା ସକଳ ସାମନ୍ତ ବ୍ରାହ୍ମଣମାନଙ୍କୁ ରାଜା ଆଜ୍ଞା କଲେ ତୁମ୍ଭେମାନେ ମଧ୍ୟ ଯାଅ । ରାଜଗୁରୁ, ରାଜ୍ୟଗୁରୁ, ବ୍ରହ୍ମା, ପାଟଯୋଷୀ, ପଦ୍ମରାଜ, ପରମଗୁରୁ, ପୁରୋହିତ, ବଡ଼ପଣ୍ଡା, ସବାସ, ଖାଡ଼ଙ୍ଗା, ଭଞ୍ଜମିଶ୍ର, ବାଜପେଇ, ଅଗ୍ନିହୋତ୍ରୀ, ସାମନ୍ତରା, ବାହିନୀପତି, ଏମନ୍ତେ ବ୍ରାହ୍ମଣ ଗୋସାଇଁମାନେ ସମସ୍ତେ କୁଶଳକର୍ମୀ ଗ୍ରାମରେ ପ୍ରବେଶ ହେଲେ । କୁନ୍ଦରେଖା କୁମାରୀ ପତନ କୂପ ସମୀପ ବଟବୃକ୍ଷ ମୂଳେ ପ୍ରସ୍ତର ପାଷାଣବେଦୀ ଉପରେ ସେ ବ୍ରାହ୍ମଣମାନଙ୍କ ଗୁହାରିଆ ବ୍ରାହ୍ମଣ (୨୮) ଯଥାନୁରୂପେ ବସାଇଲି । ସେ ଦୁଇ ବର ବ୍ରାହ୍ମଣଙ୍କୁ ଡକାଇ ସମସ୍ତ ବ୍ରାହ୍ମଣ ଗୋସାଇଁମାନେ ବିବାହ ବିଷୟ ପୁଚ୍ଛନ୍ତେ (୨୯), ଏହି ସମୟରେ ପୂଣ୍ଡରୀକ ପଣ୍ଡା ଆଗରେ ଉଭା ହୋଇ କହିଲା, ଆହେ ଗୋସାଇଁମାନେ, ଆପଣ ଯେ ଏ ନ୍ୟାୟ କରୁଛ, ମାତ୍ର ଏ କନ୍ୟାକୁ ମୁଁ ବିଭା ହେବି । ଧର୍ମରେ ମୋର ପ୍ରାପତଟି (୩୦) । ଏହା ବିଚାର ନ୍ୟାୟ କରିବା ହେଉ । ଏହା ଶୁଣି ସମସ୍ତେ ଚକିତ ହେଲେ, ବୋଇଲେ ଏ ପୁଣି କି କଥା ! ତାକୁ କହିଲେ ଏ କନ୍ୟା ତୋର କିରୂପେ ତାହା ଦେଖି କହି ଶୁଣିବା । ସେ କହିଲା, ମୁଁ କି କହିବି । ମୋହର ଅଷ୍ଟଦିଗପାଳ ଚନ୍ଦ୍ର ସୂର୍ଯ୍ୟ ସାକ୍ଷୀ ଅଛନ୍ତି । ସେ କହନ୍ତେ ସିନା । ଏହି ସମୟରେ ସେ ବୃକ୍ଷ ଉପରେ ବସି ଶୁକ ଶାରିକା ଦୁହେଁ କୋଳାହଳରେ ମଧୁରବାଣୀ ପଠନ କରି ଉଚ୍ଚରେ ହସି ଉଠନ୍ତେ ବ୍ରାହ୍ମଣମାନେ କହିଲେ ହେ ଶୁକ ଶାରିକେ, ତୁମ୍ଭେ କି ନିମିତ୍ତେ ହସିଲ ତାହା କହ । ତହିଁକି ଶୁକ ଶାରିକା କହୁଅଛନ୍ତି, ଆହେ ଗୋସାଇଁମାନେ :—

ଶ୍ଳୋକ :—

ପୂର୍ବଜନ୍ମନ ଯା ବିଦ୍ୟା ପୂର୍ବଜନ୍ମନ ଯଦ୍ଧନମ୍
ପୂର୍ବଜନ୍ମନ ଯା କନ୍ୟା ଅଗ୍ରେ ଧାବତି ଧାବତି (୩୧) ।

ଏଥିକି ଯେ ଯାହାର କନ୍ୟା ସେ ତ ଅବଶ୍ୟ ତାକୁ ପ୍ରାପତ ହେବ । ଆଗେ ଆମ୍ଭେ କଥାଟିଏ କହିବୁ ତାହା ଶୁଣ । ଆପଣାର ଅର୍ଜିତ ଧନ ବୋଲି ଗୁଣଗ୍ରହିର

ରାଜା ମଞ୍ଜୁଳରୂପ ବଣ୍ୟ ଏ ଦୁହେଁ ଯଉଁରୂପେ ହାଥରୁ ଦିବା ଧନ ପାଇଲେ ତାହା ଶୁଣିବ ? ଏହା ଶୁଣି ବ୍ରାହ୍ମଣେ କହିଲେ ସେ କେମନ୍ତ ଚରିତ ତାହା କହ ଦେଖି ଶୁଣିବା । ସେଠାରୁ ବିମ୍ବଓଷ୍ଠ ନାମେ ଶୁକ କହୁଛି :—]

ଯେ ଯେ ଭେଲିଭାଞ୍ଜନ ନାମେ ଏକ ନଗର ଅଛି । ସେ ରାଜ୍ୟ ରାଜା ନାମ ଗୁଣଗୌର । ଏକ ଦିନକରେ ସନ୍ଧ୍ୟା ସମୟରେ ବେପାର କରିବାକୁ ଜୟଘୋଷ ଗ୍ରାମରୁ ମଞ୍ଜୁଳରୂପ ନାମେ ବଣ୍ୟ ଜଣେ ସେ, ସେ ଭେଲିଭାଞ୍ଜନ ନଗରକୁ ଆସୁଥିଲା । ନଗ୍ର କୋଶ ଦୁଇ ଅନ୍ତରେ (୩୨) ବନସ୍ତ ମଧ୍ୟରେ ଖ୍ୟାମମୁଖା ନାମେ ଏକ ଶବର ମୃଗୟା ନିମିତ୍ତେ ବୁଲୁଥିଲା । ମଞ୍ଜୁଳରୂପ ବଣ୍ୟ ସେ ଶବର ଆଗରେ ଭେଟ ପଡ଼ନ୍ତେ ବଣ୍ୟଠାରେ ମୁଦ୍ରା-ଗଣ୍ଠି (୩୩) ଦେଖି ସତ୍ୱରେ ବିକଟ ରୂପ ଧରି ଧନୁରେ ଶର ସନ୍ଧନ୍ତେ (୩୪) ମଞ୍ଜୁଳ-ରୂପ ସେ ଧନ ପକାଇ ପଳାଇଗଲା । ସେ ଗଣ୍ଠି ଘେନି ଶବର ସତ୍ୱର ହୋଇ ଅ.ସନ୍ତେ ତା ପଲ୍ଲୀ ତ ବହୁତ ଦୂର, ତହିଁକି ଯାଇ ନ ପାରିବାରୁ ଆସି ନଗ୍ର ଭିତରେ ପଶିଲା । ଧନ ଗଣ୍ଠି ତ ଅଛି, କେ ଦେଖିବ ବୋଲି ଏହି ଭୟରେ କାହିଁ ରଖିବ ଏହା ବିଗୃରି ତାହାର ପ୍ରୀତ ଲୋକ ସିନ୍ଦୂରକଣ୍ଠ ନାମେ ଏକ ନାଟୁଆ ଥିଲା ଯେ ତା'ହାଂ ଘରଠାକୁ ଯାଇ ତାକୁ ଏକାନ୍ତରେ ଡାକି କହିଲା, ଆହେ ନଟବର, ଏ ଧନ ମୋର ଆଜିକି ରଖିଥାଆ, ବେଳ ଉଚ୍ଛୁର ହେବାରୁ (୩୫) ଘରକୁ ଯାଇ ନ ପାରିଲି, କାଲି ଏ ଧନ ଘେନି ଘରକୁ ଯିବି । ତୁମ୍ଭେ ମୋର ଅତି ପ୍ରୀତ, ଏ ଘେନି ଆଜକ ଏ ଧନ ରଖ, କାଲି ପ୍ରଭାତୁଁ ନେବି । ଏମନ୍ତ କହି ଧନଗଣ୍ଠି ଦିଅନ୍ତେ ସିନ୍ଦୂରକଣ୍ଠ ବିଗୃରିଲା ଏ ଧନ ଏହାର ଅର୍ଜିତ ନୁହଇ । ଏ ତ ଛନ ଛନ ହୋଉଛି (୩୬) । କାହାଠାରୁ କିରୂପେ ଆଣିଥିବ ପରା । ଏହା ବିଗୃରି ସେ ଧନ ନେଇ ଆପଣା ଘର କଣମାଛକା (୩୭) ଉପରେ ରଖିଲା । ସେହି ନାଟୁଆ କୁମାରୀ ତରଙ୍ଗନୟନୀ ସଙ୍ଗେ କଟୁଆଳ ଭ୍ରମଣସିଂହ ପ୍ରୀତ କରିଥାଇ ଯେ ନଟବର ଧନି ରଖିଲା ବେଳକୁ କଟୁଆଳ ଆଟୁ ମନ୍ଦିରରେ (୩୮) ଗୁପ୍ତ ହୋଇ ରହି ଗୃହିଁଥିଲା । ତେତେବେଳକୁ ଅନୁମାନ କରିଥିଲା କି ଏ ତ ଉତ୍ତମ ଦ୍ରବ୍ୟ କିଛି ରଖିଲା ପରା । ନଟବର ସେ ଧନ ରଖି ବାହାରକୁ ଯାଆନ୍ତେ ,ତରଙ୍ଗନୟନୀ ସଙ୍ଗେ ସତ୍ୱର ଲୀଳା ବଢ଼ାଇ କଣମାଛକା ଉପରୁ ସେ ଧନ ଘେନି ଭ୍ରମଣସିଂହ ବାହାରି ଅଇଲା । ରାତ ପାଞ୍ଚଘଡ଼ି ସରିକି ପୂରିକୁ ଆସନ୍ତେ ଦେଖିଲା ଦାଣ୍ଡ କବାଟ କିଲା (୩୯) ହୋଇଛି । ତାହା କାନ୍ତା ରତ୍ନପ୍ରଭା ସଙ୍ଗେ ସେହି ରାଜ୍ୟ ରାଜାପୁଅ ବିନୋଦଚନ୍ଦ୍ର ପୂର୍ବରୁ ପ୍ରୀତ କରୁଥାଇ ଯେ ଚଳଦିନ ସେ ରତ୍ନପ୍ରଭା ବିନୋଦଚନ୍ଦ୍ରଠାରେ ଅଭିମାନ କରି ସୁରତ ଦେଇ ନ ଥିବାରୁ (୪୦) ସେ ରାଜାପୁଅ ନଦରରୁ ଅଲଙ୍କାର ଗଣ୍ଠି ଏ ଆଣି ରତ୍ନପ୍ରଭାକୁ ଦେଇ ବିନୟ କରି କହିବା ସମୟରେ କଟୁଆଳ କବାଟ ଫିଟାଇବାକୁ

ତାହାନ୍ତେ ସେ ବିନୋଦକନ୍ଧ ଅଳଙ୍କାର ଗଣ୍ଠିକି ପଲଙ୍କ ତଳକୁ ଫିଙ୍ଗିଢ଼ ଯୋଗ ଦେଇ ଭୟରେ ଗମ୍ଭିର ଘରେ ଯାଇ ଲୁଚିଲା । ରତ୍ନପ୍ରଭା ଦୁଆର ଫିଟାଇ ଦେଇ ପଥିକ ସମ୍ଭାବନା କରି ତାହାନ୍ତେ ସେ ଆସି ମୁଦ୍ରା ଗଣ୍ଠିକି ପଲଙ୍କ ତଳକୁ ଗୁପ୍ତ କରି ରଖି ଦେଇ ବାହାରକୁ ପାଦ ଧୋଇବାକୁ ଅଇଲା । ରତ୍ନପ୍ରଭା ବିଚାରିଲା ଏ ତ ପଲଙ୍କ ତଳକୁ ହାତ ବଢାଇଲା, ଅଳଙ୍କାର ଗଣ୍ଠି ଦେଖିଲା ପରି ! ଏମନ୍ତ ବିଚାରି ସେ ଅଳଙ୍କାର ଗଣ୍ଠି ଆନଠାରେ (୪୧) ରଖିବ ବୋଲି ପଲଙ୍କ ତଳୁ ଆଣନ୍ତେ ମୁଦ୍ରାଗଣ୍ଠି ତା ହାତେ ପଡ଼ିଲା, ପଥି ଆସୁ ଆସୁ ତାହା ରଖି ଦେଇ ନ ପାରି ଦାଣ୍ଡବାଡ଼ି ଗବାକ୍ଷଦ୍ୱାରା (୪୨) ବାଟେ ପକାଇ ଦେଲା ।

ଏଥି ଭିତରେ ମଞ୍ଜୁଳରୂପ ବଣିଆ ଧନଗଣ୍ଠି ଶବଦ କଅନ୍ତେ ବହୁତ ବିଳାପ କଲା । ରାତି ଦୁଇ ଘଡ଼ିରେ କେଳିକାଞ୍ଚନ ନଗରକୁ ଅଇଲା, ବିଚାରିଲା ଏ ତ ରାତି କାଳ ଏତେବେଳେ କଉଁ ରାଜା କି ମନ୍ତ୍ରୀଠାକୁ ଯିବି, କେ ଅବା ମୋ ଗୁହାରି ଶୁଣିବ । ରାତି ପାହିଲେ କାଲି ଯଉଁ ଉପାୟ ଦିଶିବ ତାହା କରିବି । ଭଲା ଏ ନଗ୍ର ଚୋର ଛଣ୍ଡାଳୀ (୪୩) କଥା ଯିନା କଟୁଆଳ ବୁଝିଇ । ତାହା ନ ଜାଣି ତ କିଛି ନାହିଁ, ଆଜ ରାତି ଏହା ଓଳିରେ (୪୪) ଛପି ରହିବି, ଏଥୁଁ ଅବା କିଛି ସନ୍ଧେଶ (୪୫) ମିଳିବ । ଏମନ୍ତ ବିଚାରି ସେ ବଣିଆ ଆସି ସେହି ଗବାକ୍ଷ ଅଡ଼ଙ୍ଗ ତଳେ (୪୬ ଛପି ରହିଲା (୪୭) । ରାଜାପୁଅ କଟୁଆଳ ରାତିଆ ଉଚ୍ଚ ପ୍ରଯୁକ୍ତ ସବୁ ଶୁଣୁଥାଇ । କଟୁଆଳ ଆସିବାର ଜାଣିଲା, ଏହି ସମୟରେ ରତ୍ନପ୍ରଭା ଧନଗଣ୍ଠି ପକାଇ ଦଅନ୍ତେ ତା ପାଖେ ପଡ଼ିବାରୁ ସାଉଁଟି ରଖିଲା । ଆପଣା ଗଣ୍ଠି ଚିହ୍ନି ମହା ଆନନ୍ଦରେ ଧନ ଘେନି ବାହାରିଗଲା । କଟୁଆଳ ପାଦ ଧୋଇ ଆସି ଭୋଜନ ସାରି ମନେ ବିଚାରିଲା ଏ ଗଣ୍ଠି ନେଇ ମନ୍ତ୍ରୀଙ୍କି ଦେବି । ଏ ଧନ ପାଇଲେ ମନ୍ତ୍ରୀ ମୋତେ ବଡ଼ ଉପକାର କରିବ । ରତ୍ନପ୍ରଭା ଦେଖିଲେ ଲୋଭ କରି ରଖିବ ଯିନା । ଏମନ୍ତ ବିଚାରି ରତ୍ନପ୍ରଭା ନ ଥିବା ସମୟରେ ପଲଙ୍କ ତଳୁ ଗଣ୍ଠି ଆଣନ୍ତେ ମୁଦ୍ରାଗଣ୍ଠି ତ ରତ୍ନପ୍ରଭା ନେଇଛି ଅଳଙ୍କାର ଗଣ୍ଠି କଟୁଆଳ ହାତେ ପଡ଼ିଲା । ତାହା ଆଣିବା ଗଣ୍ଠି ବିଚାରି ବସ୍ତ୍ର ଘୋଡାଇ ହୋଇ ବାହାର ହୋଇ ମନ୍ତ୍ରୀଠାକୁ ଗଲା । ସେ ଗଣ୍ଠି ନେଇ ମନ୍ତ୍ରୀଠାରେ ଭେଟନ୍ତେ ମନ୍ତ୍ରୀ ସେ ଗଣ୍ଠି ଫିଟାଇ ଦେଖିଲେ ଦିବ୍ୟ ଅଳଙ୍କାର ମୁଣ୍ଡଏ । ମନ୍ତ୍ରୀ ବିଚାରିଲେ ଏ ତ ରାଜଯୋଗ୍ୟ ଅଳଙ୍କାର । ମୁଁ ଏହା ରାଜାଙ୍କ ଛାମୁରେ ଦେବି । ଏ ଭୂଷଣ ପାଇଲେ ରାଜା ମୋଠାରେ ବଡ଼ ସ୍ନେହ କରିବେ । ଏମନ୍ତେ ସେ ଅଳଙ୍କାର ରାଜାଙ୍କ ଛାମୁରେ ନେଇ ଦେଲା । ରାଜା ଦେଖି ବିଚାରିଲେ ଏ ରତ୍ନ ଅଳଙ୍କାର ତ ଆମ୍ଭେ ରାଣୀଙ୍କି ଦେଇଥିଲୁଁ, ଏ ମନ୍ତ୍ରୀଠାକୁ କିରୂପେ ଅଇଲା । ଏମନ୍ତେ ମନରେ ବହୁତ ଆଶଙ୍କା କରି ମନ୍ତ୍ରୀଙ୍କି ଏକାନ୍ତରେ ପଚାରିଲେ. ଆହେ ମନ୍ତ୍ରୀ, ଏ ରତ୍ନ ଅଳଙ୍କାର ତୁମେ କାହୁଁ ଆଣିଲ ସତ୍ୟ କହ, ନୋହିଲେ ପ୍ରାଣ ଯିବ ।

ମନ୍ତ୍ରୀ ଏହା ଶୁଣି କାତର ହୋଇ କହିଲା, ହେ ମହାରାଜା, ଏ ଅଲଙ୍କାର ମୋତେ ଭ୍ରମଣ ସିଂହ ଦେଲା, ମୁଁ ବିଚାରିଲି ଏ ତ ରାଜଯୋଗ୍ୟ ଅଲଙ୍କାର ଏହା ରାଜାଙ୍କୁ ଦେବି । ଏ ଘେନି ଗ୍ରାମୁରେ ଦେଲି । କଣ୍ଟିଆଳ କାହୁଁ ଆଣି ମୋତେ ଦେଲା ତାହା ମୁଁ ନ ଜାଣେ । ମନ୍ତ୍ରୀ ଏହା କହନ୍ତେ ରାଜା ଭ୍ରମଣ ସିଂହକୁ ଡକାଇ ଏକାନ୍ତ ଅବକାଶରେ ପଚାରିଲେ, ଆରେ ଭ୍ରମଣ ସିଂହ ଏ ଅଲଙ୍କାର ତୁ କାହୁଁ ଆଣି ମନ୍ତ୍ରୀଙ୍କି ଦେଲୁ ତାହା କହ । କଣ୍ଟିଆଳ ଏହା ଶୁଣି ବଡ଼ କାତର ହେଲା । ମନେ ବିଚାରିଲା ଏଥକୁ ବୁଦ୍ଧି ଦିଶୁନାହିଁ, କାହୁଁ ଆଣିଛୁ ବୋଲି କହିବ । ଏମନ୍ତ ଭାଳି ବୋଇଲା ହେ ମହାରାଜା, ଏ ମୋ ଘରେ ଥିଲା, ଘରୁ ଆଣି ମନ୍ତ୍ରୀଙ୍କି ଦେଲି, ଏମନ୍ତ କହି ସ୍ତବ୍ଧ (୪୮) ହୋଇ ରହନ୍ତେ ରାଜା ବିଚାରିଲେ ଏ କଣ୍ଟିଆଳ ନଗର ଭିତର ଅଲଙ୍କାର କି ରୂପେ ନେବାର ବୁଦ୍ଧି ବସିଲେ ଏ କଥା ବଡ଼ ଅସୁନ୍ଦର ହେବ । ଏହା ପ୍ରକାଶ କରିବାର ଉଚିତ ନୁହଇ । ରାଣୀଙ୍କ ଅଙ୍ଗ ଅଲଙ୍କାର ସରକ (୪୯) ନେଲାଣି । ଏହାର ଅକୃତ ହୋଇ (୫୦) ଆଉ କଉଁ କଥା ଅଛି । ଏ ଆମ୍ଭ ପ୍ରାଣକୁ ପାଞ୍ଚି ପାରଇ (୫୧) । ଏମନ୍ତେ ବିଚାର କଣ୍ଟିଆଳକୁ ଚାହିଁଲେ ଯେ ତା ମୁଖ ଜଳ ଗଳନ (୫୨) । ଭୟରେ ଦେହ କମ୍ପମାନ ହୋଉଛି । ରାଜା ବିଚାରିଲେ ଏ କଣ୍ଟିଆଳ ତ ବଡ଼ ଦୋଷୀ । ଏହାକୁ ପ୍ରାଣେ ମାରିବାର ଉଚିତ ଠଅଇଲା (୫୩) । ଏମନ୍ତ ବିଶ୍ୱାସ ଲୋକ ଜଣକୁ କହିଲେ ଭ୍ରମଣ ସିଂହକୁ ପ୍ରାଣେ ମାର । ରାଜାଙ୍କ ଆଜ୍ଞାରେ ଚଣ୍ଡମୁଖ ନାମେ ସେନାପତି ଯାଇ ଭ୍ରମଣ ସିଂହ ମୁଣ୍ଡ କାଟି ପକାଇଲା । ରାଜାଙ୍କ ଅର୍ଜିତ ଧନ ରାଜା ପାଇଲେ, ବଣ୍ୟ ଧନ ବଣ୍ୟ ପାଇଲା । ଆହେ ଗୋସାଇଁମାନେ କଣ୍ଟିଆଳ ଯେ ମାରି ଗଲା (୫୪) ଏ ହତ୍ୟା କାହାର ହେବ କହିବା ହୋଉ ।

ଏହା ଶୁଣି ବ୍ରାହ୍ମଣମାନେ ହତ୍ୟା କାହାର ହେବ ବିସ୍ମରୁଁ ବିସ୍ମରୁଁ ଚନ୍ଦ୍ରକଣ୍ଠିକା ଶାରୀ କହିଲା, ଆହେ ବିପ୍ରମାନେ, ବିମୂର୍ତ୍ତିଷ୍ଟ କଥା ତ ଶୁଣିବା ହେଲା । ମୁଁ ତେବେ ଆଉ ପ୍ରସଙ୍ଗଟିଏ କହିବି, ଶୁଣିବା ହୋଉ ମାତ୍ର ଏଥିର ନ୍ୟାୟ ମୋତେ କହିବା ହେବ । ବ୍ରାହ୍ମଣମାନେ କହିଲେ, ଆଚ୍ଛା କହ ତେବେ ଶୁଣିବା । ଚନ୍ଦ୍ରକଣ୍ଠିକା ଶାରୀ କହୁଅଛି—

ସେ ଯେ ସରଦ୍ୱୀପ ନାମେ ଏକ ରାଜ୍ୟ ଅଛି, ସେ ରାଜ୍ୟ ରାଜାପୁଅ ନାମ ରସିକମାଳୀ, ମନ୍ତ୍ରୀପୁଅ ନାମ ନେତ୍ରମଣ୍ଡନ, ସାଧବପୁଅ ନାମ ହେମଗୌର ଏରୂପେ ତିନିଜଣ ମିତ୍ରତା ହୋଇଥାନ୍ତି (୫୫), ସମସ୍ତଙ୍କର ଯୁବା ବୟସ ।

କାମସମାନ ସୁନ୍ଦର, ଦ୍ରୋଣସମାନ ବୀରବର,
କର୍ଣ୍ଣସମାନ ଦାତା, ଭୀମସମାନ ମାତା
ହସି ଚାହିଁଲେ ଯୁବତୀ ଚିତ୍ତ ଲୋଟେ ଯୋଗ ତେଜି ଢଳି ପଡ଼ିବେ ମୁନି (୫୬) ।

ଏ ଉଭୟ ମିତ୍ରଙ୍କ ଅନୁରୂପେ କନ୍ୟା ନ ମିଳିବାରୁ ବିଷ୍ଣ ହୋଇ ନ ଥାନ୍ତି, ଉତ୍ତମ କନ୍ୟା ମିଳିଲେ ବିଭା ହେବେ ଏହି ଭାବନା କରୁଥାଆନ୍ତି । ଏମନ୍ତ ପ୍ରୀତିବନ୍ତ ସେ 'ନୀର କ୍ଷୀର ପରି ଅଭେଦ, ବଜ୍ର ପରି ଦୃଢ଼ତର, ଚନ୍ଦ୍ରମା ପରି ନିର୍ମଳ, ଅମୃତ ପରି ମଧୁର,' ଏହିରୂପେ ସେ ସୁଦୃଢ଼ ହୋଇଥାନ୍ତି (୫୭) ।

ଏମନ୍ତେ ଏକ ଦିନକରେ ସେ ଉଭ ମିତ୍ର ମୃଗୟା କରିବାକୁ ଅଶ୍ୱ ଆରୋହଣ କରି ବନସ୍ତକୁ ଚଳିଲେ । ବନରେ ଭ୍ରମଣ କରନ୍ତେ ବସନ୍ତପୁର ବୋଲି ଏକ ଗିରିବର (୫୮) ଥିଲା ସେ ଠାବେ ତଳେ ପ୍ରବେଶ ହେଲେ । ଦେଖିଲେ ସେ ପର୍ବତ ଉପରକୁ ବାଟ ଗୋଟିଏ ପଡ଼ିଛି, ବିସ୍ତରଲେ ଦେଖିଯିବା । ଏମନ୍ତେ ଅଶ୍ୱରୁ ଉତୁରି (୫୯) ପାଦଗତିରେ ପର୍ବତ ଉପରକୁ ଉଠିଲେ । କେତେଦୂରେ ଯାଇଁ ଦେଖିଲେ ଧ୍ୟାନାନନ୍ଦ ଗୋସାଇଁଙ୍କ ଆଶ୍ରମ । ପୁଣି ସେ ଗିରି ଏମନ୍ତ ମହିମା ସେ ଠାବେରେ ବୃଦ୍ଧଜନ ମିଳିଲା ମାତ୍ରକେ କନ୍ଦର୍ପ ପରି ତରୁଣ ହୁଅନ୍ତି । ଠାବେରେ ପୁଣି ଅଶେଷ ତରୁମାନେ ଅଛନ୍ତି ।

ଜାତି ମଲ୍ଲୀ ମାଳତୀ, କାଞ୍ଚନ ସେବତୀ ଯୂଥୀ, (୬୦)
ତଗର ତଗର କୁନ୍ଦ, ଶତଦଳ ଅରବିନ୍ଦ,
ବନ୍ଧୁଲି କଆଳୀଗଣ, ଦମ୍ଫଣା ମାଳତୀ ପୁଣ,
ଲବଙ୍ଗ ପୁଷ୍ପିତ ଲତା,(୬୧) ପାରିଜାତକ ଶୋଭିତା,
ହେନ୍ତାଳ ତାଳ, ଶାଳ ରସାଳ, କରୁଣା କମଳା, ନାରଙ୍ଗ ଅଁଳା,
ଲଗି ମଳୟ ପବନ, ତରୁମାନେ ଶ୍ରୀଚନ୍ଦନ,
ଅମୃତ ସମାନ ଫଳ
ଧାତ ଫୁଟି ପଡ଼ୁଛନ୍ତି ବୃକ୍ଷମାନଙ୍କର ତଳ;
ଯେବଣ ଗିରି ପ୍ରବେଶେ

ସର୍ବଦା ଋତୁମାନଙ୍କୁ ଯେକ ମନୋହରଗ୍ଲାନ (୬୨) ଆନନ୍ଦ ମନରେ ବସେ । ଏମନ୍ତ ଯଉଁ ଗିରିବର ତା ମଧ୍ୟରେ ଚନ୍ଦ୍ରଭାଗା ନାମେ ଏକ ନଦୀ ବହୁଅଛି । ସେଠାରେ ଯାଇଁ ଏ ଉଭ ମିତ୍ର ପ୍ରବେଶ ହେଲେ । ଦେଖିଲେ ସେ ନଦୀ ଭିତରେ ସ୍ଫଟିକର (୬୩) ମଣ୍ଡପ ଗୋଟିଏ ଅଛି, ସେ ମଣ୍ଡପ ଉପରେ ଏକ କନ୍ୟା ବସିଅଛି, ତାହାର ଶୋଭା କି କହିବା—

ହେମ ହରିତାଳ ଅଙ୍ଗ ପ୍ରବାଳ ଓଷ୍ଠ ରଙ୍ଗ
ଯାହାର ନୟନ ଶୋଭାକୁ ସମ ନୋହି ବନରେ ପଶିଲେ ମୀନ,
ଖଞ୍ଜନ କୁରଙ୍ଗ
ଅଧରେ ପ୍ରକାଶ ମନ୍ଦ ମନ୍ଦ ହାସ,
ହେମକୁମ୍ଭ କୁଚ ଯେକ ବାହାରକୁ ପ୍ରକାଶ ହୋଏ ଫୁଟି କ୍ଷୀଣବାସ (୬୪) ।

ସେ କନ୍ୟାକୁ ଦେଖି ଏ ତିନି ମିତ୍ର ମୋହିତ ହୋଇ ଚିତ୍ରପିତୁଳା (୬୫) ପରି ରହିଲେ । ଅଙ୍କୁଶ ଯୋଗରେ ହସ୍ତି ବନ୍ଧୀ ହେଲା ପରି ପାଦମାନ ନ ଚଳିଲା । ତା ଶୋଭାଜଳରେ ପଡ଼ି ନୟନମୀନ ମଗ୍ନ ହୋଇ ରହିଲା (୬୬) । ଏ ତିନି ମିତ୍ରଙ୍କୁ ଚାହିଁ ସେ ଚିତ୍ରାଙ୍ଗୀ କନ୍ୟା ମନରେ କି ଭାବନା କରି ଆପଣାର ହସ୍ତ ପ୍ରସାରି ଦେଖାଇଲା । ତାହା ଦେଖି ରାଜାପୁଅ, ସାଧବପୁଅ କିଛି ନ କହିଲେ । ମନ୍ତ୍ରୀପୁଅ କି ଜାଣିପାରି ଆପଣା ପାଦରେ ଶିରା (୬୭) ଛିଅଗୋଟି କାଟିଲା । ସେ କନ୍ୟା ଏହା ଦେଖି ଦୁଇ ହାଥ ଛନ୍ଦି ମନ୍ତ୍ରୀପୁଅ ଗଳାକୁ ଚାହିଁ ଭିତର ପୁରକୁ ଗଲା । ତା ମରମ କଥା ମନ୍ତ୍ରୀପୁଅ ଏକା ଜାଣିଲା, ଏମନ୍ତେ ସେଠାରୁ ସେ ତିନି ମିତ୍ର ଆସି ଧ୍ୟାନାନନ୍ଦଙ୍କ ଆଶ୍ରମରେ ମିଳିଲେ । ଦେଖିଲେ ଗୋସାଇଁ ଯୋଗଧ୍ୟାନରେ ବସିଅଛନ୍ତି । କେତେବେଳ ଉତ୍ତାରୁ ଧ୍ୟାନ ଭାଙ୍ଗନ୍ତେ (୬୮) ଦେଖିଲେ, ଏ ତିନି ମିତ୍ର ଦଣ୍ଡ ପ୍ରଣାମ କରି କୃତାଞ୍ଜଳି (୬୯) ହୋଇ ଉଭା ହୋଇଛନ୍ତି । ଗୋସାଇଁ ବୋଇଲେ ରେ ବାବୁ, ତୁମ୍ଭେ କି କାର୍ଯ୍ୟରେ ଅଇଲ । ଏ କହିଲେ, ଗୋସାଇଁ ତ ଅନ୍ତର୍ଯାମୀ ଆମ୍ଭେ କି କହିବୁଁ । ଗୋସାଇଁ ଧ୍ୟାନରେ ଜାଣି କହିଲେ, ତୁମ୍ଭେ କନ୍ୟା କାମନାରେ ଆସିଅଛ । ଆଚ୍ଛା, ଏଠାରେ ଚିତ୍ରାଙ୍ଗୀ ନାମେ ଏକ କନ୍ୟା ଅଛି । ତୁମ୍ଭେ ଯେବେ ଏହା କରିପାରିବ ତେବେ କନ୍ୟା ବଶ୍ୟ ହେବ । ଆମ୍ଭର କାଲି ସିଦ୍ଧକର୍ତ୍ତିକା ବ୍ରତ ହେବ, ତୁମ୍ଭେ ଯେବେ ଏ ତିନି ଦ୍ରବ୍ୟ ଆଣି ପାରିବ । ଦକ୍ଷିଣ ଦିଗରେ ସମୁଦ୍ର ଭିତରେ ନାଗବଲ୍ଲୀ ଦ୍ୱୀପରେ କୃଷ୍ଣମଲ୍ଲୀକା(୭୦) ଅଛି, ଉତ୍ତର ଦିଗରେ ସମୁଦ୍ର ମଧ୍ୟରେ ସୁବର୍ଣ୍ଣ କେତକୀ (୭୧) ଅଛି, ପଶ୍ଚିମ ଦିଗରେ ସମୁଦ୍ର ମଧ୍ୟରେ ରଜତ କୁନ୍ଦୁରି (୭୨) ଅଛି । ଏହା ଯେ କାଲି ଆମ୍ଭ ବ୍ରତ ବେଳକୁ ଆଣି ଦେବ ସେ କନ୍ୟା ବଶ୍ୟ ହେବ ମନକ ଯେ ଆଗ ଫୁଲ ଘେନି ପ୍ରବେଶ ହେବ, ସେ ବଶ୍ୟ ହେବ, ଏଥିକୁ ବିଚାର କର । ଏହା ଶୁଣି ରାଜାପୁଅ, ସାଧବପୁଅ ଦୁହେଁ କହିଲେ,

ଗୋସାଇଁ, ଆମ୍ଭର ଏମନ୍ତ ବଳ
ପ୍ରଭାତ କାଳୁଁ ପୃଥ୍ୱୀ ପର୍ଯ୍ୟଟନ କରି ଆସିବୁଁ
ନୋହୁଥିବ ସନ୍ଧ୍ୟା କାଳ ।

ଏମନ୍ତ କହି ସେ ଦୁଇମିତ୍ର ଗୋସାଇଁଙ୍କ ଓଳଗି ରାଜାପୁଅ ଗଲା ଦକ୍ଷିଣ ଦିଗକୁ ସାଧବପୁଅ ଗଲା ଉତ୍ତରି ଦିଗକୁ । ଇଷ୍ଟମନ୍ତ୍ର ସୁମରଣା କରି (୭୩) ପବନଠୁଁ (୭୪) ବେଗ ଚଳିଗଲେ । ମନ୍ତ୍ରୀପୁଅ ପଶ୍ଚିମ ଦିଗକୁ ଗଲାପରି ଗୁପ୍ତ ହୋଇ ଚିତ୍ରାଙ୍ଗୀ କନ୍ୟା ପାଶକୁ ଅଇଲା । ଚିତ୍ରାଙ୍ଗୀ କନ୍ୟା ମନ୍ତ୍ରୀପୁଅକୁ ଦେଖି ବହୁତ ଆଦରରେ ଦିବ୍ୟ ଆସନରେ ବସାଇ କହିଲା ହେ ପ୍ରିୟତମ ସବୁ କୁଶଳ ତ ? ମନ୍ତ୍ରୀପୁଅ ବୋଇଲା ରେ ବାଳା, ମୋ ସବୁ କୁଶଳ ତୋ ଅଙ୍ଗୀକାର ବିନା । ସେଠାରୁ ରାଜାପୁଅ, ସାଧବପୁଅ ଗୋସାଇଁଙ୍କ ବୋଲରେ ଫୁଲ ଆଣିଯିବା ଚରିତ କହନ୍ତେ ଚିତ୍ରାଙ୍ଗୀ କହିଲା, ମୋ ପ୍ରାଣ ତ ତୁମ୍ଭଙ୍କୁ

ବିକ ଦେଇଛୁ. ତୁମ୍ଭେ ମନକୁ କାହିଁକି ଅସ୍ଥିର କରୁଛ । ପୂର୍ବ ସୂର୍ଯ୍ୟ ପଶ୍ଚିମରେ ଉଇଁଲେ ଏ କଥା ଅନ୍ୟା ଆନ ହେବ । ହେ ବନ୍ଧୁ ଶୁଣ, ବୋଲି ଚନ୍ଦ୍ରାଙ୍ଗୀ ଏ ଗୀତ ଗାଇଲା—

କୁମୁଦ ଚନ୍ଦ୍ରମା ପ୍ରୀତି ହେ, କେ କରନ୍ତି ପ୍ରାଣପତି ହେ,
ରବି ପଦ୍ମ ଭାବ କେ ବର୍ଣ୍ଣି ପାରିବ ଯୁଗେ ଯୁଗେ ଅଛି ଖ୍ୟାତି ହେ । ୧ ।
ସମାନ କାମକୁ ରତି ହେ, ସମ ଶଚୀ ଦେବପତି ହେ,
ଘନକୁ ବିଜୁଳି କମଳକୁ ବାରି ନିଶି ଚନ୍ଦ୍ର ଏହି ମତି ହେ । ୨ ।
ରସେ ଯାହା ମନ ଯହିଁ ହେ ସେ ତାହା ଛାଡ଼ିବ କାହିଁ ହେ,
ମଳୟ ପବନ ଛାଡ଼େ କି ଚନ୍ଦନ ତରୁ ତହିଁଥିଲେ ଅହି ହେ । ୩ ।
ଯା ମନ ନ ରସେ ଯହିଁ ହେ କେ ତା ମିଳାଇ ପାରଇ ହେ,
ଚମ୍ପାଫୁଲ ତହିଁ କଉଁ ଗୁଣ ନାହିଁ ତାକୁ ଭୃଙ୍ଗକରେ ଦ୍ରୋହୀ ହେ । ୪ ।
ସରସୀକି ଶୋଭା କଞ୍ଜ ହେ ଗଗନକୁ ଦ୍ଵିଜରାଜ ହେ,
ପୁରୁଷକୁ ଗୁଣ ତନୁକୁ ଭୂଷଣ ଯୁବତୀମାନଙ୍କୁ ଲାଜ ହେ । ୫ ।
ସଦା ମୁଁ ଦାସୀ ତୁମ୍ଭର ହେ ତୁମ୍ଭେ ମୋର ପ୍ରାଣେଶ୍ଵର ହେ,
ମନମାଳା ଦେଇ ବରୁଅଛି ମୁହିଁ ସଂଶୟ କିଛି ନ କର ହେ । ୬ । (୭୫)

ଏମନ୍ତ ଶୁଣି ସେ ମନ୍ତ୍ରୀପୁଅ ମହାଆନନ୍ଦ ହେଲା । ଯାଇଁ ଖଣ୍ଡେ ଦୂରରେ ବନସ୍ତ ଭିତରେ ଗୁପ୍ତ ହୋଇ ରହିଛି । ରାଜାପୁଅ ସାଧବପୁଅ ଦୁହେଁ ସୁବର୍ଣ୍ଣ କେତକୀ କୃଷ୍ଣମଲ୍ଲୀକା ଘେନି ଏକାବେଳକେ ଧ୍ୟାନାନନ୍ଦଙ୍କ ସମ୍ମୁଖରେ ମିଳିଲେ । ଦୁହେଁ ଦୁଇ ଫୁଲ ଥୋଇ ଗୋସାଇଁଙ୍କି ପ୍ରଣାମ କଲେ । ତହିଁଉତ୍ତାରୁ ମନ୍ତ୍ରୀପୁଅ ତୁଚ୍ଛା ହାତରେ ଆସି ଗୋସାଇଁଙ୍କି ଓଳଗି କହିଲା ମୁଁ ରଜତ ଦୂଦୁରା ପାଇଲି ନାହିଁ । ଗୋସାଇଁ ତିନିଙ୍କ ମୁଖକୁ ଚାହିଁଲେ ଯେ ଦେଖିଲେ ମନ୍ତ୍ରୀପୁଅ ମୁଖ ପ୍ରସନ୍ନ ଶୁଚି, ମନେ ବିଚାରିଲେ ଏ କିଛି ବିଧାତା ଘଟଣା ଅଛି ପରା ! ସେ ତ କାଲି କଥା ନ କରି ପାରଇ, ନ କାଲି କଥା କରି ପାରଇ । ଏମନ୍ତେ ଯୋଗଧ୍ୟାନରେ ବିଚାରନ୍ତେ ଚନ୍ଦ୍ରାଙ୍ଗୀ କନ୍ୟା ମନ୍ତ୍ରୀପୁଅକୁ ବରଣ କରିବା କଥା ହୃଦରେ ପ୍ରକାଶ ହେଲା । ବିଚାରିଲେ ବଡ଼ ବିଷମ ହେଲା । ଏ ଦୁହେଁ ଏତେ କଷ୍ଟରେ ଫୁଲ ଆଣି କାହିଁରେ ନୋହିଲେ । ମନ୍ତ୍ରୀପୁଅ ବସିଲାଠାରେ କନ୍ୟା ବଶ ହେବ, ଏହା ବିଧାତା କରୁଛି । ଆମ୍ଭେ କେମନ୍ତେ କରିବା । ଏଥିରେ ଆମ୍ଭ କଥା ଅବା କି ରହିଲା । ଏହା ବିଚାରି କହିଲେ, ଆରେ ରସିକମାଳୀ, ହେମଗୌର, ତୁମ୍ଭେ ଦୁହେଁ ତ ଏକାବେଳକେ ଫୁଲ ଆଣିଲ, ଏଥୁଁ କେ କନ୍ୟା ନେବ ? ଏ ତ ସୁନା ରୁପା ମୋତି ମାଣିକ୍ୟ ନୁହଇ, ଏମାନ ହୋଇଥିଲେ ସିନା ବାଣ୍ଟି ନିଅନ୍ତ । ସେ ତ ଯୁବତୀ, ଏକ ବିନା ଆନକୁ ନ ଛୁଇଁବ । ଏଥକୁ ପଚାରୁଛୁଁ ଏ କନ୍ୟା କାଏ ବଶ ହେବ

ବିସ୍ତରି କହି । ବିଧାତା ଘଟଣା ଯାହାକୁ ଥିବ ସେ ତ ବିଭା ହେବ । ଆମ୍ଭ ତୁମ୍ଭ ଇଚ୍ଛାରେ ତ ଏ କଥା ନାହିଁ ।

ଏରୂପେ ଧ୍ୟାନାନନ୍ଦ ଗୋସାଇଁ ଆଜ୍ଞା କରିବାରୁ ଚମ୍ପକଣ୍ଠିକା ଶାରି କହି ବୋଇଲା, ଆହେ ଗୋସାଇଁମାନେ ଏ କନ୍ୟା କାଏ ବିଭା ହେବ ଏହା ବିସ୍ତରି କହିବା ହେଉ ।

ଚମ୍ପକଣ୍ଠିକା ଶାରିଠାରୁ ଏମନ୍ତ ଶୁଣି ବ୍ରାହ୍ମଣମାନେ ଏ ନ୍ୟାୟ ଅନୁମାନ କରି ବସନ୍ତେ ପୁଣି ବିମ୍ବଓଷ୍ଠ ଶୁକ କହୁଛି ଆହେ ଗୋସାଇଁମାନେ, ଚାରି ବେଦ (୭୬) ଛଅ ଶାସ୍ତ୍ର, (୭୭) ନଅ ବ୍ୟାକରଣ (୭୮) ଅଷ୍ଟାଦଶ ପୁରାଣ, (୭୯) କାବ୍ୟ (୮୦) ନାଟକ, ଅଳଙ୍କାର କଉତୁକ, ଶିଳ୍ପୀ ସଙ୍ଗୀତ, ଜ୍ୟୋତିଷ, ପାଠତନ୍ତ୍ର, ବୈଦ୍ୟବିଦ୍ୟା, ଶାସ୍ତ୍ରବିଦ୍ୟା, ଧର୍ମକର୍ମବିଚାରଣା ଇତ୍ୟାଦି ନାନାପ୍ରକାର ପାଠଶାଠରେ ତ ଆପଣମାନେ ନିପୁଣ । ମୁଁ ଏକ କଥାଏ କହୁଛି, ଏ ନ୍ୟାୟ ଅନୁମାନ କରି କହିବା ହେବ ।

ସେ ସେ ଗନ୍ଧର୍ବକୂଳ ନାମେ ଏକ ଗୋପାଳ ଜଣେ ଥିଲା । ତାହା ଭାରିଯା ନାମ ବିନୋଦିନୀ । ବିମ୍ବା ବୋଲି ତାହାର ପୁତ୍ର ଗୋଟିଏ ଥାଏ । ଏମନ୍ତେ ସେ ଗନ୍ଧର୍ବକୂଳ ବହୁତ ଦୂରରେ ଚାକିରି କରିଥାଇ । ଛଅମାସ ବରଷକେ ଥରେ ଘରକୁ ଆସି ପୁତ୍ର ଭାରିଯା ଦୁହିଁଙ୍କି ଦେଖି ଅନ୍ନବସ୍ତ୍ରକୁ ଟଙ୍କା ଦେଇ ପୁଣି ବିଦେଶକୁ ଯାଏ । ତାହାର ଭାରିଯା ବିନୋଦିନୀ ବଳମୁଖା ନାମେ ନାପିତ ଜଣକ ସଙ୍ଗେ ପ୍ରୀତି କରି ତାଠାରେ ଅହର୍ନିଶି ଆସକ୍ତ (୮୧) ହେବାରୁ ସେ ନଗ୍ର ଲୋକମାନେ ବହୁତ ଆକଟ କଲେ (୮୨) । ଏ ଭୟରେ ସେ ଦୁହେଁ ଫରସ୍ତ କରି ପ୍ରୀତି କରି ନ ପାରିବାରୁଁ (୮୩) ବିଚାର କଲେ ଚାଲ ଏଠାରୁ ପଳାଇଯିବା । ଅନ୍ୟ ଦେଶରେ ନିଶ୍ଚିନ୍ତ ହୋଇ ରହିବା । ଏମନ୍ତେ ଗୋପାଳୁଣୀ ନାପିତ ସେ ପୁତ୍ରକୁ ଘେନି ଏକ ରାତିରେ ପଳାଇ ଗଲେ । ଚନ୍ଦ୍ରବିମ୍ବ ବୋଲି ଏକ ରାଜ୍ୟରେ ମାନଦଣ୍ଡ ନାମେ ମହାଜନ ଘରଠାରେ ପହୁଞ୍ଚିଲେ । ସେଠାରେ ବିଚାରିଲେ ଏ ପୁଅ ତ ଆସି ବଡ଼ ହେଲାଣି, ଏହା ସକାଶେ ଆମ୍ଭେ କାଲେ ଚିହ୍ନା ପଡ଼ିବା ସିନା । ଏହାକୁ ଏଠାରେ ବିକ୍ରୀ କରିଦେବା । ଏମନ୍ତେ ସେ ମହାଜନ ମାନଦଣ୍ଡକୁ କହିଲେ ଆମ୍ଭେ ଏ ପୁଅଟିକି ବିକରୁଁ, ତୁମ୍ଭେ ଟଙ୍କା ଦେଇ ଘେନ (୮୪) । ମାନଦଣ୍ଡ ସେ ବିମ୍ବାର ସୁନ୍ଦର ରୂପ ଦେଖି ପ୍ରଧାନ ମହାଜନମାନଙ୍କୁ ସାକ୍ଷୀ ବସାଇ ତା ମାଆଠାରୁ କ୍ରେୟପତ୍ର (୮୫) ଲେଖାଇ ବିମ୍ବାକୁ ରଖି ଟଙ୍କା ବୁଝି ଦେଲା । ନାପିତ—ଗୋପାଳୁଣୀ ଟଙ୍କା ଘେନି ସେଠାରୁ ବାହାରିଯାଇଁ ବହୁତ ଦୂରରେ ରହିଲେ । ମାନଦଣ୍ଡ ବିମ୍ବାକୁ ପୁତ୍ର ସମ କରି ପାଳିଥାଏ । ଏମନ୍ତେ କେତେ ଦିନ ଉତ୍ତାରୁଁ ସେ ମାନଦଣ୍ଡ ବିମ୍ବାକୁ ଘେନି ପାତାଳୀ ନାମେ ନଦୀତଟରେ ବସା କରି ରହି ବାଣିଜ୍ୟ କରୁଥାଏ । ଏକ ଦିନକରେ ସେ ପାତାଳୀ ନଦୀ ବାଟି ବୁଲି ଯାଉଛି । ଏହି ସମୟରେ

ବମ୍ଭା କୁମ୍ଭ ଘେନ ଜଳ ଆଣିବାକୁ ଗଲା । କୁମ୍ଭ ବୁଡ଼ାଇବା ବେଳେ ଲହଵଖ ବାଜ ପାଦ ଖସି ପିବାରୁ ସ୍ରୋତରେ ଯାଇଁ ପଡ଼ିଲା ।

ଏକେତ ଶ୍ରାବଣ ମାସ ବରଷାନଦୀ, ଦୁଇକୂଳ ବଢି ହୁଳୁଳ ଯାଉଛି ପବନ ନ ପାରେ ଖେଦ (୮୬) । ସେ ସ୍ରୋତ ଜଳରେ ଭସିଯାଇ ବମ୍ଭା ଉଭଇ ଟୁବାଇ ହୁଅନ୍ତେ ବିଧାତା ଯୋଗରେ ତାକୁ ବଡ଼ ଶୁଖିଲ କାଠ ଖଣ୍ଡେ ଆଶ୍ରା ହୋଇ ମିଳିଲା । ସେହି କାଠଖଣ୍ଡ ଧରି ବମ୍ଭା ମଝି ନଇରେ ଭସି ଯାଉଛି । ବିଦ୍ରୁମମାଳୀ ନାମେ ଏକ ରାଜ୍ୟ ଅଛି ଯେ ସେ ରାଜ୍ୟ ରାଜାଙ୍କ ନାମ ଚଣ୍ଡବାହୁ । ସେ ରାଜା ରତ୍ନନିଧି ନାମେ ରାଣୀଙ୍କି ଘେନି ଜଗତି (୮୭) ଉପରେ ବସି ପାତାଳୀ ନଦୀ ବଢି ଦେଖୁଅଛନ୍ତି ।

| | |
|---|---|
| ଭଉଁରୀ (୮୮) ତରଙ୍ଗ | ମଗର କୁମ୍ଭୀର ରଙ୍ଗ |
| ମହାତାରୁ (୮୯) ଭସିବା | ଗର୍ଜନ କରି ଆସିବା |
| ଅଚଳ ସମାନ ମେରୁ (୯୦) | ଉପୁଡ଼ି ପଡ଼ନ୍ତେ ତଟରୁ |
| ବହଳ ଫେନକୁଳ | ଜଳ ବର୍ଷି ପାଟଳ (୯୧) |

ନାନା ଜଉରୂକ ମାନ

ରାଜା ରାଣୀ ରହିବାରେ ନଦୀକି ବଡ଼ ଆନନ୍ଦ ଦୁହିଁଙ୍କର ମନ । ଏ ସମୟରେ କାଠ ଖଣ୍ଡକ ଉପରେ ବମ୍ଭା ଭସି ଯାଉଁ ଯାଉଁ ତାଠାରେ ରାଣୀଙ୍କ ନେତ୍ର ପଡ଼ିଲା । ଦେଖିଲେ ବାଳକୁଟିଏ (୯୨) ହାଥ ଗୋଡ଼ ଚଳ ଭସିଯାଉଛି, ତାହା ଦେଖି ଆରତ ହୋଇ (୯୩) ରାଜାଙ୍କୁ କହିଲେ ଦେଖ ମନୁଷଟିଏ (୯୪) ନଦୀରେ ଭସି ଯାଉଛି । ପିଲଟି ପ୍ରାଏ ବଞ୍ଚୁଛି । ମୋତେ ଏହାକୁ ଆଣିଦିଅ । ମୁଁ ଚରଣ ଧରି ମାଗୁଛି । ଏମନ୍ତ କହି ରାଜାଙ୍କ ପାଦ ଧରନ୍ତେ ଆପଣେ ରାଜା ବାହାରକୁ ଆସି ଲୋକ ଡକାଇ ନାଉରିମାନଙ୍କୁ ଅଣାଇ ପଠାଇଲେ ।

ଏଥି ଭିତରେ ଏକ ବୋହିତଥାଳ ସାଧବ ସେ ନଦୀ କୂଳେ ବୋହିତ ଖଟାଇ (୯୫) ରହିଥିଲା । ତା ଦୃଷ୍ଟି ବମ୍ଭାଠାରେ ପଡ଼ନ୍ତେ ମକରଚ୍ଛେଦନ ନାମେ ନାଉରିକି କହିଲା ପିଲଟିଏ ଭସି ଯାଉଛି । ତୁ ନାଆ ପକାଇ ତାକୁ ଆଣି ମୋତେ ଦିଏ । ମୁଁ ତୋତେ ଶହେ ଟଙ୍କା ଦେବି । ଏହା ଶୁଣି ସେ ନାଉରି ବହୁତ କଷ୍ଟରେ ସେ ପିଲକୁ ଧଇଲା । ଆଣି ବୋହିତଥାଳ ସାଧବକୁ ଦିଅନ୍ତେ ସାଧବ ସେ ପିଲକୁ ରଖି ନାଉରିକି ଶହେ ଟଙ୍କା ଗଣି ଦେଲା । ଅଗ୍ନି ଢିକଗୁ (୯୬) କରି ବହୁତ ଯତ୍ନରେ ସେ ପିଲକୁ ବଞ୍ଚାଇଲା ।

ତେଣେ ମହାଜନ ମାନଦତ୍ତଙ୍କୁ ଲୋକେ କହିଲେ, ତୋ ଟୋକାଟି ନଦୀରେ ଭସି ଗଲାଣି । ଶୁଣି ମାନଦତ୍ତ ଧାଇଁ ଆସି ଦେଖନ୍ତେ ବମ୍ଭାର ସଞ୍ଚାର କିଛି ନ

ବଢିଲା (୯୭) । ନାବ ଯେନ ବହୁତ ଦୂରକୁ ବୋଲି ଖୋଜି ଗଲେ ଯେ କଛୁ ଠାର (୯୮) ନ ପାଇଲେ, ମାନଦତ୍ତ ବମ୍ବାକୁ ନ ଦେଖିବାରୁ ବହୁତ ରୋଦନ କରି ନେଉଛି ଅଇଲା (୯୯) ।

ବୋହିତାଳ (୧୦୦) ସାଧବ ବମ୍ବାକୁ ନେଇ ବସାରେ ରଖିଲା । ତହିଁ ଷଷ୍ଠୀରୁ ଚଣ୍ଡବାହୁ ରଜା ନାଉରୀମାନଙ୍କୁ କହିଲେ, ପିଲଟିଏ ନଦୀରେ ଭସିଯାଉଛି । ତାକୁ ଯେ ଧରି ଅଣିଦେବ ସେ ପଞ୍ଚାଶ ଟଙ୍କା ପାଇବ । ଏହା ଶୁଣି ସତ୍ୱର ହୋଇ ନାଉରିମାନେ ନାଆ ପକାଇ ଖୋଜୁଛନ୍ତି, ଚଣ୍ଡବାହୁ ରଜାଙ୍କ ଗ୍ରୁମୁରେ ଖବର ହେଲା କ ବୋହିତାଳ ସାଧବ ପିଲାକୁ ଆଣିଲାଣି । ଏହାଶୁଣି ରଜା ଆପେ ସାଧବଠାକୁ ବିଜେ କଲେ, କହିଲେ ଆମ୍ଭେ ନାଆ ପଠିଆଇ ଥିଲୁଁ, (୧୦୧) ଏଥି ଭିତରେ ସିନା ତୁମ୍ଭେ ଧରିଅଣିଲ, ସେ ପିଲାକୁ ଆମ୍ଭଙ୍କୁ ଦିଅ । ଆମ୍ଭର ରଜ୍ୟ, ସବୁରୂପେ ତାଠାରେ ଆମ୍ଭର ବଳ ଅଛୁ, ଆମ୍ଭେ ଅବଶ୍ୟ ନେବୁଁ । ସାଧବ କହିଲା, ମୁଁ ନାଉରିକ ଶହେ ଟଙ୍କା ଦେଇ ନଦୀରୁ ଆଣିଲି । ତୁମ୍ଭ ନାଆ ଯିବା ବେଳକୁ ସେ କୋଉଠେ ଥିଅନ୍ତା । ତୁମେ କାହୁଁ ଧରନ୍ତ । ମୁଁ କଦାପି ନ ଦେବି । ରଜା ତୁମ୍ଭେ ଏଡ଼େ ଅନ୍ୟାୟ ନ କର ।

ଏମନ୍ତେ ରଜାଙ୍କର ସାଧବର ଦ୍ୱନ୍ଦ ହୁଅନ୍ତେ ବହୁତ ବଗରେ ବାର୍ତ୍ତା ପ୍ରବେଶ ହେଲା । ମାନଦତ୍ତ ଶୁଣି ତା କଣାପନ ଯେନ ସେଠାରେ ପହୁଞ୍ଚିଲା, କହିଲା ଏ ମୋ କଣା ଲୋକ । ନଦୀରୁ ପାଣି ନେବା ବେଳକୁ ଗୋଡ଼ ଖସିପିବାରୁ ଭସି ଅଇଲା । ମୁଁ ନାଆ ଯେନ ଆସୁଁ ଆସୁଁ ତୁମ୍ଭେ ଧଇଲ । ଏବେ ମୋ ଲୋକକୁ ମୋତେ ଦିଅ, ମୁଁ ନେବି ।

ଏରୂପେ ସେ ତିନିଜଣଯୋକ ବମ୍ବାକୁ ନେବାକୁ ଯୁକ୍ତ କରୁଥା'ନ୍ତି, ଏଥି ଭିତରେ ଗନ୍ଧବଂଜଳ ଗୋପାଳ ବିଦେଶରୁ ଘରକୁ ଆସନ୍ତେ ଦେଖିଲା ଘରେ କେହି ନାହାନ୍ତି । ସମସ୍ତେ କହିଲେ ତୋ ଭାରିଯା ପୁଅକୁଁ ଯେନ ଭଣ୍ଡାର ପଳାଇଲାଣି, ଏହା ଶୁଣି ଅତି ମନଦୁଃଖରେ ତାଙ୍କୁ ଦଗ୍ଧର ପଗ୍ଧର ଖୋଜୁଛି, ଅସି ଦଇବଯୋଗରେ (୧୦୨) ପ୍ରବେଶ ହୋଇ ଦେଖିଲା ତା ପୁଅ ବମ୍ବା ସାଧବ କୋଳେ ବସିଛି । ପୁଅକୁ ଦେଖି ହୃଦରେ କୋଡ଼ ହୋଇ କହିଲା ଏ ମୋର ଏକା ପୁଅ ଗୋଟିକ, ଏତେବେଳକେ ପ୍ରାଣ ଆସି ପାଇଲି । ମୋ ପୁଅକୁ ଦିଅ ମୁଁ ନେବି, ଏ ରୂପେ ସେ ଗୋପାଳ ଗୋଳ (୧୦୩) କରି ବସିଲା ।

ବମ୍ବଓଷ୍ଠ ଶୁକ କହୁଅଛୁ ହେ ଗୋସାଇଁମାନେ ଏ ବମ୍ବା ନ୍ୟାୟରେ କାହାକୁ ପ୍ରାପତ ହେବ, ଏହା କହିବା ହୋଉ । ଏମନ୍ତ ଶୁଣି ବ୍ରାହ୍ମଣମାନେ ଭାବନା କରି କେ ବୋଲଇ ରଜାର ପ୍ରାପତ, କେ. ବୋଲଇ ବାବୁର (୧୦୪) ପ୍ରାପତ, କେ କହଇ

ମହାଜନର ପ୍ରାପତ, କେ କହଇ ସାଧବର ପ୍ରାପତ, ଏରୂପେ ଆନ ଆନ କରି କହନ୍ତେ ନ୍ୟାୟ ନ ଛୁଡ଼ିଲା । ପରସ୍ପରରେ ଦ୍ୱନ୍ଦ ଉପୁଜିଲା ।

ଏହା ଶୁଣି ଶୁକ ଶାରିକା ଦୁହେଁ କହିଲେ, ହେ ଗୋସାଇଁମାନେ ଏରୂପେ ନାନାପ୍ରକାରେ କାହିଁକି ନ୍ୟାୟ କରୁଛ । ଆମ୍ଭେ ଯାହା କହୁଅଛୁଁ ଶୁଣ । ଯେବେ ବିମ୍ବା ବାବୁର ପ୍ରାପତ ହେବ, ତେବେ କୁନ୍ଦରେଖା ବାପା କୁଶଳକର୍ମା ଯଉଁ ବର କରିଛି— ଗୋପକଦମ୍ବ, ବିଭା ହେବ । ନାହିଁ, ମହାଜନ ମାନଦତ୍ତଙ୍କୁ ପ୍ରାପତ ହେବ, ତେବେ ମା'ଆ କରିଥିବା ବର ଚନ୍ଦ୍ର ଋଷି ବ୍ରାହ୍ମଣ ବିଭା ହେବ । ନାହିଁ, ରାଜାଙ୍କୁ ପ୍ରାପତ ହେବ, ତେବେ ଯାଇଁ ରାଜାଙ୍କୁ କହି ସେ ଯାହାକୁ ଦେବେ ସେ ବିଭା ହେବ । ନାହିଁ, ବୋହିତାଳ ସାଧବକୁ ପ୍ରାପତ ହେବ, ତେବେ ପୁଣ୍ଡ୍ରରାଜ ପଣ୍ଡା ବିଭା ହେବ ।

ଏମନ୍ତେ ଶାରି ଶୁକ କହନ୍ତେ ବ୍ରାହ୍ମଣମାନେ ଧର୍ମସୂକ୍ଷ୍ମ ପ୍ରମାଣେ (୧୦୫) ନାନାବିଧ ଶାସ୍ତ୍ରମାନ ବୁଝନ୍ତେ ବିମ୍ବା ବୋହିତଆଳ ସାଧବକୁ ପ୍ରାପତ ହେଲା, ଏହା ସମସ୍ତଙ୍କ ସମ୍ମତରେ କହିଲେ । ଏହା ଶୁଣି ଶୁକ ଶାରିକାଏ କହିଲେ, କାହିଁକି ବିମ୍ବା ସାଧବକୁ ପ୍ରାପତ ହେଲା କି ? ବ୍ରାହ୍ମଣେ କହିଲେ, ବାବୁ, ମହାଜନ, ରାଜା ଏମାନେ ଆଉ କି କଲେ ? ସାଧବ ଆଣି ନ ଥିଲେ ତ ତା ଜୀବନ ଯାଇ ଥାଆନ୍ତା ଆଉ ଘଡ଼ିକେ ସମୁଦ୍ରରେ ପଡ଼ିଥାନ୍ତା । ସାଧବ ତା ପ୍ରାଣ ରଖିବାରୁ ନ୍ୟାୟରେ ତାକୁ ପ୍ରାପତ ହେଲା ।

ତହୁଁ ଶୁକ ଶାରିକାଏ କହିଲେ, ତେବେ କୁନ୍ଦରେଖାକୁ ପୁଣ୍ଡ୍ରରାଜ ପଣ୍ଡା ବର ପ୍ରାପତ ହେଲା । ଏ ପୁଣ୍ଡ୍ରରାଜ ପଣ୍ଡାରେ କନ୍ୟାର ଯେଉଁ ସମ୍ବାଦ (୧୦୬) ଅଛି ତାହା ପଚାରି ଶୁଣ ।

ଶୁଣି ବ୍ରାହ୍ମଣମାନେ ପୁଣ୍ଡ୍ରରାଜ ପଣ୍ଡାକୁ ପଚାରିଲେ, ଏ କନ୍ୟାଠାରେ ତୋହର କି କମିତ୍ତ (୧୦୭) ଅଛି ତାହା କହ । ସେ କହିଲା, କନ୍ୟାଠାରେ ମୋର ଯଉଁ ନଷ୍ଟ (୧୦୮) ଅଛି, ତାହା ଏ ଶୁକ ଶାରିକା ଶୁଣି ଦେଖିଛନ୍ତି । ସେ କହନ୍ତୁ, ତାଙ୍କଠାରୁ ଶୁଣ । ବ୍ରାହ୍ମଣେ କହିଲେ, ହେ ଶୁକ ଶାରିକେ, ତୁମ୍ଭେ ଏ ପ୍ରସଙ୍ଗ କି ଜାଣିଛ ତାହା କହ । ଶୁକ ଶାରିକା ଏହା ଶୁଣି କୁନ୍ଦରେଖା କୂପରେ ପଡ଼ିବାଠାରୁ ପୁଣ୍ଡ୍ରରାଜ ପଣ୍ଡାକୁ ବରଣ କରିବା ଚରିତ ସକଳ ସମସ୍ତ କହିଲେ । ଶୁଣି ବ୍ରାହ୍ମଣମାନେ କହିଲେ, ଏ ତ ବିମ୍ବା ନ୍ୟାୟପର ହେଲା । ପୁଣ୍ଡ୍ରରାଜ ପଣ୍ଡା କୁନ୍ଦରେଖାକୁ ଜୀବନ ଦାନ ଦେଇଛି । କୁନ୍ଦରେଖା ଧର୍ମ ସାକ୍ଷୀରେ ତାକୁ ବରଣ କରିଅଛି । ପୁଣି ଆନ୍ୟ ପୁରୁଷ ଛୁଇଁଲେ ହୃଦୟ ଫାଟିଯିବ ଏରୂପେ ସତ୍ୟ କରିଛି । ସ୍ୱୟଂ-ବରଣ (୧୦୯) ତ ସବୁକାଳେ ପ୍ରଧାନ । ଏ ତ ଦଇବ ଆୟତ୍ତରୁ ସ୍ୱୟଂ ବରଣ ହେଲା । ଏ ସକାଶୁଁ ପୁଣ୍ଡ୍ରରାଜ ପଣ୍ଡାକୁ କୁନ୍ଦରେଖା ପ୍ରାପତ ହେଲା ।

ଏରୂପେ ନ୍ୟାସ୍ତ ଛାଡ଼ିବାରୁ ସମସ୍ତେ ଶାନ୍ତ ହେଲେ । ନୀତିବିନୋଦ କଥା ସରିଲା ।

ଏରୂପେ ମୋହନାଙ୍ଗଠାରୁ ଶୁଣି ଚଞ୍ଚଳାକ୍ଷୀ ଅତ୍ୟନ୍ତ ଆନନ୍ଦ ହେଲା ।

# ପ୍ରୀତିବିନୋଦ

ମୋହନାଙ୍ଗକୁ ପୁଣି ଚଞ୍ଚଳାକ୍ଷୀ କହିଲା, ହେ ପ୍ରିୟତମ ପ୍ରୀତିବିନୋଦ ବୋଲି ଯଉଁ କଥା ତାହା ତେବେ କହିବା ହେଉ । ମୋହନାଙ୍ଗ ବୋଇଲା ହଉ, ତେବେ ପ୍ରୀତି ବିନୋଦ କଥା କହିବା, ଶୁଣ ।

ଶ୍ଳୋକ :

ପ୍ରୀତିଃ ସର୍ବସୁଖସର୍ବମୋହନକରୀ ସନ୍ତୁଷ୍ଟିକା ସା ସଦା
ସା ସ୍ୟାନ୍ନୀଚଗତା ତ୍ୱମଙ୍ଗଲକରୀ ଦୁଷ୍ଟାନ୍ୱିତା ଦୁଃଖଦା
କଷ୍ଟାତ୍ କଷ୍ଟତରପ୍ରଦେହ୍ୟଶଠଗା ଧୀସ୍ୱସ୍ଥା ମଙ୍ଗଲା
ତସ୍ମାତ୍ ପ୍ରୀତିମମଙ୍ଗଲାଂ ବିଦଧତେ ନ ସ୍ୱିଷ୍ଟ ଲୋକେଷୁ ଚ । (୧)

କଥା :

ପ୍ରୀତି ଯେ ସେ ଏକା ପ୍ରକାର ନୁହଇ (୨) । ତେବେ କେତେ ପ୍ରକାର କି ? ନାଁ, ଶଠପ୍ରୀତି, (୩) ଦୁଷ୍ଟପ୍ରୀତି, ନୀଚପ୍ରୀତି, କାର୍ଯ୍ୟସେନା ପ୍ରୀତି, ପ୍ରବଳ ଶଠପ୍ରୀତି, ଅଭେଦପ୍ରୀତି, ପରସ୍ପରପ୍ରୀତି, ନିଜ-ସୁଖପ୍ରୀତି, ଏରୂପେ ବହୁତ ପ୍ରକାର ଅଛୁ, ତହିଁକି ଚଞ୍ଚଳାକ୍ଷୀ କହିଲା, ଶଠପ୍ରୀତି କେମନ୍ତ କି,? ମୋହନାଙ୍ଗ କହିଲା ।

ଶଠ ପ୍ରୀତି

ସେ ଯେ କର୍ମପୁର ନାମେ ଏକ ବ୍ରାହ୍ମଣ ଜଣେ ଥିଲା । ସେ ବ୍ରାହ୍ମଣ ଗଙ୍ଗାସ୍ନାନ କରିବାକୁ ବାହାରିଲା । ଘରଠାରୁ ଦୁଇଗୃହ ବସା (୪) ଗଲାଉତ୍ତାରୁ ଏକ ବନକରେ ନାପିତ ଜଣେ ସେ ବ୍ରାହ୍ମଣକୁ ଦେଖି କରୁ ଦୂରଯାଏ ତାଙ୍କ ସଙ୍ଗେ ଗମନ କରନ୍ତେ ଅନୁମାନ କଲା ବ୍ରାହ୍ମଣଠାରେ ଧନ ଅଛୁ । ଏ ଧନ ଏହାଠାରୁ କରୂପେ ନେବ ଏମନ୍ତ ବିଚାରି ସେ ବ୍ରାହ୍ମଣ ପଛେ ପଛେ ଯାଉଥାଇ । ଦୁଇଗୃହ କୋଶ ସଙ୍ଗ ହୁଅନ୍ତେ କର୍ମପୁର ପଚାରିଲେ, ଆରେ ବାବୁ, ତୁ କି କୁଳରେ ଜନ୍ମ ? ତୋ ଘର କେଉଁଠାରେ ତୋ ନାମ କି ? କେଣିକି ଯିବୁ ତାହା କହ । ନାପିତ କହିଲା, ମୁଁ ଜାତିରେ ଗୋପାଳପୁତ୍ର, ମୋ ଘର

ମଘବା ଦେଶରେ, ମୋ ନାମ ମନମନୁଆଁ, ଗଙ୍ଗାସ୍ନାନ କରିବାକୁ ଆସିଛୁ । ଯେବେ ଉତ୍ତମ ସଙ୍ଗ ମିଳନ୍ତା ତେବେ ତା' ସଙ୍ଗେ ଯାଆନ୍ତି । ଗୋସାଇଁ କେଣିକି ବିଜେ କରୁଛ ? ସେ ବୋଇଲେ, ଆମ୍ଭେ ଗଙ୍ଗାସ୍ନାନ କରିବାକୁ ବାହାରିଛୁଁ । ନାପିତ କହିଲା, ମୋର ପୂର୍ବଭାଗ୍ୟ ଦର୍ଶିଲା (୫) । ଗୋସାଇଁଙ୍କ ଚରଣେ ସେବା କରିଥିବି । ଆପଣଙ୍କ ସଙ୍ଗେ ଗଙ୍ଗା-ସ୍ନାନ କରିବି । କର୍ମପୁର କହିଲେ, ତୋ ଆମ୍ଭ ତ ପରତେ (୬) ନାହିଁ, କିରୂପେ ସଙ୍ଗେ ନେବୁଁ । ଅଜ୍ଞାତ ଲୋକ ସଙ୍ଗେ ରଖିଲେ କାଳେ ବଡ଼ମୂଣ (୭) ହୁଅଇ ।

| | |
|---|---|
| ଅଜାଣ (୮) ଲୋକ ସଙ୍ଗ | ପ୍ରଭାତର ବିରଙ୍ଗ (୯) |
| ଲୋଭ ଆତୁର (୧୦) ବ୍ରତ | ଲୋଭୀ ସାମନ୍ତ ସତ, (୧୧) |
| ମୂର୍ଖ ନାୟକ ଗୃହ (୧୨) | ଆମ୍ବବାଉଆ ନାଟ (୧୩) |
| କୃପଣଜନ ଭୋଗ (୧୪) | ମୁଣ୍ଡବୋହିଆ ପାଗ, (୧୫) |
| ସଦା ରିଣିଆ ନୃପ (୧୬) | କଇକୁଳିଆ ବାସ, (୧୭) |
| ଅମଳଖିଆ (୧୮) ମନ | ପାପଅର୍ଜିତ ଧନ, |
| ବିଧବା ନାରୀ ବେଶ (୧୯) | ଦାନ୍ତମୁଖୀ ହାସ, (୨୦) |
| ବୃଦ୍ଧନାୟକ ବାଳା (୨୧) | ଦରିଦ୍ରପୁଅ ଲୀଳା, (୨୨) |
| କ୍ଷୀଣ ସେବକ କୋପ (୨୩) | ପୁରୁଣା ଗୁଣ ଗୁପ (୨୪) |
| ସିଂହ ଦୁଆର ତେଲ (୨୫) | ଗୁହାଳ ପାଖ କ୍ଷେତ୍ର, (୨୬) |
| କଉଡ଼ିଦିଆ ରଥ | କପଟୀ ମିତ୍ର ପ୍ରୀତି, (୨୭) |

ବାଟଚଢ଼ାଇବସା, (୨୮)

ଯେତେ କଥା କହିଲରେ ମନମନୁଆଁ
ଏ ବେଳ ବେଳକୁ ହୋଏ ଲୋକହସା ।

ଏହା ଶୁଣି ନାପିତ କହିଲା ହେ ଗୋସାଇଁ ଯାହାକୁ ଯହିଁ ଯୋଗ ଥାଏ, ସେ ଅବଶ୍ୟ ହୁଅଇ । ହିତ ହେଲେ ପରଲୋକ ଆପଣାରେ, ଅହିତ ହେଲେ ଆପଣା ଲୋକ ପର । ଅମୃତ ସମାନ ଆହାର ଖାଇ, ସେ ଅପାକ ହେଲେ (୨୯) ପେଟରେ ଥାଇ ପ୍ରାଣ ନିଅଇ । ଦେହରେ ବ୍ୟାଧି ହେଲେ ଶଏ କୋଶ ଅରଣ୍ୟରୁ ତାଳମଲିକା ଅଣି ଖାଇଲା ବେଳେ ପିତା କଷା ଲାଗୁଥାଇ । ଦେହକୁ ପ୍ରାଣଦାନ ଦିଅଇ । ବିଧାତା ସୁମୁଖ ହେଲାବେଳେ ମନେ ନ ଥିଲା ସୁଖ (୩୦) ମିଳଇ । ସେ ବାମ ହେଲାବେଳେ ଅଚଳାଚଳ ସମ୍ପତ୍ତି ନାଶଯାଇ । ମୁଁ ପ୍ରସଙ୍ଗଟିଏ କହିବି ତେବେ ଶୁଣିବା ହେଉ ।

ସେ ଯେ ହେମକାଞ୍ଚନ ନାମେ ଏକ ନଗର ଅଛି । ସେ ନଗର ରାଜା ନାମ ଖରତୁଙ୍ଗ । ସେ ରାଜାଙ୍କ ଗୁରୁଗୋସେଇଁଙ୍କ ନାମ ଜ୍ୟୋତିପୁଞ୍ଜ । ଏକ ଦିନକରେ ସେ ରାଜକୁରୁ ଗୋସାଇଁ ପାଲିଙ୍କିରେ ବସି ବିଜେ କରନ୍ତି ।

ଖିଦ (୩୧) ପିଚ୍ଛ (୩୨) ଟ୍ରମର ଆଡେଣି ଛତା ପାଟର,
ବଇଷ୍ଣବ ମଣ୍ଡଳୀ ଭେଷ୍ଟୁର୍ଣ୍ଣ ବାଂଶସ୍ୱ (୩୩)
ମୃଦଙ୍ଗ କରତାଳ ଚଉପାଶେ ଲୋକବଳ

ମଣିମା ମଣିମା ଡାକ,
ଗୋସାଇଁ ବିଜେ କରନ୍ତେ ହୁଳୁଳି ପଡ଼ୁଛି ଦାଣ୍ଡ ବାଟ ନଗରଯାକ ।

ଏହି ସମୟରେ ନିତମ୍ବିନୀ ନାମେ ବେଶ୍ୟା ସେହି ରାଜାଙ୍କ ଗ୍ରାମକୁ ଯାଉଥିଲା । ତା' ପଛେ ଖର୍ବରୂପ ନାମେ ଏକଜଣେ ମର୍ଦଳ ଘେନି ଯାଉଛି, କ୍ରୋଡପୁଞ୍ଜ ଗୋସାଇଁଙ୍କି ସେ ବେଶ୍ୟା ଦେଖି ସଙ୍କୁଳ ହୋଇ ଦଣ୍ଡବତକରି ଆଡ଼ ହୋଇ ରହିଲା । ଖର୍ବ-ରୂପ ମାଦଳିଆକୁ ଗୋସାଇଁ ଦେଖି ମନେ ବଡ଼ ଉଦ୍ହାସ କଲେ । ବିଚାରିଲେ ଏହା ଜନ୍ମ କି କାର୍ଯ୍ୟ, ଦାସ ପଛେ ଗୋଡ଼ାଇଛି, ଏହା ଜନ୍ମ ଧିକ । ଆମ୍ଭମାନଙ୍କ ଜନ୍ମ ବଡ଼ ସୁଫଳ! ଏଡ଼େ ବଡ଼ ସମ୍ପଦ ଭୁଞ୍ଜୁଛୁଁ (୩୪) । ଏରୂପେ ମନେ ଗର୍ବ କଲେ । ଖର୍ବରୂପ ଦଣ୍ଡବତ କରନ୍ତେ ତାକୁ କଲ୍ୟାଣ ନ କରି କହିଲେ, ତୁମ୍ଭ ଠାକୁରାଣୀ ଡେଣେ ଯାଉନ୍ତନ୍ତି ଯାଇଁ ତାଙ୍କ ଚରଣେ ସେବାକର । ଏହା ଶୁଣି ଖର୍ବରୂପ ମନରେ ବଡ଼ ଆକୁଳ ହୋଇ ରୋଦନ କଲା । ବିଚାରିଲା, ମୁଁ ବଡ଼ ପାପୀ । ଦାସୀଦାସ ହୋଇଲି ସିନା ମୋତେ ଏଡ଼େ ଉପହାସ କଲେ । ହେ ମହାପ୍ରଭୁ, ମୋ ଅଦୃଷ୍ଟରେ ଏହା ଲେଖିଥିଲ, ଏମନ୍ତେ ବଡ଼ ଆରତରେ ଈଶ୍ୱରଙ୍କୁ ଚିନ୍ତା କଲା । ପ୍ରଭୁ ତ ଗର୍ବଗଞ୍ଜନ, ଆରତତ୍ରାଣ । କ୍ରୋଡପୁଞ୍ଜ ଗର୍ବ, ଖର୍ବରୂପ ଆର୍ତ୍ତି ଏ ଦୁଇ କଥା ସହି ନ ପାରି ଅଗ୍ନି ଦେଲେ ଦୁହେଁ ଦୁହିଙ୍କ ପରି ହୁଅ (୩୫)। ଏମନ୍ତେ ରାଜପୁରୁ ଗୋସାଇଁ ମଠକୁ ଗଲେ । ଖର୍ବ ରୂପର ଏ ଚିନ୍ତା ହୁଅନ୍ତେ ବେଶ୍ୟା । ସଙ୍ଗେ ଗୋଡ଼ାଇ ଯାଇ ନ ପାରିବାରୁ ସେ ବେଶ୍ୟା ତାକୁ ବହୁତ ଗାଳି ଦେଲା । ତା'ଗାଳି ଶୁଣି ଖର୍ବରୂପ ଧାଇଁ ଯାଅନ୍ତେ ବାଟରେ ଝୁଣ୍ଟି ପଡ଼ିବାରୁ ମର୍ଦଳ ଭାଜିଗଲା । ନିତମ୍ବିନୀ ମର୍ଦଳ ଭାଜିବାରୁ ବିମୁଖ (୩୬) ହୋଇ ନଫରକୁ ନ ଯାଇଁ ଘରକୁ ନେଉଟି ଆସି ଖର୍ବରୂପକୁ ବନ୍ଧାଇ ଅନେକ ମାଡ଼ ମରାଇ କନା ଖଣ୍ଡେ ପିନ୍ଧାଇ ବାହାର କରି ଦେଲା, ଖର୍ବରୂପ ସେ ରାଜ୍ୟରେ କାହାରି ମୁଖ ଚାହିଁ ନ ପାରି ଯାଇ ଅରଣ୍ୟ ଭିତରେ ପଶିଲା । ଏରୂପେ ଦିନ-ଦିନ ବନ ବୁଲି ଗଲା, ଭୋକରେ ପେଟ ପୋଡ଼ି ଯାଉଛି । ପାଣି ମାଟକ ଦେଖିଲେ ପିଅଇ, ଏହିରୂପେ ଯାଇଁ ଯାଇଁ ରାସରଙ୍ଗ ନାମେ ଏକ ନଗର, ସେ ନଗର ପାଶେ ଶଶାନ ପଦାଟାକେ ସନ୍ଧ୍ୟା ସମୟରେ ପ୍ରବେଶ ହେଲା । ସେ ଦିନ ସେଠାରେ ଏକ ମୃତ୍ୟୁ ମନୁଷକୁ (୩୭) ଦହନ କରି ଯାଇଛନ୍ତି ଯେ ସେ ମଡ଼ାଭାତ ଅଟିକା ଗୋଟାଏ ଅଛି । ନିଆଁ ଜଳୁଛି । ଖର୍ବରୂପ କ୍ଷୁଧାରେ ଅଚେତନ ହୋଇଥିବାରୁ ସେ ଭାତ ଖାଇ ମଡ଼ାନିଆଁ ପୁଆଁଉଛି । ଏହି ସମୟରେ ସେହି ନଗ୍ର ଗୋପାଳ ଗାଈ ଘେନି ନଗ୍ରକୁ ନେଉଟି ଆସନ୍ତେ ଖର୍ବରୂପ ଭାତଖିଆ ନିଆଁପୁଆ ଦେଖିଲା । ବିଚାରିଲା ଏ ତ ମହାପୁରୁଷ ଗୋସାଇଁ ।

କଉଁଠାରୁ ଏଠାକୁ ବିଜେ କଲେ । ସିଦ୍ଧ ସାଧୁ ରୂପ ଏ । ଆନ ଗୁରୁ ବେଳେ କି ଏ କର୍ମ କରି ପାରିବ ? ଏମନ୍ତେ ଯାଇଁ ଗ୍ରାମରେ ବାରତା କହନ୍ତେ ତାହା ଶୁଣି ଏକ ମନ୍ତ୍ରୀ ପେଟବେଣା ରୋଗୀ ଥିଲା ଯେ ସେ ଶ୍ମଶାନକୁ ଧାଇଁ ଯାଇଁ ଦେଖିଲା କିଆଁ ପୂଆଁ ଉଛନ୍ତି, ଘୃତ ଖାଉଛନ୍ତି । ମନ୍ତ୍ରୀ ଯାଇଁ ଆଗରେ ଉଭା ହୁଅନ୍ତେ ଖର୍ବରୂପ ବିଚାରୁଛି ଏବେ ଏହାକୁ କି କହିବ । ଈଶ୍ୱର ତ ତାକୁ ସୁମୁଖ (୩୮) ହେଲେଣି, କହିଲା, ରେ ବାବା, ପେଟ ନଡ଼ା ଦୁଖଦେତା ହେଁ (୩୯) । ଏହା ଶୁଣି ମନ୍ତ୍ରୀ ଭୂମିରେ ଦଣ୍ଡ ପ୍ରାଏ ହୋଇପଡ଼ିଲା । ବୋଇଲା ଗୋସାଇଁ; ମୋ ଦୁଃଖ କି ଣି ଆଜ୍ଞା କଲ । ଏବେ ରୋଗ ଖଣ୍ଡନ କର । ଏମନ୍ତ କହି ଆନନ୍ଦରେ ଗ୍ରାମକୁ ବୋଲି ଧାଇଁ ଯାଇଁ ହୁରି କଲା, ମହାପୁରୁଷ ଗୋସାଇଁ ଶ୍ମଶାନ ପଦାରେ ବିଜେ କରିଛନ୍ତି । ମୋ ମନ କଥା କହିଲେ । ଏମନ୍ତେ ଗ୍ରାମଯାକରେ ଚହଳ ହୁଅନ୍ତେ କି ନାରୀ କି ପୁରୁଷ ସମସ୍ତେ ଦରଶନ କରିବାକୁ ବାହାରିଲେ । ବନ୍ଧ୍ୟା ନାରୀ ଦୁଇଗୋଟା ନଡ଼ିଆମାନ ଘେନି ଆଗରେ ଯାଇଁ ଦେଖିଲେ ଘୃତ ଖାଉଛନ୍ତି, କିଆଁ ପୂଆଁ ଉଛନ୍ତି । ନଡ଼ିଆ ରଖି ଦଣ୍ଡବତ କରନ୍ତେ, ସେ କହିଲେ, 'ରେ ମାତା, ଉଦର କେ ବାତ୍ ମୁଁ ଦର୍ଓଡ଼ତ୍' (୪୦) । ଏହା ଶୁଣି ସେ ସ୍ତ୍ରୀ ଦୁହେଁ ବଡ଼ ଆଶ୍ଚର୍ଯ୍ୟ ହେଲେ । ବୋଇଲେ, ଗୋସାଇଁ ଏ ପେଟ କିଷଣ ଭଲ କର । ମନ୍ତ୍ରୀ ପୁଅର ଘୋଡ଼ା ଦେହ ବେଦନା ହୋଇଥିଲା ଯେ ସେ ମୁଦା ଘେନି ଧାଇଁଲା । ଖର୍ବରୂପକୁ ଦର୍ଶନ କରି କହିଲା ଗୋସାଇଁ ମୁଁ କି କାର୍ଯ୍ୟରେ ଅଇଲି ତାହା ଆଜ୍ଞା ହୋଉ । ଖର୍ବରୂପ ବିଚାରିଲା, ଏଥର ନଷ୍ଟେ ଭ୍ରଷ୍ଟ ହୋଇଗଲି । ଏମନ୍ତେ ଆର୍ତ୍ତମନରେ କହିଲା, 'ଅବ୍ ସଙ୍କଟ ଜାନକୀ ରାମୋ ହରେ (୪୧) । ଏହା ଶୁଣି ମନ୍ତ୍ରୀପୁଅ ବିଚାରିଲା, ଏ ସାକ୍ଷାତ୍ ଈଶ୍ୱର ସ୍ୱରୂପୀ । ଏମନ୍ତ ବିଚାରି ଦଣ୍ଡ ପ୍ରଣାମ କରି ପୂଜା ସାମଗ୍ରୀମାନ ଆଣିଦେଲା । ସାଧବ ମୁକ୍ତାହାର ଗୋଟିଏ ଗୁପ୍ତ କରି ମୁଦା(୪୨) ଘେନି ଯାଇଁ ଦେଖିଲା, କିଆଁ ପୂଆଁ ଉଛନ୍ତି, ଶହ ଶହ ଲୋକ ପାଏ ପଡ଼ି ଶୋଇ କନାଉଛନ୍ତି । ଏ ସମୟରେ ସାଧବ ଯାଇଁ ବୋଇଲା ଗୋସାଇଁ ମୁଁ କି ଆଣିଛି ଆଜ୍ଞା କର । ଖର୍ବରୂପ ଭୟରେ କହିଲା, 'ଅବ୍ ତୁମ ରା ଚହିଁ ହାର' । ଏହା ଶୁଣି ସାଧବ ବହୁତ ଦଣ୍ଡ ପ୍ରଣାମ କରି ବିଚାରିଲା, ଏ ପୃଥୀରେ ଆସି ସ୍ୱର୍ଗ ପ୍ରବେଶ ହେଲା । ମହାମହିମ ଯତି ମିଳିଲେ । ସାଧବ ଗୋସାଇଁଙ୍କି ବହୁତ ପୂଜା କରି ଯାଇଁ ରାଜାଙ୍କ ସମ୍ମୁଖରେ କହିଲା ।

ଏଥି ଭିତରେ ଦୁଇ ସ୍ୱରଦିନ ଗଲା । ଗୋସାଇଁଙ୍କି ଦେଖିବାକୁ ଅନେକ ଦେଶରୁ ଲୋକ ଅଇଲେ । ନାନା ସାମଗ୍ରୀମାନ ଭେଟିଲେ ।

କେ ରୋସାଇର ଭୁଲ, (୪୩) କେ ଫଳମୂଳ,
କେ ଜଳପାନ ଆଣେ, କେ ସ୍ୱର୍ଣ୍ଣ ତମାଖୁ ଦେଇ,
କେ ଚନ୍ଦନ, ଚୂଆ, କର୍ପୂର, କେ କନକ କଡ଼ା (୪୪) ନୂପୁର,
କେ ପୋହଳା ମୋତିମାଳୀ କେ କଟିକ ରୂପା ଶିକୁଳି,

କେ ତାମ୍ବୁଲ ବଡ଼ିଆ ବଟା,(୪୫) କେ ଦିବ୍ୟ କୁସୁମ୍ବା ଘୋଟା, (୪୬)
କେ ମୋହନା ଗଣ୍ଡା ଖଟଇ,(୪୭) କେ ତମାଖୁ ବିଡ଼ା (୪୮) ଭେଟଇ,
କେ ପାଚିଲା ପାନ ଣିଏ, କେ ଲବଙ୍ଗ ମରିଚ ଥାଏ,
କେ ଖଇର ଗୁଆ ନେଲ କେ କଲି ଭଡ଼ିକା ଦେଲ (୪୯),
କେ ସର ଲବଣୀ ଦହି, କେ ପୁଷ୍ପ ଭାଜିଗି ଖଇ,
କେ କମ୍ବଳ ନେଇ ଶାଲ କେ ସହନ (୫୦) ମଲି ମଲି,
କୁଡ଼ୀ(୫୧)ଭାମଲୀ(୫୩)ଜେମ୍ବା ବାଉଳୀ, ଭଣା କୁବୁଜା ଗ୍ରେଟା ବିମଳା,(୫୪)
ପଙ୍ଗୁ ଗୋଡଗ୍ର ପେଟ ଗେଡଗ୍ର,(୫୫) ଏକୁଆପାଲ(୫୬)ପିଢ଼ି ପାଙ୍ଗୋଲି, (୫୭)
ଆଁଆଁ ଗି ଛଟା (୫୮)ପେଟ ଚକଟା, ଅଣ୍ଡପୁରୁଷା କମଳଖସା, (୫୯)

ଦନ୍ତକଟି ଭାନ କୁଟ୍ଟିର (୬୦)ଜଲଙ୍କା କାଣୀ ଟେଣ୍ଟି,
ବାଝ ମଡ଼ଛୁ ପିନାସ ନାକପେଚୀ,

ଧାଇଁଲେ ଶଅ ଶଅ ଧକାଇ ସଅଁ ସଅଁ,
ପଡ଼ି ଉଠି ଧାମନ୍ତି, ଚଲକୁ ନ ଗୁହାଁନ୍ତି,
କେ ବୋଲଇ ଲୋ ମାଆ, ମୋ ହାଥ ଧଇଆଥା,
କେ ବୋଲଇ ଦୁଲଣୀ(୬୧) ହୋଇଛି ଲୋ ଦଣୀ,
କେ ବୋଲଇ ଦର, ଦେଖି ନ ପାରେ ମୋର,
କେ ବୋଲଇ ଗୁଲି ତାହାର ଏହି ହାଲି,
ଏମନ୍ତରେ ଯାଇଁ, ଭେଟନ୍ତେ ଗୋସାଇଁ,
କେହି କେହି ଦୁଃଖ ଜଣାନ୍ତି ଗୁଆ ନଡ଼ିଆମାନ ଥୋଇ,
ତାଟକା ହୋଇ ଖର୍ବରୂପ ଗୁହିଁ ବିସ୍ମିର କଲି ଏ ଜନ୍ସ,
କେମନ୍ତେ ଏଥୁଁ ପାର ହୋଇ ପଶିବି ଗହନ କାନନ ଦେଶ ।

ଏମନ୍ତେ ରଜା ବୀରମଣ୍ଡନଙ୍କ ଗ୍ରାମରେ ଯାଇଁ ଏ ବାର୍ତ୍ତା ମିଳନ୍ତେ ରଜା ଆଜ୍ଞା କଲେ, ଆମ୍ଭେ ମହାପୁରୁଷଙ୍କୁ ଦର୍ଶନ କରିବା । ଶ୍ରୀପାଲଙ୍କ ନେଇ ଗୋସାଇଁଙ୍କି ଘେନ ଆସ ।

ଏରୂପେ କର୍ମପୁରଙ୍କ ଆଗେ ମନ ମନୁଆ କହୁଅଛୁ, ଆହେ ଗୋସାଇଁ, ଏବେ ଶୁଣ ।

ସେ ବୀରମଣ୍ଡନ ରଜାଙ୍କୁ ମାରି ତାଙ୍କ ଭାଇଙ୍କି ରଜା କରିବାକୁ ସେ ରାଜ୍ୟ ଲୋକେ ମେଳ କରିଥାନ୍ତି । ସମସ୍ତ ନ ପାଇବାରୁ ମାରି ନ ପାରନ୍ତି । ସେହି ଦିନ ସେ ମେଳଆଏ ବିଗୁରିଲେ ଆଜ ନ ମାଇଲେ ଗୋସାଇଁ ତ ସର୍ବଜ୍ଞ, ନିକି ଆମ୍ଭ ମେଳ କଥା କହିଦେଇ ଯାଏ(୬୨)। ଏମନ୍ତ ଭାଳି ସମସ୍ତ ଲୋକେ ସେ ଦିନ ରଜାଙ୍କୁ ମାରିବାକୁ

ନଅରଠାରେ ଜଗିରହିଛନ୍ତି । ଏମନ୍ତେ ସନ୍ଧ୍ୟା ସମୟରେ ପାଲିଙ୍କି ଘେନି ମନ୍ତ୍ରୀ ଯାଇଁ ଗୋସାଇଁଙ୍କି କହିଲା, ରାଜା ଦରଶନ କରିବେ ପାଲିଙ୍କିରେ ବିଜେ କର, ନବରଠାକୁ ଯିବା । ଏହା ଶୁଣି ଖର୍ବରୂପ ବିଚାରିଲା ଅସି ମରଣକାଳ ନିକଟ ହେଲା, ଏବେ କି ବୁଦ୍ଧି କରିବି । ଭଲ ଦେଖିଯିବା, କି ହେଉଛି ହେଉ । ଏମନ୍ତ ବିଚାରି ପାଲିଙ୍କିରେ ବସି ନବରଠାକୁ ଗଲା ।

ମଶାଲ ଆଲୋକ ଶଅ ଶଅ ଲୋକ,
ସଙ୍ଗେ ସଙ୍ଗେ ଧାମନ୍ତି ହରିବୋଲ ଦିଅନ୍ତି,
ଏମନ୍ତରେ ଯାଇ
ସିଂହଦ୍ୱାରଠାରେ ମିଳିଲେ ମହାମହିମ ଗୋସାଇଁ ।

ରାଜା ପୂଣି ପାଦଗଡରେ (୭୩) ସିଂହଦ୍ୱାରଠାକୁ ବୋଲି ପାଶ୍ଚେଟି ଅଇଲେ । ସେ ରାଜାଙ୍କର ପୁତ୍ର ନ ଥିବାରୁ ପୂର୍ବରୁ ବିଚାରିଛନ୍ତି ଆମ୍ଭର ପୁତ୍ର ହୋଇବ କି ନାହିଁ ଏ କଥା ଗୋସାଇଁଙ୍କଠାରୁ ଜାଣିବା । ରାଆନେ କିଅଫୁଲ ଗୋଟିଏ ଗୁପ୍ତ କରି ଧରିଛନ୍ତି । ରାଜା ଗୋସାଇଁଙ୍କି ଦଣ୍ଡବତ କରି ଭିତରକୁ ନେଇ ଉତ୍ତମ ଆସନରେ ବସାଇଲେ । ରାଜାହିଁ ଆସନରେ ବିଜେ କଲେ । ରାଆନେ ମୁଦା ଘେନି ବସି ଗୋସାଇଁଙ୍କି ଚାହିଁଛନ୍ତି । ସେ ଯଉଁ ମେଲିଆମାନେ ସେ କାତର ହୋଇ ଦୀପ ଲିଭାଇ ଅନ୍ଧାରରେ ବସି ବିଚାରୁଛନ୍ତି ଗୋସାଇଁ ନିକି ଆମ୍ଭ ମେଲି କହି ଦେଇଥାଇ (୭୪) । ଏମନ୍ତ ଭାଳି ଚହିଁରୁ ଦୁଇଜଣ ଆସି ସଭାରେ ଠିଆ ହୋଇ ବୁଝୁଛନ୍ତି । ଏଥିଉତ୍ତାରୁ ରାଜା ରାଆନ ଉଠି ଠିଆହୋଇ ହାତଯୋଡ଼ି ଜଣାଇଲେ 'ମହାରାଜ, କୁଛ ହୁକୁମ କରେ, ଜିସ୍ ତର ସେ ଦିଲ୍ ଖାତରଜମା (୭୫) ହୋଗା' । ଏହା ଶୁଣି ଖର୍ବରୂପ ଭୟରେ ରାଜାଙ୍କ ମୁହଁକୁ ନ ଚାହିଁ ମନରେ ଧର୍ମଚିନ୍ତା କରି ମେଲିଆଏ ଥିବା ଡଗକୁ ଅନାଇ କହିଲା, 'ରାଜାକୁମାର ଇଚ୍ଛା ତୁମ୍‌ବାର, ଦିଆନହିଁ ଯହିଁ କଥା ବିଚାର ।' ଏହା ଶୁଣି ରାଜା ରାଆନ ପାଏ ପଡ଼ି ଶୁଅନ୍ତେ ସେ ମେଲିଆ ଦୁଇଜଣ ଭୟରେ ଥରଥର ହୋଇ ରାଜାଙ୍କୁ କହିଲେ, 'ହେ ମହାରାଜ, ଆମ୍ଭେ ଦୁଇଜଣ ଏକା ଏ ବିଚାରରେ ନାହୁଁ । ଗୋସାଇଁ ତ ଆଜ୍ଞା କଲେଣି ଆଉମାନେ ଡେଣେ ବସିଛନ୍ତି ତାଙ୍କୁ ଧରାଇ ଆଣ । ଗୋସାଇଁଙ୍କ ଧର୍ମ ଗୋସାଇଁଙ୍କି ବଞ୍ଚାଇଲା, ଆମ୍ଭେ ମେଲିକରି ମାରି ଗଲୁ ।' ରାଜା ଏହା ଶୁଣି ଚକିତ ହୋଇ ତାଙ୍କ କଥା ବୁଝି ଆଉମାନଙ୍କୁ ଆଣି ଧରାଇ ରଖିଲେ । ଆରଦିନ ପୁଣି ଉତ୍ତମରୂପେ ବୁଝି ସମସ୍ତ ମେଲିଆଙ୍କୁ ଦଣ୍ଡ ଦେଲେ । ଖର୍ବରୂପ ଗୋସାଇଁଙ୍କଠାରେ ଈଶ୍ୱର ସମାନ ବୁଦ୍ଧି ରଖି ଆପଣେ ରାଜା ତାଙ୍କଠାରୁ ମନ୍ତ୍ର ଘେନି ରାଜଗୁରୁ କଲେ । ରାଜଗୁରୁ ହେଲା ଉତ୍ତାରୁଁ କଉଁ ସମ୍ପତ୍ତି ନୁହଇ କି ? ଏରୂପେ ଖର୍ବରୂପ ନିଶ୍ଚିନ୍ତ ହୋଇ ରହି ଭୋଗ କଲା । ସଂସାର ଯାକରେ ମହାପୁରୁଷ ଗୋସାଇଁ ରାଜଗୁରୁ ହେଲେ ବୋଲି ନାମ ଖ୍ୟାତ ହେଲା । ଈଶ୍ୱର ଦୟା କଲେ ଏମନ୍ତ ହୋଏ ।

ମନମନୁଆ କହୁଛ, ଆହେ ଗୋଁସାଇଁ ଏବେ ଶୁଣିମା ହୋଉ ।

ଏଥିଭିତରେ ତେଣେ ଜ୍ୟୋତିପୁଞ୍ଜ ରାଜପୁରୁ ଗୋସାଇଁଙ୍କ ଗର୍ବ ଭାଙ୍ଗିବାକୁ ତ ଈଶ୍ୱର ଆଜ୍ଞା ହେଲାଣି । ଏକଦିନକରେ ବୀରତୁଙ୍ଗ ରାଜା ତାଙ୍କ ରାଣୀଙ୍କି ଘେନି ବସିଅଛନ୍ତି, ଏ ସମୟରେ ରାଜପୁରୁ କଲ୍ୟାଣ କରିବାକୁ ଗଲେ । ଗୋସାଇଁଙ୍କି ରାଜା ରାଣୀ ଦୁହେଁ ଆସନରୁ ଉଠି ନମସ୍କାର କରନ୍ତେ ରାଣୀଙ୍କ ସ୍ତନ ପ୍ରଦେଶରେ ଗୋସାଇଁଙ୍କ ଦୃଷ୍ଟି ପଡ଼ିଲା । ତାଙ୍କୁ ତ ଦଇବ ବାମ ହେଲାଣି, କଲ୍ୟାଣ କି କରିବେ କି, ରାଣୀଙ୍କ ଶୋଭାରେ ମୋହିତ ହୋଇ ବୋଇଲେ —

ଏ ଯହିଁ କୁଚ ଯୁଗଳ କରେ ଧରି ଯେବେ କରନ୍ତି କୋଳ
ସ୍ୱର୍ଗକୁ ମଣନ୍ତି ତଳ, ମୋ ଧନରେ ।

ଏ ପଦକି ବୋଲି ଦେଲେ, ଏ ସମୟରେ ଚେତା ହେଲା । ରାଜା ତାଟସ୍ଥ ହୋଇ ରହିଛନ୍ତି, ରାଣୀ ପୁର ଭିତରକୁ ପଳାଇଲେ । ରାଜା ହିଁ କିଛି ନ କହି ପିଠିକରି ବାହାରି ଗଲେ । ଗୋସାଇଁ ବଡ଼ ଭୟରେ ସେଠାରୁ ବାହାରି ଆସି ପାଲିଙ୍କିରେ ଚଢ଼ି ମଠକୁ ନ ଯାଇ ପୁରୁଷୋତ୍ତମ ଯିବି ବୋଲି ବାହାରି ଗଲେ, ଏ କଥା ରାଜା ରାଣୀ ଗୋସାଇଁ ମାତ୍ର ଜାଣନ୍ତି, ଆଉ କେହି ନ ଜାଣନ୍ତି, ପୁରୁଷୋତ୍ତମ ଯିବା ଶୁଣି ମଠରେ ଥିବା ବଇଷ୍ଣବମାନେ ସକଳ ସାମଗ୍ରୀମାନ ଘେନି ଗୋସାଇଁଙ୍କ ସଙ୍ଗେ ଗଲେ । ସେ ରାଜ୍ୟ ପାରିହୋଇ ଆନରାଜାଙ୍କ ରାଜ୍ୟ ସୀମାରେ ଦେଖିଲେ ଦିବ୍ୟ ପୁଷ୍କରିଣୀଏ ଅଛି, ସେଠାରେ ଜ୍ୟୋତିପୁଞ୍ଜ ସ୍ନାନ ନିତ୍ୟକର୍ମ କଲେ । ସଙ୍ଗ ବଇଷ୍ଣବମାନେ ଆପଣା ଖିଆପିଆ ଚେଷ୍ଟାରେ ଲାଗିଛନ୍ତି, ଗୋସାଇଁ ଅଲଗା ହୋଇ ବସି ପୂଜା କରୁଛନ୍ତି । ଏ ସମୟରେ ରୂଢ଼ରୂପ ନାମେ ଏକ ଶୁଣ୍ଡୀ ସେ ଆସି ସେହିଠାରେ ସ୍ନାନ କରି ଗୋସାଇଁଙ୍କ ପାଶକୁ ଯାଇ ଦଣ୍ଡବତ କରନ୍ତେ ଜ୍ୟୋତିପୁଞ୍ଜ ପଚାରିଲେ ରେ ବାବୁ, ତୁ କି ଜାତି ଅଟୁ ? ରୂଢ଼ରୂପ କହିଲା ମୁଁ ଦାରୁନିର୍ମାଣକାରୀ(୬୫) । ଗୋସାଇଁ କହିଲେ, ଉତ୍ତମରୂପେ ନିର୍ମାଣ କରିପାରୁଛିକି । ରୂଢ଼ରୂପ କହିଲା, ସୂତ୍ରବଳି ଭାଗମାନ (୬୬) ଯେମନ୍ତ ଘଟଣା ହୁଅଇ ସେ କି ଆମ୍ଭଙ୍କୁ ଅଗୋଚର ? ମୂଳଗ୍ରାହକ ଦେଖି ଅନୁରୂପ କରି (୬୭) ନିର୍ମାଣ କରିବଇଁ । ଗୋସାଇଁ ବୋଇଲେ, ଆମ୍ଭେ ଯେବା କହିବା, ଉତ୍ତମରୂପେ କରିଦେବ କି ? ରୂଢ଼ରୂପ ବିଚାରିଲା, ଏ ଗୋସାଇଁ ଦେବୀପୂଜକ, (୬୮) ଏହାଙ୍କର ଏ ଉପାସନା ମାର୍ଗ (୬୯) ଅଛି । ଏମନ୍ତ ବିଚାରି କହିଲା, ତେବେ ସନ୍ଧ୍ୟାବେଳେ ଘେନି ଆସିବି । ଏହା କହି ଘରକୁ ଗଲା, ସନ୍ଧ୍ୟା ପ୍ରବେଶ ହୁଅନ୍ତେ ଉତ୍ତମ କୁମ୍ଭ ଗୋଟିକେ ଦାରୁ ପୂରାଇ ଝୀନବସନ (୭୦) ଗୋଟିକେ ବାନ୍ଧି ଗୋସାଇଁଙ୍କଠାକୁ ଘେନି ଅଇଲା । ଗୋସାଇଁ ଦେଖି କହିଲେ ଆଣିଛୁଁକି ? ରୂଢ଼ରୂପ କହିଲା, ଆଜ୍ଞା ପ୍ରମାଣେ ଆଣିଛି, ଗୋସାଇଁ କହିଲେ ତେବେ ଏଠାକୁ ଆଣ । ଏରୂପେ ରୂଢ଼ରୂପ ସେ କୁମ୍ଭ ନେଇ ଗୋସାଇଁଙ୍କ ପାଲିଙ୍କିରେ ଥୋଇଦେଲେ । ଗୋସାଇଁ ତାହା ଧରି ଫିଟାଇ

ଦେଖିଲେ ଯେ ମଦ୍ୟ କୁମ୍ଭେ ପୂରିଛି । ଦୁର୍ଗନ୍ଧରେ ନାକ ଫାଟିଗଲା । ବୋଇଲେ ରେ ଚଣ୍ଡାଳ, ମୋତେ ପତିତ କଲୁ ? ଏମନ୍ତ କହି ତା ଉପରକୁ କୁମ୍ଭ ଫିଙ୍ଗି ଦଅନ୍ତେ ଗୁରୁରୂପ ଉପରେ ତାହା ବାଜି ଭାଜିବାରୁ ଖପର ଗଳିଯାଇ ରୁଧିର ବହିପଡ଼ିଲା । 'ବଇଷ୍ଣବ ମୋତେ ମାରି ପକାଇଲା ହୋ' ଏମନ୍ତ ବୋଲି ଡାକ ପକାନ୍ତେ ସେ ଗ୍ରାମ ଲୋକମାନେ ଶୁଣି ଧାଇଁ ଅଇଲେ, ଗୁରୁରୂପ କହିଲା, ଆହେ ଏ ବଇଷ୍ଣବ ମୋତେ ମଦ ମାଗିଲା, ମୁଁ ଆଣିଦେଲି, ଏବେ ଦେଖ ବିନା ଦୋଷରେ ମୋତେ ମାରିପକାଇଲା ; ଏ କଥା ଶୁଣି ସେ ନଗରରେ ଥିବା ସମସ୍ତ ଲୋକେ ରୁଣ୍ଡହୋଇ ଗୋସାଇଁଙ୍କ ଲୁଗାପଟା, କଂସା ବାସନ ସବୁ ଲୁଟ କରନେଲେ, ମାଡ଼ ଡରେ ସଙ୍ଗ ବଇଷ୍ଣବମାନେ ଗୋଟି ଗୋଟି ହୋଇ ଏଣେତେଣେ ପଳାଇଲେ, ଗୋସାଇଁଙ୍କି ଧରି କଅନ୍ତେ ହାତରେ କୁଟାଧରି ସବୁ ଗୁଡ଼ି ଏକାକେ ପଳାଇଯାଇ ସେ ରାଜ ମହାଅରଣ୍ୟ ଭିତରେ ଲୁଚି ରହିଲେ । ଆରଦିନ ବୁଲି ବୁଲି ଖର୍ବରୂପ ରାଜପୁତ୍ର ହୋଇଥିବା ରାସରଙ୍ଗ ଗଡ଼ରେ କାନ୍ଦାରିଲେ, କ୍ଷୁଧାରେ ପେଟ ଜଳିଯାଉଛି, ବିଚାରିଲେ ଏ ଭଜନମାଳାଟି ନେଇ କିଏ ବେପାରି କରିବା କି । ଏମନ୍ତେ ସେ ନଗର ଭିତରେ ପଶନ୍ତେ ଦେଖିଲେ ଚନ୍ଦନ ଘରମାନ ସୁନ୍ଦର ଦିଶୁଛି । ସେ ବେଶ୍ୟା ସାହି ବୋଲି ନ ଜାଣନ୍ତି, ସେହି ବାଟେ ଯିବାବେଳକୁ ତେଣେ ସୁନ୍ଦର ବେଶ୍ୟା ଜଣେ ଆସୁଛି, ତାକୁ ଦେଖି ବିଚାରିଲେ, କାଲି ତ ଏ ଦଶା, ଆଜି ଏହା ପାଖେ କିଏ ଦେଖିଲେ ମାରିବ ସିନା । ଏମନ୍ତେ ଭୟରେ ପଳାଇ ଯାଇଁ ଆଉ ବେଶ୍ୟାଟାକ ଘରେ ପଶି ଗଲାବେଳକୁ ଏ ବେଶ୍ୟା ଡାକୁଛି, ଏ ମୋରଟି, ଏ ମୋରଟି, ଏହାକୁ କେହି ନ ରଖି ବାହାର କରିଦଅ, ଯାହା ଘରେ ପଶିଲେ ସେ ତାଙ୍କୁ ଗୁଡ଼ି ନ ଦେଲା ! ଏମନ୍ତେ ଦୁଇ ବେଶ୍ୟାଯାକ କଳିଗୋଳ ହୁଅନ୍ତେ ଜ୍ୟୋତିପୁଞ୍ଜ ବିଚାରିଲେ, ଏ ଜୀବନ କାହିଁକି ଅଛି; ଏଉତ୍ତାରୁ ପୁଣି ଆଉ କହୁଁ ଭୋଗ କରିବ । ଏ ତ ମୋତେ ଗୁଡ଼ି ଦେବେ ନାହିଁ, ଏହା କାହାକୁ କହିବ, ଏବେ ଏହିଠାରେ ରହିବାର ମୂଳ ହେଲା । ଏମନ୍ତ ବିଚାରି ପ୍ରଥମ ବେଶ୍ୟାକୁ କହିଲେ ମୁଁ ତ ତୁମ୍ଭଠାରେ ରହିବାକୁ ଆସିଛି, ଆଉ କାଳି ନୋହି ମୋତେ ରଖ ଏହା ଶୁଣି ସେ ପ୍ରଥମ ବେଶ୍ୟା ତାକୁ ନେଲା, ତା ସଙ୍ଗେ ରହି ଜ୍ୟୋତିପୁଞ୍ଜ ତାଠାରେ ମାଦଳେ, ମାଦଳ ବଜାଇ ତାକୁ ନଚାଉଥାନ୍ତି ।

ଏକ ଦିନକରେ ସେ ବେଶ୍ୟା ରାଜାଙ୍କ ଛାମୁକୁ ନାଟ କରିବାକୁ ବାହାରିଲା । ଜ୍ୟୋତିପୁଞ୍ଜ ମାଦଳ ଧେନି ତା ସଙ୍ଗେ ଯାଉଛନ୍ତି । ଏ ସମୟରେ ଖର୍ବରୂପ ରାଜପୁତ୍ର ପାଲିଙ୍କି ଚଢ଼ି ଦେଖି ଆସୁଥିଲେ । ବାଟରେ ସେ ବେଶ୍ୟା ଜ୍ୟୋତିପୁଞ୍ଜ ତାଙ୍କୁ ଦେଖି ଦଣ୍ଡବତ କରି ଅଲଗା ହୋଇ ରହିବା ସମୟେ ଖର୍ବରୂପ ଜ୍ୟୋତିପୁଞ୍ଜ କୁହନ୍ତି ବୁଝିକି ଚିହ୍ନି ଜ୍ୟୋତିପୁଞ୍ଜ ଖର୍ବରୂପକୁ ଉପହାସ କଲା ଦିନ କଥା ଦେହକି ଦେଖି କାହାରିକୁ କିଛି ନ କହି ଅନ୍ତଃପୁରକୁ ମାଗିଲେ ।

ମନମନୁଆ କହୁଛୁ ଆହେ ଗୋସାଇଁ, ଏରୂପେ ମନ ନ ଥିଲା କଥା ଈଶ୍ୱର କରନ୍ତି । ତୁମ୍ଭେ କାହିଁକି ମୋତେ ଅନ୍ତର କରୁଛ । ଏହା ଶୁଣି କର୍ମପୁର ବିଚାରିଲେ ଏ ତ ଉତ୍ତମ ଚତୁରଟିଏ କହିଲା । ଏହାର କିଛି ଜ୍ଞାନ ଅଛି । ଏମନ୍ତେ ତାହାରେ ବିଶ୍ୱାସ କରି ସଙ୍ଗେ ନେବାର ମନ କଲେ । ଦୁଇ ବିଶ୍ୱାସୀ ସଙ୍ଗ ହୋଇ ଗଲେ । କର୍ମପୁରଙ୍କୁ ମନମନୁଆ ଉତ୍ତମରୂପେ ସେବା କରିବାର ତାହାରେ ଅନ୍ତର ନ ରଖିଲେ । ତ ଙ୍କଠାରେ ଶହେ ଟଙ୍କା ଥିବାର ନାପିତ ଜାଣିଲା । ଏକଦିନ ଏକ ଗ୍ରାମରେ ରହିଲେ । ନାପିତ ସେ ଗ୍ରାମରେ ଆଉ ଏକ ଠକ ଜଣକ ସଙ୍ଗେ ପ୍ରୀତି କରି ତାକୁ କହିଲା, ଏ ବ୍ରାହ୍ମଣଠାରେ ଟଙ୍କା ଅଛି, ତୁମ୍ଭେ ଉପାୟ କଲେ କିଛି ଟଙ୍କା ବାଣ୍ଟି କରି ନେଇଯିବା (୭୧) । ଠ କହିଲା, କି ଉପାୟ କରିବା ତେବେ କହ । ନାପିତ କହିଲା, କାଲି ପ୍ରଭାତରୁ ଆମ୍ଭେ ଯିବୁଁ । ତୁମ୍ଭେ ମଦ୍ୟ କୁମ୍ଭ ଗୋଟିଏ ଲୁଗାଟିକରେ ବାନ୍ଧି ବାଟରେ ଥୋଇ ଲୁଚିକରି ବସିଥିବ । ଆମ୍ଭେ ସେ ବୋକଚି ଦେଖି ଖଣ୍ଡେ ଦୂର ଗଲା ଉତ୍ତାରୁ ଗୋଡ଼ାଇ ଯାଇ ଆମ୍ଭଙ୍କୁ ଧରିବ, ବୋଲିବ ମୁଁ ମଦ୍ୟ କୁମ୍ଭ ଥୋଇ କାହାରକୁ ଯାଇଥିଲି, (୭୨) ଆଉ ବ୍ରାହ୍ମଣ ମୋ ମଦ ପିଇଲା । ମୋର ପୁଣି ବୋକଚିରେ ଶହେ ଟଙ୍କା ଥିଲା ତାହା ଯେନି ପଳାଉଛୁ । ଭଲ ଲୋକ ରାଜାଙ୍କଠାକୁ ଯିବା । ଏରୂପେ ତୁମ୍ଭେ କହିଲେ, ମୁଁ ଟଙ୍କା ବାହାର କରି ଦେଇଁ (୭୩) ଯିବା । ଟଙ୍କା ଦେଲା ଉତ୍ତାରୁ କହିବ ମୋତେ ତ୍ରୁଟି ହୋଇ ଥାଏ । ଏତେକେ ମୁଁ ତୁମ୍ଭ ସଙ୍ଗରେ ଆସିବି । ଏରୂପେ ସେ ନାପିତ ଠକ ସଙ୍ଗେ କଥିତ ଛିଣ୍ଡାଇଲା । ଆରଦିନ ପ୍ରଭାତରୁ ଠକ ସେହିରୂପେ ମଦ୍ୟ କୁମ୍ଭଟିଏ ଲୁଗାଟିକରେ ବାନ୍ଧି ବାଟରେ ଥୋଇ ଅନ୍ତର ହୋଇ ବସିଛି, ଏହି ସମୟରେ କର୍ମପୁର ନାପିତ ସେହି ବାଟରେ ଯାଆନ୍ତେ କର୍ମପୁର ସେ ବୋକଚି ଦେଖି ବୋଇଲେ ରେ ମନମନୁଆଁ, ଏହା କେ ଭୁଲି ଗଲା କି ଥୋଇ କି କଥା ? ତହିଁକି ନାପିତ କହିଲା, ଏ ବୋକଚି କିଏ ଭୁଲି ଗଲା ପରା । ଭଲ ଆମ୍ଭେ ନେଇ ଥିବା କି ? ଯାହାର ଧନ ସେ ମୋତେ ବାଟରେ ଭେଟିବ ତେବେ ତାକୁ ଦେବା । କର୍ମପୁର ବୋଇଲେ, ପରଧନ ଆମ୍ଭେ ଛୁଇଁ ନାହିଁ, ତୋ ମନକୁ ଆଇଲେ ନେଏ । ଏରୂପେ କହନ୍ତେ, ନାପିତ ସେ ଲୁଗାକୁ ଆପଣା ବୋକଚିରେ ପୂରାଇ ବାନ୍ଧିଲା । ଖଣ୍ଡେ ଦୂର ଗଲା ଉତ୍ତାରୁ ଠକ ଧାଇଁଲା । ତାକୁ ଦେଖିଲେ ରେ ବ୍ରାହ୍ମଣ ଭଲେ ତୁମ୍ଭ ବୋଝଟେ ଯାଉଛନ୍ତି । ଏ ତାକ ଶୁଣି କର୍ମପୁର ଚାହିଁଲେ ରହିଲେ (୭୪) ବସିଲେ । ଠକ ଆସି ପାଖରେ ପହଞ୍ଚି ବୋଇଲା ରେ ମନୁଆ ଗୋସାଇଁ, ମୋ ମଦ ପିଇଲୁ । ପୁଣି ମୋ ବୋକଚିରେ ଶହେ ଟଙ୍କା ଥିଲା ଏହା ଯେନି ପଳାଉଛୁ ? ଚାଲ ଦେଖିବି ରାଜାଙ୍କ ଛାମୁକୁ ଯିବା । ଏହି କଥାରେ ସେହି ବେଳେ ଧରିଲା ଗୋସାଇଁ ନାହିଁ । ଏହା ଶୁଣି ନାପିତକୁ ବୋଇଲେ ଦେଖାଇ ମନମନୁଆ ବାହାରି କରି ଧରିଲା । ବୋଇଲା ଏଣେବେଳେ ଗୁରୁଙ୍କ ପାଖକୁ ଯିବା । ଏହା ଶୁଣି କର୍ମପୁର ଏତିକୁ ଧାଇଁ ଲାଗି ମାତ୍ର ଯାଉଛନ୍ତି । ଜାଣିବା କରି ଏ କରି ଧରିଲା

କରୁଛନ୍ତି, ଠକ ତାଙ୍କ ହାତ ଧରି ଝିଙ୍କନ୍ତେ ବୋଇଲେ ରେ ମନମନୁଆଁ, ଏବେ କି ବୁଦ୍ଧି କରିବା ? ନାପିତ କହିଲା, ଏ ତ ଦଇବ ଦଣ୍ଡ, ଏଥିକୁ ମୁଁ କି କରିବି । ଏହା କହି ଠକ ପାଦ ଧରି ପଡ଼ାଇ ବୋଇଲା ବାବୁ, ଆମ୍ଭେ ଦୋଷ କଲୁଁ, ତୁମ୍ଭେ ଏହା ସହ । ଆମ୍ଭଙ୍କୁ ସଂସାରେ ରଖ । ପଞ୍ଚାଶ ଟଙ୍କା ଦେଉଛୁ, ଏହା ନେଇ ତୁନି ହୋଇଯାଅ । ଏମନ୍ତ କହି ବୋକଡ଼ିରୁ ବାହାର କରି ପଞ୍ଚାଶ ଟଙ୍କା ଗଣି ଦେଲା । ବୋଇଲା ଆପଣ ଛନେ କର (୭୫) । ଠକ ବୋଇଲା ଏ ଭୟ ବାଟରେ ମୁଁ କରୂପେ ଏକାକେ ଯିବି ? ମୋତେ ଗ୍ରାମରେ ଗୁଣ୍ଡ ଆସ । କର୍ମପୁର କହିଲେ, ରେ ମନମନୁଆ ମୁଁ ଏଠାରେ ଅଛୁ, ତୁ ଯାଇଁ ତାକୁ ଗୁଣ୍ଡ ଆସେ (୭୬) । ନାପିତ କହିଲା, ଗୋସାଇଁ ଏଠାରେ ଏକାକୀ କରୂପେ ରହିବ? ସେ ବୋଇଲେ ମୁଁ ବସିଛୁ, ତୁ ବେଗି ଆସିବୁ । ସେଠାରୁ ନାପିତ ମୁଖ ବିରସ କରି କରି ଠକ ସଙ୍ଗେ ବାହାରିଲା । ଏ ଦୁହେଁ ଖଣ୍ଡେଦୂର ଯାଆନ୍ତେ କର୍ମପୁର ବିଚାରିଲେ, ଏକାକେ ଯିବା । ଏହାକୁ ଗୃହେ ବସିଲେ କଏ କରୂପେ ଜାଣିଲା ବେଳେ ପତନ ହୋଇଯିବ ସିନା । ମନମନୁଆ ହେତୁ ତ ଏ କର୍ମ ହେଲାଣି, ସେ ସଙ୍ଗେ ଥିଲେ ଭାଳେ ଅକାର୍ଯ୍ୟ କରିବ, ଏମନ୍ତ ବିଚାରି ତରସ୍ତ (୭୭) ହୋଇ ବାହାରିଗଲେ । ନାପିତ ଅବା ତାହାଙ୍କ ନେଉଟିବ (୭୮) କି ? ଏମନ୍ତେ ଦୁହେଁ ଟଙ୍କା ବାଣ୍ଟି ନେଇ ଯେଝା ଘରକୁ ଗଲେ ।

ଶଠ ପ୍ରୀତି ଯେ ଏହିପ୍ରକାର । କିଛି ଜଣା ନ ପଡ଼ଇ, ଦଗା ଦିଅଇ । ଏ ସକାଶୁଁ ଏ ପ୍ରୀତିରେ ବଡ଼ ଦୋଷ । ଏହା ନ କରିବ ।

ମୋହନାଙ୍ଗ ଏହା କହନ୍ତେ ଚଞ୍ଚଳାକ୍ଷୀ କହିଲା ତେବେ ଦୁଷ୍ଟପ୍ରୀତି କରୂପେ କହିବା ହୋଉ । ମୋହନାଙ୍ଗ କହିଲା, ସେ ଦୁଷ୍ଟ ପ୍ରୀତି ଯେ କ୍ଷେତ୍ରପାଳ ନାମେ ଏକ ଭୂମିକ ଥିଲା । ସେ ଅତ୍ୟନ୍ତ ବଳବନ୍ତ ଅଟଇ । ତା ଧନୁରେ ଗୁଣ ଦେଇ ଆସ୍ଫାଳନ କରିବାକୁ (୭୯) ସଂସାରେ କେହି ନ ଥିଲେ । ସେ ଶର ବିନ୍ଧିଲେ ମତ୍ତହସ୍ତୀ ପ୍ରାଣ ହରଇ । ସେ କ୍ଷେତ୍ରପାଳ ଅହିପୁର ନାମେ ପର୍ବତରେ ଘର କରି ଥାଏ । ସେ ବାଟରେ ଯିବା ଆସିବା ମହାଜନମାନଙ୍କଠାରୁ ଧନ ରତ୍ନ ଲୁଟ କରି ନେଇ ରାଜା ସମାନ ସମ୍ପଦ କରି ଥାଇ । ପଞ୍ଚାଶ ଲୋକ ଯାଉଥିଲେ ମୃଗ ପଲରେ ସିଂହ ପଶି ମର୍ଦ୍ଦିଲା ପ୍ରାଏ ଲୁଟ କରଇ । ଏରୂପେ ଅନ୍ୟାୟ କରିବାରୁ ସେ ପଥ ନ ଚଳିଲା (୮୦) । ବାଣିଜ୍ୟ ବନ୍ଦ ହେବାରୁ ମହାଜନମାନେ ବଡ ଦୁଃଖ ପାଇଲେ । କିଛି ଜିନସ ନ ମିଳିବା ଯୋଗୁଁ ପ୍ରାଣୀମାନଙ୍କର କାର୍ଯ୍ୟ ଅଚଳ ହେଲା । ସେ ତ ମଧ୍ୟସ୍ଥାନ । ଯେଉଁ ଦିଗରୁ ଅଇଲେ ସେହି ବାଟରେ ମିଳିବ । ଆନ ଦିଗରେ ଆତଯାତ (୮୧) ହେବାକୁ ସନ (୮୨) ନୁହଇ । ଏମନ୍ତେ ସେ ବାଟେ ଗତାଗତ ହେବା ମହାଜନମାନେ ବସି ବିଚାର କଲେ, ଚାଲ କ୍ଷେତ୍ରପାଳ ସଙ୍ଗେ ଆମ୍ଭେ ପ୍ରୀତି କରିବା, ନୋହିଲେ ଚଳି ପାରିବା ନାହିଁ । ଏମନ୍ତେ ଦଶବାଂଶ ମହାଜନେ ସଙ୍ଗ ହୋଇ ତାଠାକୁ ଯାଇଁ କହିଲେ, ହେ କ୍ଷେତ୍ରପାଳ, ଆମ୍ଭେ ତୁମ୍ଭଠାରେ ମିଳିଲୁଁ, ତୁମ୍ଭେ

ଯଉଁରୂପେ ବୋଲିବ, ସେରୂପେ ଧନ ଦେବୁଁ, ଆଉ ବାଟରେ ଆମ୍ଭ ଧନ ଲୁଟ କରିବ ନାହିଁ, ଏରୂପେ ନାନା ଉପହାର ଦ୍ରବ୍ୟମାନ ଦେଇ କ୍ଷେତ୍ରପାଳ ସଙ୍ଗେ ପ୍ରୀତି କଲେ, ସେ ଯଉଁରୂପେ କହଇ, ସେହିରୂପେ ଧନ ଧାରଣା କରି (୮୩) ବାଣିଜ୍ୟ ଦିଅନ୍ତି । ସେହି ଦିନୁ ସେ ବାଟରେ ନିର୍ଭୟରେ କଣେ ବୁଇକଣ ଅତଯାତ ହୋଇ କାରବାର କଲେ । କ୍ଷେତ୍ରପାଳ-ଠାରେ ଟେଳୁଁ ଟେଲ ଅଧିକ ପ୍ରୀତି କରି ଅପୂର୍ବ ପଦାର୍ଥ ମିଳିଲେ ଆଗ ତାକୁ ଦେଇ ପଚ୍ଛେ ଖାଆନ୍ତି, ଭୟରେ ଇଷ୍ଟବନ୍ଧୁ ପ୍ରାଏ ତାଠାରେ ଭାବନା ରଖି ଥାଆନ୍ତି । ଏହାକୁ ଦୁଷ୍ଟ ପ୍ରୀତି କହି । କଲେ ଅକାର୍ଯ୍ୟ ହୁଅଇ ନ କଲେ ଚଳି ନ ପାରଇ, ଏ ଯେଣ ଦୁଷ୍ଟଲୋକ ଥିବାଠାରେ ବାସ ନ କରିବ । ଯେବେ ଅନ୍ତର ହୋଇ ନ ପାରିବ ତେବେ ଉପର ମନରେ ପ୍ରୀତି ରଖିଥିବ, ଏ ଦୁଷ୍ଟପ୍ରୀତି ଅଟଇ ।

ନୀଚ ପ୍ରୀତି

ଏବେ ନୀଚ ପ୍ରୀତି ଯେରୂପେ ତାହା କହିବା ଶୁଣ । ଚନ୍ଦ୍ରଜ୍ୟୋତି ନାମେ ଏକ ରାଜହଂସ ଥିଲା ସେ ସେ ଏକଦିନ କରେ ମାନସରୋବରରୁ ଗଙ୍ଗାକୁ ଆସୁଥିଲା । ବାଟରେ ଆସନ୍ତେ ଠାଏଁ ଦେଖିଲା ଏକ ଦିବ୍ୟ ପୁଷ୍କରଣୀ ଅଚ୍ଛି । ବିଚାରିଲା ଏଠାରେ ମୃଣାଳ ଖାଇବି । ଏମନ୍ତେ ସେ ଜଳରେ ପଶି ମୃଣାଳମାନ ଆହରଣ କରନ୍ତେ କୃଶପାଦ ନାମେ ଏକ ବକ ସେ ହଂସକୁ ଦେଖି ବିଚାର କରୁଛି ଏହା ଦେହ ଏଡ଼େ ପୃଥୁଳ କାହିଁକି ହେଲା ମୁଁ କାହିଁକି ଏଡ଼େ ଦୁର୍ବଳ ହେଲି । ବର୍ଣ୍ଣରେ ତ ମୁଁ ଏହାଠାରୁ ଉଜ୍ଜ୍ୱଳ, ଚକ୍ଷୁହିଁ ତ ମୋହୋର ସୁନ୍ଦର, ପକ୍ଷମାନେ ଅତି ଉତ୍ତମ, କେବଳ ଥଣ୍ଟ ଏକ ପାଦ ଏମାନେ ଟିକିଏ ଟିକିଏ ସରୁ ସରୁ ବୋଲି ଚାଲିବା ବେଳକୁ ମାନୁ ନ ଥିବ । ମୋର ଯେବେ ଏହାପରି ଦେହ ମୋଟ ହେବ ତେବେ ଏହାଠାରୁଁ ପ୍ରତିସୁନ୍ଦର ହେବି, ବକମାନଙ୍କ ଉପରେ ରାଜା ପ୍ରାଏ ଦିଶିବି । ଏବେ ଏହା ସଙ୍ଗେ ପ୍ରୀତି କରି ଏ ଯାହା ଖାଉଛି ମୁଁ ତାହା ଖାଇବି । ଏମନ୍ତ ବିଚାରି ଡାକିଲା, ଅହେ ମରାଳବର ତୁମ୍ଭେ ଏଠିବେଗେ ଆସି ଜଳକେଳି କର, ତେଣେ ବ୍ୟାଧମାନେ ଫାଶ ବସାଇ ଆନ୍ତି, ପକ୍ଷୀମାନଙ୍କୁ ଧରି ପ୍ରାଣ ନିଅନ୍ତି । ଏବେ ସତ୍ୱର ହୋଇ ଏଣିକି ଆସ । ଏହାଶୁଣି ଚନ୍ଦ୍ରଜ୍ୟୋତି ହଂସ କାତର ହେଲା । ବିଚାରିଲା ଏ ବକ ବଡ଼ ଦୟାଳୁ, ପ୍ରାଣୀ ଉପକାରୀ, ବଡ଼ ସଙ୍କଟରୁ ରକ୍ଷା କଲେ, ଏବେ ମୁଁ ଏହାଙ୍କ ସଙ୍ଗେ ପ୍ରୀତି କରିବି । ଏମନ୍ତ ବିଚାରି କୃଶପାଦ ବକ ନିକଟକୁ ଆସି କହିଲା, ହେ ମହାତ୍ମା ବକରାଜ, ତୁମ୍ଭେ ବଡ଼ ଦୟାଳୁ, ମୋତେ ପ୍ରାଣଦାନ ଦେଲ, ଏସକାଶୁଁ ତୁମ୍ଭ ମୋ ପ୍ରୀତିପଣ ହେଲା, (୮୪) ଏଥିରେ ଅନ୍ୟ ନାହିଁ । ବକ କହିଲା, ଏ ତ ମୋର ଭାଗ୍ୟ କଥା ମାତ୍ର ମୁଁ ଯାହା ପଚାରିବ ତାହା ନିର୍ମଳ କରି କହିବ । ଏହା ଶୁଣି ହଂସ ବୋଇଲା ପଚାରିବା ହୋଉ । ବକ କହିଲା, ଆପଣ କି ଦ୍ରବ୍ୟ ଖାଅ, ମୋତେ ତାହା କହ ମୁଁ ଖାଇବି । ହଂସ କହିଲା, ଆମ୍ଭେ ଯାହା ଖାଉଁ ଏଠାରେ ସେ ପଦାର୍ଥମାନ

କାହୁଁ ମିଳିବ ? କେବଳ ସୁରଗଙ୍ଗାରେ ହିଁ ସେ ଥାଏ । ଯେବେ ତୁମ୍ଭେ ଖାଇବାକୁ ଇଚ୍ଛା କଲ ତେବେ ମୁଁ ଆଣି ଦେବି ; ଏମନ୍ତେ ବକ ସଙ୍ଗେ ପ୍ରୀତି କରି ହଂସ ମେଲାଣି ହୋଇ ସେଠାରୁ ଚଳିଲା । ଗଙ୍ଗାରେ ପ୍ରବେଶ ହୋଇ କିଛିଦିନ ବିହାର କରି ଭକ୍ଷ୍ୟ ପଦାର୍ଥମାନ ଅଣ୍ଟରେ ଧରି କୃଶପାଦ ବକଠାକୁ ଆଇଲା । ଦେଖିଲା ସେହି ପୁଷ୍କରିଣୀରେ ବକ ମୀନ ଜଗିଛି, ହଂସ ଯାଇଁ ତା ପାଶେ ପ୍ରବେଶ ହୋଇ ମାନ୍ୟ କଲା । କହିଲା, ତୁମ୍ଭପାଇଁ ଭକ୍ଷ୍ୟ ପଦାର୍ଥମାନ ଆଣିଛୁ । ଏହା ପାନ କର । ଏମନ୍ତେ ଚଞ୍ଚୁରୁ କାଢ଼ି ତଳେ ଥୋଇ ଚହ୍ନାଇ ଦେଲା—

| | |
|---|---|
| ଏ ମୃଣାଳ ରସ | ଏ ପୁଷ୍କର ରସ, |
| ଏ କୁମୁଦ କନ୍ଦ | ଏ କମଳ ମକରନ୍ଦ, |
| ଏ କନକ ପଙ୍କ | ଏ ମୋତି ରଜକ |

ଏ ନାମମାନ ହଂସଠାରୁ ଶୁଣି ମହା ଆନନ୍ଦ ହେଲା କୃଶପାଦ ନାମେ ବକ ।

ଏମନ୍ତେ ହରଷ ହୋଇ ସେ ରସମାନ ଖାଇଲା, ବିଚାରିଲା, ଏଥର ମୁଁ ଅତି ପୃଥୁଳ ହେବି । ଏରୂପେ ହଂସ ପାଞ୍ଚ ସାତଥର ଆହାର ଆଣି ଦେଲା, ବକ ଔଷଧ ଖାଇଲା ପ୍ରାୟେ ଖାଉଥାଏ । ଦିନକୁ ଦିନ ଦେହକୁ ବୃଦ୍ଧି ବିଚାରୁଥାଏ ମୁଁ ତ ମୋଟ ହେଲି ନାହିଁ । ହେ ଜନମାନେ ବିଚାର କର ବକ କି ହଂସ ପ୍ରାଏ ହୁଅନ୍ତା । ଯହୁଁ ଦେହ ନ ବଢିଲା, ବିଚାରିଲା ଏ ହଂସ ପ୍ରୀତିରୁ ମୋର କି କାର୍ଯ୍ୟ ଅଛି । କେବଳ ପଙ୍କ ପଥର ଧୂଳିଗୁଡ଼ାଏ ମାତ୍ର ଖାଇଲି । ଏତିକି ହେଲା ଯେ ହଂସ ଅଇଁଠା ଖାଇଲି. ଦୃଷ୍ଟା (୮୫) ଚହ୍ନିଲା । ବକମାନେ ଶୁଣିଲେ ନିନ୍ଦା କରିବେ, ଅଜାତି କରି ରଖିବେ, ଏବେ ହଂସକୁ ମୁଁ ଅଇଁଠା ଖୁଆଇଲେ ସିନା ହେବ । ଏମନ୍ତେ ହଂସ ଏକ ଦିନକରେ ପ୍ରବେଶ ହୋଇ ଅଣ୍ଟରୁ ଆହାର ତଳେ ରଖି ବକକୁ ବୋଲି କଲା । ବକ କହିଲା, ହେ ମରାଳବର, ତୁମ୍ଭ ଦ୍ରବ୍ୟ ତ ମୁଁ ବହୁତ ଖାଇଲିଣି । ତୁମ୍ଭଙ୍କୁ କିଛି ଖୁଆଇ ନ ପାରିଲି । ଏ ବଡ଼ ଅସୁନ୍ଦର ହୋଉଛି । ପ୍ରୀତି ଦୁଇଅଡ଼ୁ ହେଲେ ସିନା ସୁନ୍ଦର, ମୁଁ ଯାହା ଦେବି ତୁମ୍ଭେ ତାହା ପାନ କରିବ । ହଂସ ବୋଇଲା କାହିଁକି ନ ଖାଇବି, ତେବେ ଦିଅ । ବକ କହିଲା, ମୁଁ ଯାଇ ଆଣେ, ତୁମ୍ଭେ ଦଣ୍ଡେମାତ୍ର ବସ । ଏହା କହି ଯାଇଁ ଗାଡ଼ିଆଠାରେ ପଶି ଗେଣ୍ଡା, ଶାମୁକା, ଭେକ, ଜୋକ, ମୀନ ଏରୂପେ ମାରି ତହୁଁ ଖଣ୍ଡେ ଖଣ୍ଡେ ଖାଇ ଆଉ ଖଣ୍ଡମାନ ଅଣ୍ଟରେ ଧରି ହଂସ ପାଶେ ପ୍ରବେଶ ହେଲା । ଅଣ୍ଟରୁ କାଢ଼ି ତଳେ ଥୋଇ କହିଲା, ଏହା ତେବେ ପାନ କର, ହଂସ ସେ ଦୁର୍ଗନ୍ଧରୁ କହିଲା, ଏହା ପାନ କରି ନ ପାରିବି ପରା, ବକ କହିଲା, ଏତ ଉତ୍ତମ ଦ୍ରବ୍ୟ, ମୋଠାରେ ଯେବେ ସୁଖ ଥିବ ତେବେ ଭୋଜନ କରିବ । ହଂସ ତ ମହା ସୁଜନ, ବକ କଥାରେ ବିଶ୍ୱାସ କରି ତହୁଁ

ଖଣ୍ଡେ ଖଣ୍ଡେ ଗିଳି ଦିଅନ୍ତେ ପେଟରେ ପଙ୍କ ଦେହ ମଧ୍ୟି ହେଲା । ହଂସ ବଡ଼ ବିକଳ ହୋଇ ବାନ୍ତି କରି ପକାଇଲା । ମୀନ ଦୁର୍ଗନ୍ଧରେ ଅନ୍ତ ଘାଣ୍ଟି ହେଉଛୁ, ବକକୁ ବୋଇଲା ମୋ ପ୍ରାଣ ଗଲା, ଏ ବିକଳ ସହି ନୋହିବ । ସେଠାରୁ ବକ କହିଲା, ମୁଁ ତୁମ୍ଭ ଅଇଁଠା ଖାଇ, ଏ ବକ କୁଳକୁ ବଡ଼ ଅସୁନ୍ଦର ହେଲା, ତୁମ୍ଭେ ମୋ ଅଇଁଠା ନ ଖାଇଲେ କିରୂପେ ଯାଆନ୍ତ । ଏବେ ତୁମ୍ଭ ପ୍ରୀତିରୁ ମୋର କିଛୁ ଫଳ ନାହିଁ । ବକ ଅଇଁଠା ହେଉ ସୁଆଦ ଏହା ତ ଜାଣିଲ । ବକମାନେ ଅଇଲେ ଖୁମ୍ପି ପକାଇବେଟି ଏଠାରୁ ବେଗେ ପଳା । ଏହା ଶୁଣି ହଂସ କାତର ହୋଇ ପ୍ରାଣ ଭୟରେ ସେଠାରୁ ପଳାଇଲା ।

ଶୁଣ, ଏରୂପେ ନୀଚ ଲୋକ ସଙ୍ଗେ ପ୍ରୀତି କଲେ ଉତ୍ତମ ଲୋକ ବିପଦରେ ପଡ଼ଇ ଏ ସକାଶୁଁ ନୀଚ ଲୋକ ସଙ୍ଗେ ପ୍ରୀତି ନ କରିବ ।

ଏହାକୁ ନୀଚପ୍ରୀତି କହି ।

ଚମ୍ପକାକ୍ଷୀ କହିଲା, ତେବେ ସହଜ ପ୍ରୀତି କିରୂପେ କହିବା ହୋଉ ।

ମୋହନାଙ୍ଗ ବୋଇଲା—ସେ ଯେ ଧର୍ମପାଳ ନାମେ ଏକ ରାଜ୍ୟ ।

**ସହଜ ପ୍ରୀତି** ସେ ରାଜ୍ୟ ରାଜା ନାମ ଭୂଜବଳ । ରାଣୀଙ୍କ ନାମ ପଦ୍ମବାସୀ, ସେ ରାଣୀ ଜାତି ପଦ୍ମିନୀ (୮୭) । ଏମନ୍ତେ ସେ ରାଜାଙ୍କ ତୋଟାପୁରରେ ଏକ ପୁଷ୍କରିଣୀ ଥାଏ, ରାଣୀ ତହିଁରେ ନିତ୍ୟ ସ୍ନାନ କରନ୍ତି, ପୁଣି ତହିଁରେ ଶତଦଳ ପଦ୍ମ ଫୁଟିଥାଏ । ପାଞ୍ଚଗୋଟି ଭ୍ରମର ତହିଁରୁ ମକରନ୍ଦ ପାନ କରୁଥାଆନ୍ତି । ସେ ଭ୍ରମରଙ୍କ ନାମ ମଧୂମତ୍ତ, କେଳିକନ୍ଦ, ଗୁରୁନାଦ, ଗନ୍ଧଲୋଳ, ଷଟପଦ । ଏରୂପେ ପାଞ୍ଚ ଭ୍ରମର ଦିବସେ ମଧୁରସ ପିଅନ୍ତି, ରାତ୍ର ସେ କମଳ କୋଳରେ ଶୁଅନ୍ତି । ରାଣୀ ସ୍ନାନ କଲାବେଳେ ତାଙ୍କ ମୁଖ ତ ପଦ୍ମ ପରି ଦିଶଇ ପୁଣି ସେହି ପ୍ରାଏ ବାସଇ, ଭ୍ରମରମାନେ ଝଙ୍କାର ନାଦ କରି ମୁଖରେ ବେଢିବାରୁ ରାଣୀ ବଡ଼ ବିମୁଖ ହୋଉଥାଆନ୍ତି । ତାଙ୍କ ନଖମାନ କଣ୍ଟା ପ୍ରାଏ ତୀକ୍ଷ୍ଣ ଅଟଇ, ମୁଖରେ ବସିବେ ଅବା ଅଖିକି ଧାସିବେ, ଏହି ଭୟରେ ରାଣୀଙ୍କ ଠାରେ ଆଲଟ ଚାମର ପଡ଼ୁଥାଇ, ତଥାପି ଭ୍ରମରମାନେ ନ ମାନି ମୁଖବାସ ଲୋଭରେ ବସି ଯାଉଥାଆନ୍ତି । ଏମନ୍ତେ ରାଣୀ ବଡ଼ କୋଧରେ ଅନେକ ଉପାୟରେ ସେ ଭ୍ରମର-ମାନଙ୍କୁ ଧରାଇ ଫରୁଆରେ ମୁଦି ପଞ୍ଚ ସାତ କୋଶରେ ଗୁଡ଼ି ଅଇଲେ । ଆରଦିନ ରାଣୀଙ୍କ ସ୍ନାନ ବେଳକୁ ସେହି ଭ୍ରମର ଆସି ବେଢିଲେ । ରାଣୀ ବିଚାରିଲେ ଏ ଧରା ଭ୍ରମର ନୁହନ୍ତି, ଆନ ଭ୍ରମର ଆସିଥିବେ, ଏହା ଦେଖି ବୁଝିବା । ଏମନ୍ତେ ସେ ଭ୍ରମରଙ୍କୁ ଧରାଇ ଅତି ସରୁ କଉସୂତା ଚିହ୍ନ ଦେଇ ତାଙ୍କୁ ନେଇ ଅରଣ୍ୟ ଭିତରେ ଗୁଡ଼ି ଅଇଲେ, ଆରଦିନ ରାଣୀଙ୍କ ମାର୍ଜଣା ବେଳକୁ ସେହି ଭ୍ରମର ଆସି ବେଢିଲେ ।

ଶୁଣିଲ୍ କି, ଏହି.କୁ ସହଜ ପ୍ରୀତି କହି, ଯେତେ ସଙ୍କଟ ପଡ଼ିଲେ ଛୁଟି ନ ପାରଇ ।

ଏବେ କାର୍ଯ୍ୟ-ଘେନା-ପ୍ରୀତି ଯେ ରୂପେ ତାହା କହିବା ଶୁଣୁ । ଶଶଧର ନାମେ ଏକ କ୍ଷତ୍ରିୟ ଜଣେ ଥିଲା । ସେ ନନ୍ଦିନୀ ନାମେ ଗାଈ ଗୋଟିଏ କିଣିଲା । ସେ ଗାଈ ନିତ୍ୟାନ (୮୭) ବନସ୍ତରେ ଚରି ଆସଇ । ଶଶଧର ତାକୁ ଘରେ ବାନ୍ଧି ଥାଏ । କେତେଦିନ ଉତ୍ତାରୁ ନନ୍ଦିନୀ ଗର୍ଭହୋଇ ସମ୍ପୂର୍ଣ୍ଣ ମାସରେ (୮୮) ଏକ ବାଛୁରି ଜନ୍ମ କଲା । ଦୁଇ ମାସ ଉତ୍ତାରୁ ତାକୁ ଶଶଧର ଦୋହନ କଲା ଯେ ପ୍ରଥମେ ଦୁଧ କୁଣ୍ଡାଏ (୮୯) ଲେଖାଏ ନିତ୍ୟ ଦିଅଇ । ଶଶଧର ସେ ଦୁଧ ଖାଇ ଆନନ୍ଦ ହୋଉଥାଇ । କିଛି ଦିନ ପରେକ ତା'ଦେହ ବଳିଷ୍ଠ ହେଲା । ମଧ୍ୟର ଲୋଭେ (୯୦) ସେ ଗାଈଠାରେ ବଡ଼ ସ୍ନେହ କଲା । ଦିବ୍ୟ କୋମଳ ଘାସ ଆଣି ଦିଅଇ । ସୁହାଳକୁ ଚିକ୍କଣ କରି ସଜାଡ଼ିଲା । ଏ ରୂପେ ଯତ୍ନ କରିବାରୁ ଦୁଧ ଦେଢ଼କୁଣ୍ଡା ଲେଖାଏଁ ଦେଲା । ତାହା ଦେଖି ଶଶଧର ଅନ୍ନ ଗନ୍ଧ ଛୁଆଇଲା । ଘାସହିଁ ଅତି ଯତ୍ନକରି ଦିଅଇ । ଘିଅ ଦୁଧ ଖାଇ ଅତି ଆନନ୍ଦ ହୋଉଥାଇ । କେତେଦିନ ଅନ୍ତରେ ନନ୍ଦିନୀ ଗର୍ଭ ହୁଅନ୍ତେ ସ୍ତନରୁ କ୍ଷୀର ଶୁଖିଲା । କମେ ଦୁଧ ଊଣା ହୁଅନ୍ତେ ଘାସ ସରିକ ନ ଦେଲା । ନନ୍ଦିନୀ କାହିଁ ଅଛି, ସେ କି ଖାଉଛି ଏହା ମନେ ନ କରଇ । ଆହାର ନ ପାଇବାରୁ ଗାଈ ବଡ଼ ଦୁର୍ବଳ ହେଲା । ବନସ୍ତରେ ଚରିବାକୁ ଘାସ ନ ପାଇଲା, ପାଣି ସରିକ ପିଇବାକୁ ନ ମିଳଇ । ଯେବେ ଘରକୁ ଆସଇ ତେବେ ଶଶଧର ପିଟିକରି ଘଉଡ଼ି ଦିଅଇ, ଏ ଓଳି ସେ ଓଳି ବୁଲି ଅଇଁଠା ପତର ଖାଇ ମରୁ ଥାଇ । ଏହା ଦେଖି ଶଶଧର ବୋଲଇ ଏ ଓଲେଇ (୯୧) ଗାଈକି ଖେଦି ଦିଅ, ଏହାକୁ କାହିଁକି ବାଘ ଖାଉ ନାହିଁ ।

ଶୁଣିଲ୍ଟିକି, ଏରୂପେ କାର୍ଯ୍ୟ-ଘେନା-ପ୍ରୀତି । କାର୍ଯ୍ୟ ପାଉଥିବା ଯାକ ପ୍ରୀତି କରିଥିବ, କାର୍ଯ୍ୟ ସରିଲେ ଶତ୍ରୁ ପ୍ରାଏ ଅନ୍ତର କରିବ । ଏମନ୍ତ ପ୍ରୀତି ଉତ୍ତମ ନୋହଇ ।

ଏବେ ପ୍ରବଳ-ଶଠ-ପ୍ରୀତି ଯେ ରୂପେ ତାହା କହିବା ଶୁଣୁ । ସେ ଯେ ହେମବତୀ ନାମେ ଏକ ନଗର । ସେ ନଗର ରାଜା ନାମ କେଳିଗୁପ୍ତ । ସେ ନଗରବାସୀ ମନୋହର ନାମେ ଏକ ବଣିଆ । ତାହାର ଖଞ୍ଜନୀ ନାମେ ଏକ କାନ୍ତା, ସେ, ପୁଣି ଅତ୍ୟନ୍ତ ସୁନ୍ଦରୀ, ତାକୁ ଦେଖିଲେ ଯୋଗୀନ୍ଦ୍ରମାନଙ୍କ ମନ ଟଳିବ । ଏକ ଦିନ କେଳିଗୁପ୍ତ ରାଜା ନଗର ବିଜେ କରିବାବେଳେ ସେ ଖଞ୍ଜନୀକି ଦେଖିଲେ, ତା ରୂପରେ ମୋହିତ ହୋଇ ରତି ଇଚ୍ଛାରେ କେତୁତ ଯତ୍ନ କଲେ ଯେ ସେ କଦାପି ସମ୍ମତ ନ କଲା (୯୨) । ରାଜା ଅହର୍ନିଶିରେ ତାଠାରେ ଏକ ମନ ହୋଇ କିରୂପେ ତାକୁ ଭୋଗ କରିବେ ଏହି ଭାବନା କରୁଥାଆନ୍ତି ।

କାର୍ଯ୍ୟ-ଘେନା ପ୍ରୀତି

ପ୍ରବଳ-ଶଠ-ପ୍ରୀତି

ଏକ ଦିନକରେ ସେ ବଣିଆ ମନୋହରକୁ ଡ଼କାଇ ବହୁତ ଆଦରରେ କହିଲେ ତୁ ଆମ୍ଭ ଗ୍ରାମରେ ଗୃହକର ହୋଇ ରହ । ଗୃଙ୍ଗଡ଼ା ଘର (୯୩) ଆତଯାତ କରିବୁ, (୯୪) ତୋତେ ବଡ଼ ସୁଖ ଦେବା, କଣ୍ଠି କ୍ରରେ ରହିବୁ । ଆମ୍ଭେ ବଡ଼ ଅନୁରାଗ କଲୁଁ । ଗୃଙ୍ଗଡ଼ା ଘର ଶାଡି ବାନ୍ଧେ (୯୫) । ଏହା ଶୁଣି ମନୋହର ବିଚାରିଲା ଏ ତ ମୋର ବଡ଼ ଭାଗ୍ୟ କଥା । ରାଜାଙ୍କ ଗୃଙ୍ଗଡ଼ା ଘରେ ଅଧିକାରୀ ହେବି । ଏଥୁଁ ଅଧିକ କଉଁ କଥା ଅଛି । ସେମନ୍ତେ ଶାଡି ବାନ୍ଧିଲା । ଗୃଙ୍ଗଡ଼ା ଘରେ ଥିବା ରତ୍ନ ଅଳଙ୍କାର ଦ୍ରବ୍ୟ ପାଟବସ୍ତ୍ରମାନ ଆତଯାତ କରୁ ଥାଇ । ରାଜା ତା ଉପରେ ବିଶ୍ୱାସ କରି ଥାଆନ୍ତି, ନାନା ହସରସ କଥାରେ ମେଳାପ କରି (୯୬) ଅନ୍ତର୍ଗତ କଥାମାନହିଁ କହନ୍ତି । ପୁଣି ଇଙ୍ଗିତରେ କହୁ ଥାଆନ୍ତି, ଆମ୍ଭର ପାଞ୍ଚ ସାତ ବରଷ ହେଲା କାମ ବିକାର ନାହିଁ । ମନୋହର ଜାଣିବାକୁ ନପୁଂସକ ଆଚରଣ କରି ଥାଆନ୍ତି । ଏରୂପେ ଦୁଇ ଚାରି ମାସ ଯାଆନ୍ତେ ରାଜା ଗଉରୀବ୍ରତ କରିବାକୁ ଆରମ୍ଭ କଲେ । ତହିଁର ଉପହାର ପଦାର୍ଥମାନ ଭିଆଣ (୯୭) ହେଲା । ମନୋହରକୁ ଏକାନ୍ତରେ କହିଲେ, ତୁ ଯେବେ ଗୋଟିଏ କଥା କରିବୁ ତେବେ ବ୍ରତ କରିବା । ସେ କହିଲା, ତେବେ ଆଜ୍ଞା ହୋଉ । ରାଜା କହିଲେ, ଆମ୍ଭର ପୁରୁଷ ପଣ ନ ଥିବାରୁ ଗଉରୀବ୍ରତ, କରୁଅଛୁଁ । ପାଞ୍ଚ ରାତି ଉନ୍ନିଦ୍ର ହୋଇ ପୂଜା କରିବା । ଏଥକୁ ପୁରୁଷ ଅଙ୍ଗ ନେଇ ଘରକୁ ନ ଯିବେ । ସ୍ତ୍ରୀ ଜଣେ ଦୀପ ତେଜି ଥିବ । ସେ ପୁଣି ବେଶ୍ୟା ବିଧବା ନୋହିବ, କୁଳ ସ୍ତ୍ରୀ ହୋଇଥିବ । ତ ପାଇଁ ନୂଆ ଅଳଙ୍କାର ନୂଆ ଶାଢ଼ୀ ପାଞ୍ଚଶ ଟଙ୍କାରେ ହୋଇଥିବ ସେ ସେ ଅଳଙ୍କାର ଲଗାଇ ଶାଢ଼ୀ ପିନ୍ଧି ପୂଜା ପାଖରେ ବସି ଦୀପ ତେଜୁଥିବ । ପୂଜା ସରିଲାଠାରୁ ଠାକୁରାଣୀଙ୍କି ବନ୍ଦାପନା କରି ସେ ଶାଢ଼ୀ ଅଳଙ୍କାର ଘେନି ରାତି ଦୁଇଘଡ଼ି ଥାଉଁ ତା ଘରକୁ ଯିବ । ଏହିରୂପେ ପାଞ୍ଚ ଦିନଯାକ ନୂଆ ଅଳଙ୍କାର ନୂଆ ଶାଢ଼ୀ ହେଉଥିବ । ଯଉଁଦିନ ଯେ ଆସିବ ସେହି ଦିନ ସେ ଏହିରୂପେ ନେଉଥିବ । ଏକଥା ତୁ ଘଟଣା କର । ଆନ ଲୋକକୁ ଏକଥା କୁହା ଯିବ ନାହିଁ । ଏତକ ଯେବେ କରି ପାରିବୁ ତେବେ ତୋ ସକାଶୁଁ ବ୍ରତ କରିବା । ମନୋହର କହିଲା ତେବେ ଯାଉଛି ବୁଝିବି । ଏମନ୍ତେ ଯାଇଁ ବୁଝନ୍ତେ ବଡ଼ ଦୁଃଖିତ ଜଣେ (୯୮) ଥିଲା ସେ ସେ ସନମତ କଲା । ଏହା ଆସି ରାଜାଙ୍କୁ କହନ୍ତେ ସେହି ଦିନ ରାଜା ବ୍ରତ ପୂଜା କରି ବସିଲେ । ସେ ସ୍ତ୍ରୀକି ମନୋହର ଆଣି ନୂଆ ଅଳଙ୍କାର ନୂଆ ପାଟବସ୍ତ୍ର ଦେଲା । ସେ ତାହା ଭୂଷଣ ହୋଇ (୯୯) ପୂଜା ପାଶେ ବସି ଦୀପ ତେଜୁଥାଇ । ରାଜା ତାକୁ ମଝି ଭଲ କରି ନ ଚାହାନ୍ତି । ରାତି ଦୁଇଘଡ଼ି ଥାଉଁ ବନ୍ଦାପନା କରି ସେ ଭୂଷଣମାନ (୧୦୦) ଘେନି ଘରକୁ ଗଲା । ଏହା ମନୋହର ସ୍ୱପ୍ନରେ ଦେଖୁଥାଇ । ଆରଦିନ ସେହିରୂପେ ତାକୁ ଆଣିଲା । ସେ ନୂଆ ଅଳଙ୍କାର ଭୂଷଣ ହୋଇ ନୂଆ ଶାଢ଼ୀ ପିନ୍ଧି ପୂଜାଠାରେ ଦୀପ ତେଜି ରାତି ଥାଉଁ ଥାଉଁ ବନ୍ଦାପନା କରି ବାହାରି-ଗଲା । ତୃତୀୟ ଦିନ ରାଜା ଗୃଙ୍ଗଡ଼ା ଘରକୁ ଯାଇ ଉତ୍ତମ ରତ୍ନ ଅଳଙ୍କାରମାନ ଦ୍ରବ୍ୟ

ପାଟବସ୍ତ୍ର ବାଛି ମନୋହରକୁ କହିଲେ, ଏମାନ ଆଜ୍ଞା ସେ ସ୍ୱୀକ ଦେବୁ । ଏହା ଶୁଣି ମନୋହର ବିଚାରିଲା, ଆଜ ମୋ ଭାଗ୍ୟ ଖଞ୍ଜନୀକି ଆଣିବା ପାଇଁ । ତାକୁ ତ ଏ ଛୁଇଁବେ ନାହିଁ, ଅଲଭ୍ୟରେ (୧୦୧) ଅମୂଲ୍ୟ ଦ୍ରବ୍ୟମାନ ନେବା । ରାଜା ତ ତାକୁ ଚହ୍ନି ନାହାନ୍ତି କେ ଅବା ଏହା ଜାଣୁଛି । ଏରୂପେ ଘରକୁ ଯାଇ ଖଞ୍ଜନୀକି କହିଲା ଆଜ ତୋତେ ରାଜାଙ୍କ ପୂଜା ଦରଶନ କରାଇ ନେବା । ଏହା ଶୁଣି ଖଞ୍ଜନୀ ବଡ଼ ଆନନ୍ଦ ହେଲା । ରାତ୍ର ପ୍ରବେଶ ହୁଅନ୍ତେ ଖଞ୍ଜନୀକି ଘେନି ମନୋହର ନବରଠାକୁ ଗଲା । ରାଜା ତ ପୂଜାରେ ବସି- ଅଛନ୍ତି, ମନୋହର ସେ ବସ୍ତ୍ର ଅଳଙ୍କାର ଆଣି ଖଞ୍ଜନୀକି ଭୂଷଣ କରି ଦେଇ କହିଲା ତୁ ଯାଇଁ ରାଜାଙ୍କ ପୂଜାଘରେ ବସି ଧୂପ ଜାଳୁଁ ଥିବୁ ପୂଜା ସରିଲାଠାରୁ ଠାକୁରାଣୀଙ୍କି ବନ୍ଦାପନା କରି ବାହାରି ଆସିବୁ । ଏମନ୍ତ କହି ତାକୁ ପୂଜା ଘରକୁ ପଠାଇ ଦେଇ ଏଣେ ଗୁପ୍ତ ହୋଇ ରହିଛି । ଖଞ୍ଜନୀ ସେ ଘର ଭିତରକୁ ଯାଆନ୍ତେ ଅନ୍ଧ ଚକ୍ଷୁ ପାଇଲା ପରି ରାଜା ପୂଜାରୁ ଉଠି ଆସି କୋଳ କରି ଘେନଗଲେ । ମନ ଅନୁରୂପେ ବିହାର କରି ମହା ଆନନ୍ଦ ହୋଇଅଛନ୍ତି । ମନୋହର ଏହା ଦେଖି ବିଚାରଇ, ଦଇବ ଘଟଣା ବଡ଼ ବଳୀଆର ତ ! ଏତେବେଳେ କି ବୁଦ୍ଧି କରିବା । ଏହା ଅବା କାହାକୁ କହିବା । ଆପଣା ହାଥରେ ତ କରିଛି ଆଉ କେ ଭୋଗ କରିବ ।

ଏମନ୍ତେ ରାଜା ରାତ୍ରଯାକ ଖଞ୍ଜନୀକି ଭୋଗକରି ରାତ୍ର ପାହିବା ବେଳକୁ ଛାଡ଼ି ଦେଲେ । ଏ ଉତ୍ତାରୁ ମନୋହରକୁ ରାଜା କହିଲେ ତୋ ସେବା ଫଳ ଆମ୍ଭଙ୍କୁ ମିଳିଲା । ଏଥର ଆପଣା ବ୍ୟାପାର (୧୦୨) କରି ରହ । ଅଜଠାରୁ ତୋ ଚାକିରି କାଟ ହେଲା । ଏରୂପେ ରାଜାଙ୍କଠାରୁ ଶୁଣି ମନ ଦୁଃଖରେ ମନୋହର ଖଞ୍ଜନୀକି ଘେନି ପୁରକୁ ଅଇଲା ।

ଏରୂପେ ଏହାକୁ ପ୍ରବଳ-ଶଠ-ପ୍ରୀତି କହି । ଏ ପ୍ରୀତି ଉତ୍ତମ ନୋହଇ ।

ଏହା ମୋହନାଙ୍ଗ କହନ୍ତେ ଚଞ୍ଚଳାକ୍ଷୀ ମହା ଆନନ୍ଦ ହେଲା । ଏରୂପେ କଥା ସରିଲା, ରାତ୍ର ପ୍ରକାଶ ହେଲା (୧୦୩) ।

---

# ଚତୁର ବିନୋଦ – ଟୀକା

ଶ୍ଳୋକ : ଭୁଜାଳମ୍ବିତ ତନୁଭୃଜଗାଳି ଯସ୍ୟୋ—ଯାହାଙ୍କର ଶରୀରର ସୌନ୍ଦର୍ଯ୍ୟ ଭୁଜପୁଷ୍ପସମୂହକୁ ପରାଜିତ କରିଅଛି ଏବଂ ସର୍ପମାନଙ୍କ ଦ୍ୱାରା ଭୂଷଣ ହୋଇଅଛି । ବୃନ୍ଦାରକାର୍ଚ୍ଚିତପଦୋ—ଯାହାଙ୍କର ପଦ ଦେବତାମାନଙ୍କଦ୍ୱାରା ପୂଜାପ୍ରାପ୍ତ । ଗଜଦନ୍ତବପ୍ତା—ଗଜଦନ୍ତ ଗଣେଶଙ୍କର ପିତା । ଚନ୍ଦ୍ରାବତଂଶଃ—ଚନ୍ଦ୍ର ଯାହାଙ୍କ ମସ୍ତକରେ ଭୂଷଣ । କରୁଣାବ୍ଧିଧନଞ୍ଜୟାଖ୍ୟୋ—କରୁଣାର ସାଗର ଏବଂ ଧନଞ୍ଜୟ ନାମରେ ଆଖ୍ୟାତ । ମନାଧିଃ ପୀଡ଼ିତଂମିମଂ—ମୋପରି ଅତ୍ୟନ୍ତ ହୀନ ମନୋଦୁଃଖଗ୍ରସ୍ତ ବ୍ୟକ୍ତିକୁ । ଗିରିଶଃ—ଶିବ । ପୁନାତୁ—ପବିତ୍ର କରନ୍ତୁ ।

ପଦ : ବ୍ରଜପୁର ନାଗର—ଶ୍ରୀକୃଷ୍ଣ । ନାଗରୀ ଧୃତିହର—ବ୍ରଜନାରୀମାନଙ୍କର ଧୈର୍ଯ୍ୟହରଣକାରୀ । ନଟବର ସୁନ୍ଦର—ଶ୍ରେଷ୍ଠ ନର୍ତ୍ତକ ଓ ସୁନ୍ଦର । ଦେବପୁରନ୍ଦର—ଦେବତାମାନଙ୍କର ଇନ୍ଦ୍ର ଅର୍ଥାତ୍ ଦେବଶ୍ରେଷ୍ଠ । ବୃନ୍ଦାରକବୃନ୍ଦବର—ଦେବତା ମାନଙ୍କ ମଧ୍ୟରେ ପ୍ରଧାନ ବା ଶ୍ରେଷ୍ଠ । ନୀରଦ-ରୁଚିର-ଧର—ମେଘଶୋଭାଧାରୀ, ମେଘବର୍ଣ୍ଣ । ହଳଧର ସୋଦର—ବଳରାମଙ୍କ ସହୋଦର । ଗୋରସ ତସ୍କର—ଗୋକ୍ଷୀର ଚୋର । ଯଦୁକୁଳ ଭାସ୍କର—ଯଦୁବଂଶର ସୂର୍ଯ୍ୟ । କଳୁଷଚୟହର—ପାପସମୂହର ହରଣକାରୀ । ଜାଡ୍ୟ-ରକ୍ଷାକର । ରମେଶ୍ୱର ଦେବ—ରମାପତି ଦେବ, ଦେବ ନାରାୟଣ । ଏଠାରେ କବି ଶ୍ରୀକୃଷ୍ଣଙ୍କୁ ବନ୍ଦନା କରିବାକୁ ଯାଇ ତାଙ୍କୁ ରମାପତି ନାରାୟଣ ଭାବରେ ଚିହ୍ନିତ କରିଛନ୍ତି । ଅଷ୍ଟାଦଶ ଶତାବ୍ଦୀ ବେଳକୁ ଓଡ଼ିଆ ସାହିତ୍ୟରେ ଶ୍ରୀକୃଷ୍ଣ ଲୀଳାର ତରଙ୍ଗ ମଧ୍ୟରେ ଶ୍ରୀକୃଷ୍ଣ ନାରାୟଣ ବା ଲକ୍ଷ୍ମୀକାନ୍ତ ଭାବରେ ବର୍ଣ୍ଣିତ ହେବା ସୁବିଦିତ । କବିଙ୍କ ଉପରେ ସମସାମୟିକ ଯୁଗସାହିତ୍ୟର ପ୍ରଭାବ ଏଠାରେ ଲକ୍ଷ୍ୟ କରାଯାଇପାରେ । କବି ବ୍ରଜନାଥ ଏଠାରେ ହରି ଏବଂ ହର ଉଭୟଙ୍କୁ ବନ୍ଦନା କରିଅଛନ୍ତି ।

କଥା : ଦେଶଭାଷା—ଓଡ଼ିଆ ଭାଷା । ଏକ କଥାଏ—ଗୋଟିଏ କଥା (ପ୍ରାଚୀନ ପ୍ରୟୋଗ) ।ଶୁଣିମା ହେଉ—ଶୁଣିବା ହେଉ (ପ୍ରାଚୀନ ପ୍ରୟୋଗ) । ବୋଲି—କହି, ବୋଲଯାଏ ବା କୁହାଯାଏ (ପ୍ରାଚୀନ ପ୍ରୟୋଗ) ।

ଶ୍ଳୋକ : ମିଥ୍ୟାଗ୍ରନ୍ଥ ପ୍ରବନ୍ଧେନ—ମିଥ୍ୟାଗ୍ରନ୍ଥ ବା ମିଥ୍ୟାବିଷୟ ରଚନା । ମନୋହରତି ଯା ଭୃଶଂ—ଯାହା ବିଶେଷରୂପେ ମନକୁ ହରଣ କରେ । ନାନାକୌତୁକ ହାସାଦ୍ୟୈଃ—ନାନାକୌତୁକ ଓ ହାସ୍ୟାଦି ଦ୍ୱାରା । ସା କଥେତ୍ୟଭିଧୀୟତେ—ତାହା କଥା ବୋଲି ଅଭିହିତ ହୁଏ ।

କଥା : ୧ । ଏକ ବଣ୍ୟ ଜଣେ—ଜଣେ ବୈଶ୍ୟ । (ପ୍ରାଚୀନ ପ୍ରୟୋଗ) । ୨ । ନନ୍ଦନୀ—କନ୍ୟା । ୩ । ଏକଢନକରେ—ଢନେ (ପ୍ରାଚୀନ ପ୍ରୟୋଗ) । ୪ । ସ୍ନାହାନ—ସ୍ନାନ । ୫ । ଘଟି—ସ୍ନାନ ପୂର୍ବରୁ ଦେହରେ ଲଗାଇବା ଚୂର୍ଣ୍ଣମିଶ୍ରିତ ତେଲ । ୬ । ଝୀନବାସ—ସୂକ୍ଷ୍ମବସ୍ତ୍ର । ୭ । ଆଭରଣ ହୋଇ—ମଣ୍ଡିତ ହୋଇ, ପିନ୍ଧି । ୮ । କପୋଳ—ଗଣ୍ଡଦେଶ । ୯ । ଚଡାଏ—ଚଡାଟିଏ । ୧୦ । ଘେନଲ—ପିନ୍ଧିଲ, ନାଇଲ । ୧୧ । ମହେଶ—ମହାଦେବ, ଶିବ । ୧୨ । ସୁପ୍ରସାଦ—ଲୁଚିମ-ପ୍ରସାଦ, ଝଣ୍ଡା ପାଦୁକାଦ । ୧୩ । ତାମ୍ବୂଳ—ପାନ । ୧୪ । ପୁରକୁ—ଘରକୁ । ୧୫ । ଈଶ୍ୱରଙ୍କୁ—ଶିବଙ୍କୁ, ନାଗାଭରଣ ମହାଦେବଙ୍କୁ । ୧୬ । ଯଉଁ—ଯେଉଁ; ଚଞ୍ଚଳାକ୍ଷୀ ଯଉଁଶୋଭା—ଚଞ୍ଚଳ ଷୀର ଯେଉଁ ସୌନ୍ଦର୍ଯ୍ୟ । ୧୭ । ଅପଲକ ହୋଇ—ଅପଲକ ନେତ୍ରରେ, ଆଖି ପିଛୁଡ଼ା ନପକାଇ । ୧୮ । ଦନ୍ତପନ୍ତ—ଦନ୍ତସମୂହ । ୧୯ । ଅଙ୍ଗଜ୍ୟୋତି—ଅଙ୍ଗଲାବଣ୍ୟ, ଦୀପ୍ତି । ୨୦ । ନେତ୍ରଗତ—ନେତ୍ର ସଞ୍ଚାଳନ ୨୧ । ହାସମୁଖ—ହସହସ ମୁହଁ । ୨୨ । ଭୂରୂରେଖ—ଭ୍ରୂଲତା । ୨୩ । ତାରନଖ—ଉଜ୍ଜ୍ୱଳ ନଖ । ୨୪ । ବାଣୀସୁଖ—କଥା କହିବା ଦେଖିଲେ ଯେଉଁ ସୁଖ । ୨୫ । ଘଞ୍ଚ ହଚ ସଞ୍ଚ-କୁଚ—ଘନ ପୃଥୁଳ ସୁନ୍ଦର ସ୍ତନ । ୨୬ । କଚ—କେଶ । ୨୭ । ମୃଦୁବଚ—ମୃଦୁବଚନ, ଧୀରେକଥା । ୨୮ । ଏମାନ—ଏସବୁ । ୨୯ । ଅନଙ୍ଗ ରଙ୍ଗରେ—କନ୍ଦର୍ପ ଲୀଳାରେ । ୩୦ । ତରଙ୍ଗ—ଅସ୍ଥିର । ୩୧ । ଗହଣରେ—ସଙ୍ଗରେ । ୩୨ । ବଞ୍ଚାଇ—ଲୁଚାଇ, ଗୋପନ କରି । ୩୩ । ଏକାକେ—ଏକାକୀ । ୩୪ । କନ୍ଦର୍ପ ଅନ୍ଧାର ଘୋଟିବାରୁ—କନ୍ଦର୍ପର ଜ୍ୱାଳା ଅନ୍ଧକାର ପରି ଘୋଟିଯିବାରୁ, ଅତ୍ୟଧିକ କାମାବେଗରେ ଅନ୍ଧ ହୋଇଯିବାରୁ । ୩୫ । ଏଘେନ—ଏହି କାରଣରୁ, ଏଣୁ । ୩୫ । ଅଙ୍ଗୀକାର—ସ୍ୱୀକାର । ୩୬ । ଦଏ—ଦେ, ଦାନକର । ୩୭ । ନରହିବଟି—ରହିବନାହିଁ । ୩୮ । ବିଗ୍ରର—କଣ କରିବ ବିଚାର କରି କହ । । ୩୯ । ତହିଁକି—ତାହାଶୁଣି ୪୦ । କଉଁ—କେଉଁ । ୪୧ । ଭାଷାଦେବୁ—କହିଦେବୁ । ୪୨ । କଥାମାନଙ୍କେ—କଥାମାନଙ୍କରେ, କଥାରେ । ୪୩ । ମନ ରସିଲ ନାହିଁ—ମନଲାଗିଲ ନାହିଁ । ୪୪ । ଅଙ୍ଗସଙ୍ଗ ହେବାକୁ—ମିଳିତ ହେବାକୁ । ୪୫ । ପୁଆଣି ହୋଇ ଅସୁଛି—ପ୍ରଥମ ଥର ଶାଶୁଘରକୁ ଅସୁଛି । ୪୬ । ଅରବିନ୍ଦ—ପଦ୍ମ । ୪୭ । କୁମୁଦ—କଇଁ । ୪୮ । ଦ୍ୱିଜେ—ବ୍ରାହ୍ମଣମାନେ । ୪୯ । ଜାର—ବିଟପୀ । ୫୦ । ଭ୍ରମରଗଲେ କନ୍ଦ—ପଦ୍ମ ମୁଦ୍ରିତ ହୋଇଯିବାରୁ ତା ଭିତରେ ରହିଯାଇଥିବା ଭ୍ରମର ତନ୍ଦ୍ରାଭିଭୂତ ହେଲେ । ୫୧ । କାମକେଳି ବିନୋଦ—କନ୍ଦର୍ପକ୍ରୀଡ଼ା ଉପଭୋଗ, ରତିକ୍ରୀଡ଼ା । ୫୨ । ଉଗ୍ରହୋଇଛି—ଉଠିଆହୋଇଛି । ୫୩ । ନେତ୍ରଭଙ୍ଗି ଇଙ୍ଗିତରେ—ଦୃଷ୍ଟିର ସଙ୍କେତରେ । ୫୪ । ଅନୁରକ୍ତ ହୋଇବା ଘେନ—ଅନୁରକ୍ତ ହୋଇବା କାରଣରୁ । ୫୫ । ଅନ୍ନ ସରକ ଭୋଜନ କରନାହିଁ—ଅନ୍ନଛୁଇଁ ନାହିଁ, ଆହାର ଛାଡ଼ିଦେଇଛି । ୫୬ । ହୋଉଛି—ହେଉଛି ୫୭ । ମନ୍ଦହାସରେ—ଅଳ୍ପ ହସି ହସି । ୫୮ । ଇଚ୍ଛାକରେ—ଆଗ୍ରହର ସହିତ । ୫୯ ।

ସତ୍ୱର—ଶୀଘ୍ର । ୬୦ । ତୁଟିବ—ଶେଷ ହୋଇଯିବ, ଭାଙ୍ଗିଯିବ । ୬୧ । ଅନାସ୍ଥା—ଅନାଦର । ୬୨ । ଟେକୁଥାଇଁ—ବଢ଼ୁଥାଏ । ୬୩ । ବରଷାନଦୀ ପରି—ବର୍ଷାକାଳର ନଦୀ ପରି । ୬୪ । ରସ—ଜଳ, ଶୃଙ୍ଗାର ରସ । ୬୫ । କୂଳେ ସରକ ବୁଡ଼ାଇ – ନଦୀ କୂଳ ବୁଡ଼ାଏ; ନାରୀ କୂଳର ମାନ ମର୍ଯ୍ୟାଦା ନଷ୍ଟକରେ । ୬୬ । ଗନ୍ଧର୍ବବ୍ରତ—ଗୌରୀବ୍ରତ ; ସ୍ତ୍ରୀମାନଙ୍କର ପାଳନୀୟ ଏକ ବ୍ରତ । ୬୭ । ଉଜାଗର ହେବା—ଅନିଦ୍ରା ରହିବା । ୬୮ । ଏକମର୍ମ—ଅଙ୍ଗମିଳନ । ୬୯ । ରହି—ରହିକରି । ୭୦ । ଅଙ୍ଗ ସମର୍ପିବା—ଦେହଦାନ କରିବା । ୭୧ । ଉତ୍ତମ ହୋଉ—ଆଚ୍ଛା ତାହାହିଁ ହେଉ । ୭୨ । ତୃଷା ମାରି ପାରଇ—ତୃଷା କଣ ମଣିଷକୁ ମାରିଦେଇପାରେ ? ୭୩ । ବର୍ତ୍ତିନ ମିଳିବ—ମୂଳ ମିଳିବ । ୭୪ । ଯଶୁନାହିଁ—ତୁଚ୍ଛ । ୭୫ । ଉନିଦ୍ର—ଅନିଦ୍ର । ୭୬ । ମୋହୋର—ମୋର । ୭୭ । ଆନଇଚ୍ଛା ଗୁଡ଼ିବ—କଥା ଶୁଣିବା ସମୟରେ ଅନ୍ୟ ଯେକୌଣସି ଇଚ୍ଛାକୁ ଗୁଡ଼ିବାକୁ ପଡ଼ିବ, ଅର୍ଥାତ୍ ଏକାଗ୍ର ଚିତ୍ତରେ କଥାଶୁଣିବାକୁ ହେବ । ୭୮ । ଚରିତ ନହୁଡ଼ିବ—ଗଳ୍ପ ଶୁଣିବା ସମୟରେ ପ୍ରସଙ୍ଗକ୍ରମରେ କୌଣସି ବିଷୟଶୁଣି ତାହାଦ୍ୱାରା ଆକୃଷ୍ଟ ହୋଇ ବା ଉତ୍ତେଜିତ ହୋଇ ଚରିତଭ୍ରଷ୍ଟ ହେବ ନାହିଁ ।

## ହାସ ବିନୋଦ

। ୧ ।ପୁଣ୍ୟପ୍ରତାପ—ବଳ ପଳାଶରୁଁ—ପାପର ପ୍ରାବଲ୍ୟରୁ ( ବ୍ୟଙ୍ଗୋକ୍ତି ) । ୨ । ସେ ପୃଥ୍ୱୀ—କେଳିନଟ ନଗର ବା ରାଜ୍ୟ । ୩ । ଭଣ୍ଡୁଳ—ଚାଉଳ । ୪ । ଧର୍ମବାରଣ ମନ୍ତ୍ରୀବର—ଅଧର୍ମୀ ମନ୍ତ୍ରୀ । ୫ । କର୍ମଅନ୍ଧ ପୁରୋହିତ—କର୍ମକାଣ୍ଡ ଅଜ୍ଞ ପୁରୋହିତ । ୬ । ସେ ଭିକ୍ଷା···ଦିଅନ୍ତି—କେଳିନଟ ରାଜ୍ୟର ପ୍ରଜାମାନେ ଅନ୍ୟରାଜ୍ୟରୁ ଭିକ୍ଷାକରି ଯେଉଁ ଚାଉଳ ଆଣନ୍ତି ତାହାକୁ ଛଅଭାଗ କରି ଧର୍ମବାରଣ ମନ୍ତ୍ରୀ କର୍ମଅନ୍ଧ ପୁରୋହିତଙ୍କ ଉପଦେଶ ଅନୁସାରେ ରାଜକୋଷକୁ ପାଞ୍ଚଭାଗ ନେଇ ପ୍ରଜାମାନଙ୍କ ଆହାର ନିମିତ୍ତ ଛଅଭାଗରୁ ଏକଭାଗ ଦିଅନ୍ତି । ଶାସ୍ତ୍ର ନିୟମ ଅନୁସାରେ ପ୍ରଜାମାନଙ୍କ ଆୟର ଏକ ଷଷ୍ଠାଂଶ ରାଜକୋଷକୁ ଯିବାର କଥା । ମାତ୍ର ଏରାଜ୍ୟର ଅଦ୍ଭୁତ ନ୍ୟାୟ ଅନୁସାରେ ପ୍ରଜାମାନେ ସେମାନଙ୍କର ଭିକ୍ଷାଲବ୍ଧ ଭଣ୍ଡୁଳର ଏକ ଷଷ୍ଠାଂଶ ପାଆନ୍ତି । ୭ । ଭଜିତ କରି—ଭାଜି । ୮ । ଲବଣ ଡାଳି ଦେଇ—ଲୁଣରେ ପାଗ କରି । ୯ । ମନୋହ—ଭୋଜନ । ୧୦ । ସୁନ୍ଦର···ଠାଣି—ନାରୀମାନଙ୍କର ସୌନ୍ଦର୍ଯ୍ୟ ବର୍ଣ୍ଣନା ନିମନ୍ତେ ସେମାନଙ୍କର ଉରକୁ ରମ୍ଭା ବୃକ୍ଷ ସହିତ ତୁଳନା କରାଯାଏ । ମାତ୍ର ଏଦେଶର ରାଣୀଙ୍କର ଶରୀର ନାରୀର ରମ୍ଭାବୃକ୍ଷ ପରି, ଅର୍ଥାତ୍ ରାଣୀଙ୍କର ଉଚ୍ଚତା ବେଶୀ ଓ ଅତ୍ୟନ୍ତ କ୍ଷୀଣାଙ୍ଗୀ । ଏପରି କହିବାର ଅର୍ଥ ରାଣୀଙ୍କ ଶରୀରରେ ବର୍ତ୍ତୁଳତାର ଆଭାସ ନାହିଁ । ୧୧ । ଲମ୍ବ ଲମ୍ବ କୁଚ—ରାଣୀଙ୍କର କୁଚ ଅତ୍ୟନ୍ତ ଲମ୍ବା ଅର୍ଥାତ୍ ରାଣୀଙ୍କର କୁଚ ବୃଦ୍ଧାନାରୀର କୁଚ ସମ ଲମ୍ବିତ । ୧୨ । ଭାଲପଟ ଉଚ—ଉଚ୍ଚକପାଳୀ, (ମନ୍ଦଲକ୍ଷଣ) । ୧୩ । ମନ୍ଦାର ଫୁଲ ନୈନ—ରକ୍ତବର୍ଣ୍ଣ ଚକ୍ଷୁ (ମନ୍ଦଲକ୍ଷଣ) । ୧୪ । ସ୍ୱରସମାନ ଗାତ—ଶ୍ୱେତର ବର୍ଣ୍ଣ ଶଙ୍ଖ ପରି । ୧୫ । ଶଙ୍ଖସୁନ୍ଦର ନାସା—ଶଙ୍ଖପରି ବକ୍ର ନାସା । ୧୬ ।

ମୟୂରକଣ୍ଠ ଭାଷା—ତାଙ୍କର କଣ୍ଠର ସ୍ୱର ମୟୂର ସ୍ୱର ପରି କର୍କଶ । ୧୭ । ବିପୁଳ ଗୁରୁପାଦ—ତାଙ୍କର ପାଦ ଆକାରରେ ବହୁତ ବଡ଼ ଏବଂ ସେହି ଦୃଷ୍ଟିରୁ ସୁନ୍ଦର, ଅର୍ଥାତ୍ ଅସୁନ୍ଦର (ବ୍ୟଙ୍ଗୋକ୍ତି) । ୧୮ । ଗମନେ ଟେକ ନାଦ—ଚାଲିବାବେଳେ ଛଇ ଶବ୍ଦ ହୁଏ, ଦୁମୁଦୁମୁ ଚାଲି । ୧୯ । ମୃଦଙ୍ଗ ମୋଟ କଟି—ରାଣୀଙ୍କର କଟିଦେଶ ମୃଦଙ୍ଗ ପରି ମୋଟ; ନାରୀର ସୌନ୍ଦର୍ଯ୍ୟ ସୂକ୍ଷ୍ମକଟିରେ ପ୍ରକାଶ ପାଏ, ମାତ୍ର ଏଠାରେ ସ୍ଥୂଳକଟି ସୂଚିତ । ୨୦ । ଥଲ୍ଲୋଲ—ପୃଥୁଳ । ୨୧ । ପିତୃଶ୍ରାଦ୍ଧଦିନ...ପୂରା ଅନ୍ନ—ରାଜାରାଣୀ ଦୁହେଁ ବର୍ଷସାରା ଖାଇବାକୁ ପାଆନ୍ତି ନାହିଁ, ମାତ୍ର ପିତୃଶ୍ରାଦ୍ଧଦିନ, ଯେଉଁ ଦିନକି ସେମାନଙ୍କର ଉପବାସ ରହିବା କଥା ସେଦିନ ସେମାନେ ପୂର୍ଣ୍ଣଗ୍ରାସ କରନ୍ତି । ୨୨ । ଦୌଲତ—ଧନ ସମ୍ପତ୍ତି । । ୨୩ । ଅତିସାର—ଝାଡ଼ାବାନ୍ତି ରୋଗ । ୨୪ । ଶୂଳ—ପେଟବିନ୍ଧା । ୨୫ । ପୂର୍ଣ୍ଣ ଆମିଷ ବାସରେ—ପରୀ ମାଛ ମାଂସ ଦୁର୍ଗନ୍ଧରେ । ୨୬ । ଚତୁରାଶି—ଚଉରାଅଶୀ ନରକ ବା ବ୍ୟାଧି । ୨୭ । ଭିଦର—ଦାଣ୍ଡ ମେଲାଘର । ୨୮ । ଯାରେ ଗିଧଡ଼—ଯାରପଣରେ ବିଲୁଆ । ୨୯ । ଧୀରେ ବାଇ—ପଣ୍ଡିତ ପଣରେ ପାଗଳ । ୩୦ । ଥିରେ ପବନ ଥିରପଣରେ ସର୍ପ । ୨୮ । ୨୯ ଓ ୩୦—ଏସବୁ ବ୍ୟଙ୍ଗୋକ୍ତି ସୂଚକ । ୩୧ । ସମାନେ—ସମକକ୍ଷ । ୩୨ । ହାସ ଦେଖିବାକୁ ସ୍ୱପ୍ନ—ସେ ରାଜ୍ୟର ଲୋକମାନେ ସର୍ବଦା ଦୁଃଖକ୍ଲିଷ୍ଟ । ୩୩ । ଚତୁର୍ଥକାଳ—ବାର୍ଦ୍ଧକ୍ୟ । ୩୪ । ତଲାସ—ଅନ୍ୱେଷଣ, ଖୋଜାଖୋଜି । ୩୫ । କୋରଡ଼—ଗଛର ଖୋଲ । ୩୬ । ଗୋରଡ଼—ଶ୍ରେଷ୍ଠ ଗଛକୁ ରକ୍ଷା କରିବାପାଇଁ ଘେରା-ଯାଇଥିବା ଗୋରଡ଼ା । ୩୭ । ଗଡ଼ୁଆ—ଗାଡ଼ । ୩୮ । ବିମ୍ବର—ଗାତ । ୩୯ । କଆର —କଆର । ୪୦ । ଯୋଡ଼—ଖାଲଜମି, ଯୋର । ୪୧ । ମୁଣା—ଅଳି । ୪୨ । ଖମଣା-ପାଣି ପଡ଼ିବା ଫଳରେ ଜମିରେ ହୋଇଥିବା ଗହ୍ୱରା ସ୍ଥାନ । ୪୩ । ଘଣା—ତେଲ ପେଡ଼ିବା ଘଣା । ୪୪ । ଟିକେ—ଘଡ଼ି । ୪୫ । ଦାଣ୍ଡି—ଅଣଓସାରିଆ ରାସ୍ତା । ୪୬ । ଦରାଣ୍ଡି—ଢେଙ୍କି ଭରାଣ୍ଡି । ୪୭ । ଦଣ୍ଡି—ତୁଲାଦଣ୍ଡ ବା ଗୋଚର ଭୂମି । ୪୮ । ଦରାଣ୍ଡି ଖୋଜନ୍ତେ—ହାତବୁଲାଇ ଖୋଜନ୍ତେ । ୪୯ । କୋଡ଼ି କୋଡ଼ି ହୋଇ କୋଡ଼ି—ନଇଁ ହୋଇ ଗ୍ରୀବାରେ ବାରମ୍ବାର ହାତ ପିଟି । ୫୦ । ଷଣ୍ଢ଼ାସୁର...ଭଉଣୀ—ପୁରୁଷ କେବେ ଭଉଣୀ ହୋଇ ନ ପାରେ, ପ୍ରଳାପ । ୫୧ । ସୋଦର—ସହୋଦର । ୫୨ । ଅହୋରୂପମହୋଧ୍ୱନ—ଆପଣଙ୍କ ରୂପ ଓ ସ୍ୱର ଅତ୍ୟନ୍ତ ଆଶ୍ଚର୍ଯ୍ୟଜନକ । ୫୩ । ନରମଲ —ବ୍ୟଙ୍ଗୋକ୍ତି (ନରଶ୍ରେଷ୍ଠ ପରିବର୍ତ୍ତେ) । ୫୪ । ରଞ୍ଜି ଆସୁଅଛି ଜଣ—ଜଣ ଉଠିଆସୁଅଛି, କେତେକ କୁଲକ୍ଷଣା ସ୍ତ୍ରୀଙ୍କ ମୁଖରେ ଜଣ ଉଠିବାର ଦେଖାଯାଏ । ୫୫ । ଶମ୍ଭୁଲିଙ୍ଗ—ସ୍ତନ । ୫୬ । ଲୋଲାଲିଙ୍ଗ—ଦୋଳାୟମାନ ସ୍ତନ । ୫୭ । ଲଭି ସରିକ—ନାଭି ପର୍ଯ୍ୟନ୍ତ । ୫୮ । ପାଣିଲଗି ହୋଉଛନ୍ତି—ଶୌଚ ହେଉଛନ୍ତି । ୫୯ । ଶୀଘ୍ରେ ଭବତୁ—ଶୀଘ୍ର ହେଉ । ୬୦ । କୂପଲକ୍ଷ୍ମୀ ମାଳ—କୂଅ ଦଉଡ଼ା । ୬୧ । ଗତ ମୂର୍ଚ୍ଛିତ—ମୂର୍ଚ୍ଛାଭଙ୍ଗ ହୋଇ । ୬୨ । ସ୍ୱଗ୍ୟମହୋଭାଗ୍ୟମ୍—ଅତ୍ୟନ୍ତ ସୌଭାଗ୍ୟ । ୬୩ । କସ୍ମିନ୍ ସ୍ଥିତ—କେଉଁଠି ଥିଲେ । ୬୪ । ଦୂତେନ...ସ୍ଥିତ—ଦୂତ କହିଲା, ମୃଷାଗାରରେ ଥିଲେ । ୬୫ ।

ହଂ ନ ମ—ନାମ ଭଣ । ୬୬। ତଦା···ପ୍ରତ୍ୟଗଚ୍ଛନ୍ତ—ତାହାହେଲେ କୁମାରୀ ବା କେମା-ଦେଈଙ୍କ ନିକଟକୁ ଯାଆନ୍ତି । ୬୭। କାହିଁ କଥାକୁ—କେଉଁ କାରଣରୁ । ୬୮। ଶ୍ମଶାନ ମଣ୍ଡନୀ—ଯେ ଶ୍ମଶାନକୁ ମଣ୍ଡନ କରେ; ଉଲଗ୍ନା ଓ ଭସ୍ମବିଲେପିତା କାଳୀ ପ୍ରତି ସମ୍ବୋଧନ । ୬୯ । ନିଷ୍ଫଳ ହୋଇ—ହାତରେ କୌଣସି ଗୋଟିଏ ଫଳ ନ ଧରି । ୭୦ । ଜାମ୍ବୁଫଳ—ଜାମୁକୋଳି ବର୍ଣ୍ଣସୂଚକ । ୭୧ । ଭାନ୍ତ ହେବୁ—କ୍ଳାନ୍ତ ହେବୁ । ୭୨ । ଗର୍ଦ୍ଦିଭର ମୁଖୀ—ପେଚ୍ଚମୁହାଁ । ୭୩। ଜଣ—ଏକ କାଷ୍ଠଖଣ୍ଡ ତଣ—ଏଥିରେ ଅଣୀଶାଗୁଣ ଯାଏ । ୭୪ । ବାସ—ବସନ । ୭୫। ପାଚିଲା ହସ—ଦନ୍ତ ଘର୍ଷି ଦିବାରୁ ପାଟିରୁ ଯେଉଁ ରକ୍ତ ବହିଲା ତାହା ବାହାରକୁ ଦିଶିବାରୁ ହସ ପାଚିଲା ହସ ହେଲା । ୭୬। ଜଟାଗ୍ରର ପରି—ମସ୍ତକର କେଶ ଜଟାରେ ପୂର୍ଣ୍ଣ । ୭୭। ଶିରମାନେ···ପାଉଛନ୍ତି—ଶରୀରରେ ଥିବା ଶିରାମୁଣ୍ଡିକ ସର୍ପପରି ଦିଶୁଛନ୍ତି । ୭୮। ଅଗ୍ରପୂଜ୍ୟ ଗଣାଧିପ—ଅଗ୍ରେ ପୂଜାଯୋଗ୍ୟ ଗଣେଶ । ୭୯ । ବିଘ୍ନ ଛିଦେ—ଗଣେଶ ସର୍ବବିଘ୍ନନାଶକ । ୮୦ । ହୁଁ ହୁଁ ଆ—ବଡ଼ପେଚ୍ଚ । ୮୧ । ଝଟତି—ଶୀଘ୍ର । ୮୨ । ଆଭରଣ—ଅଲଙ୍କାର । ୮୩ । ଅଶ୍ୱମୋହିନୀ କାନ୍ତା—ଚାରିପ୍ରକାର ନାରୀ, ଲକ୍ଷଣ ପୁରୁଷର ମୋହକ ଶ୍ରେଣୀ ସ୍ତ୍ରୀ । ୮୪ । ପଦ୍ମଦଣ୍ଡେ—ପାଦେ । ୮୫ । ନାପିତ ପୁତ୍ର—ବାରିକ । ୮୬ । ଉପରଣି ବସ୍ତ୍ର—ଗୁଦର । ୮୭ । ମଶାଣିଚଢ଼ିଆଁ ଗୃଧ୍ର—ଯେଉଁ ଗୃଧ୍ର ଶୁଖିବାକ୍ଷଣି ମଶାଣିର ମଡ଼ା ଦେଖି ଉଠିବ । ୮୮ । କଣ୍ଟକ ଆଲିଙ୍ଗନ—କଣ୍ଟାକୁ ଆଲିଙ୍ଗନ କଲେ ଯେପରି ଲାଗେ ବିଳାପମୁଖୀର ଆଲିଙ୍ଗନ ସେହିପରି । ୮୯ । ମଡ଼ାସଢ଼ା ଚୁମ୍ବନ—ବିଳାପମୁଖୀ ପ୍ରତି ଚୁମ୍ବନ ସଢ଼ା ମଡ଼ା ପ୍ରତି ଚୁମ୍ବନ ସହିତ ସମାନ । ୯୦ । ଲକ୍ଷ ରସପାନ—ନାରୀ ଲାଳପାନ । ୯୧ । ନାସିକା-ଚଲା ରସନା—ନାସିକାରେ ଜିହ୍ୱାଚାଳନା, ଅର୍ଥାତ୍ ଗୋରୁମାନଙ୍କ ପରି ସିଙ୍ଘାଣି ଚାଟିବା । ୯୨ । ଘଣ୍ଟିକାଳଗା ଦନ୍ତଘାତ—ଗଳଦେଶରେ ଦନ୍ତଘାତ । ୯୩ । ହୃଦୁଚ୍ଚା ନଖକ୍ଷତ—କଠିନ ହାଡ଼ ଭେଦକରି ନଖକ୍ଷତ । ୯୪ । ଘୋଟକ ସୁରତ—ଘୋଟକ ରମଣ, କଠୋର ରମଣ । ୯୫ । ମହିଷିଆ ବିପରୀତ—ମହିଷ ସଦୃଶ ବିପରୀତ ରତି । ୯୬ । ଘଡ଼ଘଡ଼ା ହାସ—କର୍କଶ ହସ । ୯୭ । ନୟନ ପୋଡ଼ା ବେଶ—ଯେଉଁ ବେଶ ଦେଖିଲେ ଆଖି ପୋଡ଼ିଯିବ, ଆଖିକୁ ନରୁଚିବା ବେଶ । ୯୮ । କଳକଳା ଗୃହିଣୀ—କଳହିକା ଗୃହିଣୀ । ୯୯ । ପରପଞ୍ଚ କହଣି—ଅଶ୍ଳୀଳ କଥାବାର୍ତ୍ତା । ୧୦୦ । ଚଉରାଶିରସ—ଚଉରାଶି ବ୍ୟାଧି, ନରକ । ୧୦୧ । ନାୟକଶିରେ—ନାୟକ ଶ୍ରେଷ୍ଠ । ୧୦୨। ବ୍ରହ୍ମାଣ୍ଡ ମଣ୍ଡଳକୁ ରଙ୍କପ୍ରାଏ—ସମଗ୍ର ସଂସାର ପକ୍ଷରେ ରଙ୍କ ପରି, ଅର୍ଥାତ୍ ସେମାନଙ୍କର ପ୍ରୀତି କୌତୁକ ପରି ପ୍ରୀତିଲାଭ କରିବା ପାଇଁ ସମଗ୍ର ସଂସାର ଆତୁର । ୧୦୩ । କପାଳନେତ୍ରୀ—ଭଗ୍ନଙ୍କର ନେତ୍ର ଯାହାର । ୧୦୪ । ହାସରୋଗ—ହସକୁ ଏଠାରେ ରୋଗରୂପେ ବ୍ୟକ୍ତ କରାଯାଇଛି । ୧୦୫ । ବିଟୋଳ ପକ୍ଷ—ଅତ୍ୟନ୍ତ କୃପଣ । ୧୦୬। ଧଇର୍ଯ୍ୟ—ଧୈର୍ଯ୍ୟ । ୧୦୭ । କେକେ—କଏ କଏ । ୧୦୮ । ଝାମ—ଅଚେତ । ୧୦୯ । ମଣ୍ଡୂକ ଅଧର—ବେଙ୍ଗ ଓଠପରି ମେଲା ଓଠ ଯାହାର । ୧୧୦ । ଶୋଭାବନ—ସୌନ୍ଦର୍ଯ୍ୟ

। ୧୧୧ । ନିର୍ବାଣ—ବିଚକ୍ଷଣ । ୧୧୨ । ମର୍କତେ—ହରିତ୍ ବର୍ଣ୍ଣ ବିଶିଷ୍ଟ ମର୍କତମଣିରେ । ୧୧୩ । ହାଟକରେ—ସୁବର୍ଣ୍ଣରେ । ୧୧୪ । ବିଦ୍ରୁମ—ରକ୍ତବର୍ଣ୍ଣବିଶିଷ୍ଟ ପ୍ରବାଳ । ୧୧୫ । ପଦ୍ମରାଗ — ରକ୍ତବର୍ଣ୍ଣବିଶିଷ୍ଟ ମଣି । ୧୧୬ । ରଜତରୁଅବତା—ରୂପାରେ ତିଆରି ରୁଅ ଓ ବତା । ୧୧୭ । ଉଗ୍ର—ଓଗ୍ର । ୧୧୮ । ଧାରାସାର ଠିକ୍ କରି — ଧାରାସାର କଣ୍ଟା ମରାଯାଇଛି । ୧୧୯ । ଗୃହାଳୀ — ଗୃହାଳୀ, ଚଉତରା । ୧୨୦ । ଉଦର — ମେଳାଘର । ୧୨୧ । ତୋରଣ — ଖିଲାଣ । ୧୨୨ । ବାତାୟନ—ଝରକା । ୧୨୩ । ଧରଣୀ—ଅଟକପାଏ । ୧୨୪ । ଭଣ୍ଡି—ଦୁର୍ଗ ପ୍ରାଚୀର ମଧ୍ୟରେ ତୋପ ପାଇଁ ଥିବା ଛିଦ୍ର । ୧୨୫ । କାଙ୍ଗୋଲା—ପ୍ରାଚୀରରେ ଥିବା କାରୁକାର୍ଯ୍ୟ । ୧୨୬ । ବଜ୍ରକଠୋର—ବଜ୍ରପରି କଠିନ । ୧୨୭ । ସାଦ୍ରି—ଅଶ୍ୱାରୋହୀ । । ୧୨୮ । ବଇରୀଦଳ ବାନା—ଶତ୍ରୁଧ୍ୱଂସକାରୀ ପତାକା । ୧୨୯ । ଚତୁରଙ୍ଗବଳ—ହସ୍ତ୍ୟାରୋହୀ, ଅଶ୍ୱାରୋହୀ, ଗଜାରୋହୀ ଓ ପଦାତିକ ସୈନ୍ୟ । ୧୩୦ । ଭିକ୍ଷୁକ ଦୀନ ଦୁର୍ଲ୍ଲଭ—ଭିକ୍ଷୁକ ଓ ଦରିଦ୍ର ଲୋକ ଦୁର୍ଲ୍ଲଭ ଅର୍ଥାତ୍ କେହି ଦରିଦ୍ର ନୁହେଁ । ୧୩୧ । ପରଧନେ ଅଲୋଭ—କେହି ପରଦ୍ରବ୍ୟ ପ୍ରତି ଲୋଭୀ ନୁହେଁ । ୧୩୨ । ଘରେ ଘରେ କମଳା—ପ୍ରତ୍ୟେକ ଗୃହରେ ଲକ୍ଷ୍ମୀ ଅଛନ୍ତି । ୧୩୩ । ଗୁଣଧାମ—ସମସ୍ତ ଗୁଣରେ ଆଳୟ । ୧୩୪ । ଭୈରବ—ଶିବ । ୧୩୫ । ମଲ୍ଲକର୍ମେ—ମଲ୍ଲଯୁଦ୍ଧରେ । ୧୩୬ । ଦଣ୍ଡଧାରୀ—ନୃପତି । ୧୩୭ । କି ବିଦ୍ୟାକୁ ଅଛି ପାରି— କି କି ବିଦ୍ୟାରେ ପାରଙ୍ଗମ ହୋଇଅଛି । । ୧୩୮ । ଶଗୁ ଶଗୁ -ଶୁଣ ଶୁଣ । ୧୩୯ । ସ୍ୱର୍ଥ ସ୍ୱର୍ଥ ପୃତ—ସ୍ପଷ୍ଟ ଶବ୍ଦର ବିକୃତ ଉଚ୍ଚାରଣ । ୧୪୦ । ବେଧ—ବେଦର ବିକୃତ ଉଚ୍ଚାରଣ । ୧୪୧ । ନେଉଳ ଗୃହାଣୀ—ଆଖି ମିଟି ମିଟି କରି ଗୃହିବା । ୧୪୨ । ଉଆଁସ ନିଶିର ଶଶୀ—ଅମାବାସ୍ୟାର ଚନ୍ଦ୍ର (ଉପହାସ ଛଳରେ ) । ୧୪୩ । ପଣ୍ଡିତଲଙ୍ଗ—ପଣ୍ଡିତ ଶ୍ରେଷ୍ଠ ( ଉପହାସ ଛଳରେ ) । ୧୪୪ । କରଡ଼ା—କଡ଼ା । ୧୪୫ । ତରଡ଼ା—ତରଳ । ୧୪୬ । ସଡ଼ପା—ଅଳ୍ପଭାଷୀ । ୧୪୭ । ତମ୍ପଣା—ସୂଚୀବନ୍ତ । ୧୪୮ । ଫଣଫଣା—ନିର୍ଲ୍ଲଜ । ୧୪୯ । ସଙ୍କରବଂଶ—ବର୍ଣ୍ଣସଙ୍କର ଜାତ । ୧୫୦ । ମୁଣ୍ଡା କରିବେ ଚଣ୍ଡିକା— ଚଣ୍ଡି ତୋ ବଂଶକୁ ମୁଣ୍ଡା କରିବେ ବା ନାଶ କରିବେ । ୧୫୧ । ଗ୍ରସୁ—ଗ୍ରାସ କରୁ । ୧୫୨ । ବଙ୍କଟ କେଙ୍କଟ ମଣ୍ଡୂକ ତୁଣ୍ଡା – ତୁଣ୍ଡ ବଙ୍କା, କେଁ କେଁ ସ୍ୱର, ବେଙ୍ଗ ପାଟି ପରି ପାଟି । ୧୫୩ । ଝଂମୁରି ମୁଣ୍ଡା—ଅବିନ୍ୟସ୍ତ କେଶ ଯାହା ମୁଣ୍ଡରେ ଥାଏ । ୧୫୪ । ଲୋହିତ ଈକ୍ଷଣ—ରକ୍ତ ବର୍ଣ୍ଣ ଚକ୍ଷୁ । ୧୫୫ । ଶୋହିତ ଆଳୁ – ଶୋଭା ପାଉଥିବା ଆଳୁ । ୧୫୬ । ଏମନ୍ତ ପଣ୍ଡିତ—ଏଠାରେ ବଳଭଦ୍ର ଗୋଟିଏ ବ୍ରାହ୍ମଣଙ୍କୁ ଲକ୍ଷ୍ୟ କରାଯାଇଅଛି । ୧୫୭ । ଗୋଟ ଆମ୍ବର ଗୋଧି ସର୍ପ—ଗୋଟ ପ୍ରତି ତାଚ୍ଛିଲ୍ୟ ଭାବ ପ୍ରକାଶ କରାଯାଇଛି । ୧୫୮ । ବଡ଼ବ୍ୟାଧି—କୁଷ୍ଟ ରୋଗ । ୧୫୯ । ଭଡ଼ ଆମ୍ଭେ ଦାମ୍ଭୋଡ଼ିଆ ଥୋଡ଼—ହାଲ କରୁ । ୧୬୦ । ପଢ଼ନାହିଁ ସିଧି—ସିଦ୍ଧିରସ୍ତୁ ବିବର୍ଜ୍ଜିତ ଅର୍ଥାତ୍ ନିପଟ ମୂର୍ଖ । ୧୬୧ । ଆମ୍ଭର ··· ··· କୈବର୍ତ୍ତ କୁମ୍ଭାରେ—ତାଙ୍କ ବିବାହରେ କୈବର୍ତ୍ତ ଓ କୁମ୍ଭାରମାନେ ସଭାରେ ବସିଲେ, ତେଣୁ ସେ ବ୍ରାହ୍ମଣ ହୋଇ

ନ ପାରନ୍ତି । ୧୬୨ । ସାମଗ୍ରୀ ·· ଦେଖିରେ—ଖାଦ୍ୟ ପଦାର୍ଥର ପ୍ରାଚୁର୍ଯ୍ୟ ଯୋଗୁଁ ବାଜାବାଲାମାନେ ଗୁଡ଼ଙ୍କର ପଳାଇଲେ । ୧୬୩ । ପଲ୍ଲବିତ ··· କାଠ—ତାଙ୍କ ପାଠଶାଠ ଆଦି ଶୁଣିଲେ ନବ ପଲ୍ଲବିତ ଗଛ ଶୁଖି କାଠ ହୋଇଯିବ । ୧୬୪ । ଫଣ୍ଡିତ ଅଙ୍ଗାର—ଫଣ୍ଡିତ କୁଳାଙ୍ଗାର । ୧୬୫ । ପଦ୍ମ ··· ତୋର—ପଦ୍ମଫୁଲ ପରି ତୋର ଆୟୁଷ ହେଉ ଅର୍ଥାତ୍ ତୋର ଆୟୁଷ ଗୋଟିଏ ଦିନ ହେଉ । ୧୬୬ । ତାନ୍ତ୍ରିକା ··· ହୁଅ—ଏହି ରୋଗ-ମୁକ୍ତିକି ପାଇ ସମସ୍ତେ ସୁଖୀ ହୁଅ, ଅର୍ଥାତ୍ ଏହି ରୋଗରେ ସମସ୍ତେ ମୃତ୍ୟୁ ବରଣ କର । । ୧୬୭ । ବ୍ୟାଧି ବର୍ଦ୍ଧନ ଚୂଡ଼ାମଣି—ଯେଉଁ ବୈଦ୍ୟଚୂଡ଼ାମଣିଙ୍କ ହାତ ଲଗିଲେ ରୋଗ ବଢ଼ିଯାଏ । ୧୬୮ । ଷଣ୍ଡମଣ୍ଡନ ଫଣି—କୁତ୍ସିତ ଷଣ୍ଡ । ୧୬୯ । ମଲ୍ଲି ବାଲିକା ଶଯ୍ୟାକୁ ବିକେ– ରୋଗୀ ମୃତ୍ୟୁ ବରଣ କରେ । ୧୭୦ । ଛ-କାଠି—ହାତ ଓ କାନ୍ଧକୁ ଯୋଗ କରୁଥିବା ଅସ୍ଥିଫଳକ । ୧୭୧ । ପିଇସା ନିଷ୍ଠଳ—ପିଇସା ମୃତ୍ୟୁ ବରଣ କଲେ । ୧୭୨ । ପାଚନ—ରୋଗ ନିମିତ୍ତ ନିନ୍ଦ୍ୟ ଔଷଧ । ୧୭୩ । ଦେଢ଼ ··· ଲେଶରେ—ରୋଗୀ ଏହି ପ୍ରକାର ଚିକିତ୍ସାରେ ରହିଲେ ତାର ଶରୀର ଏପରି ସ୍ଥୂଳ ହେବ ଯେ ଦେଢ଼ ମାସରେ ସେ ମୃତ୍ୟୁ ବରଣ କଲେ ଦଶଜଣ ଲୋକ କଷ୍ଟର ସହିତ ତାକୁ ଉଠାଇବେ । ୧୭୪ । ଶନିଙ୍କି ଶୃଙ୍ଗାର ··· ମୂର୍ଖ—ଏହି ବର୍ଣ୍ଣନାଟି ନିତାନ୍ତ ଅସଲଗ୍ନ ଓ ବକ୍ତାର ମୂର୍ଖତାର ପରିଚାୟକ । ୧୭୫ । ପୌର୍ଣ୍ଣମୀ ... ଭେଦ—ଏହି ବର୍ଣ୍ଣନାରେ ବକ୍ତାର ଅସାର କଥା ପ୍ରକାଶିତ । । ୧୭୬ । କଙ୍କାଳ ଯୋଗ—କଙ୍କାଳସାର ହୋଇଯିବା ଯୋଗ । ୧୭୭ । ଚନ୍ଦ୍ରଗଣି ରୋଗ —ବହୁ ପ୍ରକାର ରୋଗ ରୋଗ । ୧୭ । ଝିଙ୍କି କାଲଗ୍ନ—ଜ୍ୟୋତିଷଶାସ୍ତ୍ର ଅନୁସାରେ ଯେଉଁ ଲଗ୍ନରେ ଶସ୍ୟ ବୁଣାଗଲେ ଝିଙ୍କି ତା ଆଦି ତାକୁ ନଷ୍ଟ କରି ଦିଅନ୍ତି—ଏଠାରେ ହାସ୍ୟରସ ସୃଷ୍ଟି ଉଦ୍ଦେଶ୍ୟରେ ଏହା ପ୍ରକାଶିତ । ୧୭୯ । ହସ୍ତପାଦୁକା ଭଗ୍ନ—ହାତଗୋଡ଼ ଭାଙ୍ଗିଯିବା । ୧୮୦ । ମୃତବସ୍ଥା ଖଡ଼ି—ସେ ଯେଉଁ ସ୍ତ୍ରୀ ପାଇଁ ଖଡ଼ି ପକାଏ ସେ ସ୍ତ୍ରୀ ମୃତବସ୍ଥା ହୁଏ । ୧୮୧ । ନାସାଚ୍ଛେଦନ ନାଡ଼ି—ସେ ଯାହାର ନାଡ଼ି ଦେଖେ ତାର ନାସାରେ ନିଶ୍ୱାସ ବନ୍ଦ ହୁଏ । ୧୮୨ । ବାଳକ ସୁରତ—ଅପ୍ରାପ୍ତ ବୟସ୍କ ବାଳକର ସୁରତ । ୧୮୩ । ବିବାହେ ବିଧବା ପତି—ସେ ଯେଉଁ କନ୍ୟାର ବିବାହ ଲଗ୍ନ ସ୍ଥିର କରେ ସେ କନ୍ୟା ବିବାହ କାଳରେ ବିଧବା ହୁଏ । ୧୮୪ । ସପିଣ୍ଡି ଅନୁକୂଳ—ମୃତ୍ୟୁ । । ୧୮୫ । ଶୁଣାଣିଆ କବଳ—ଶୁଣାନ ଗ୍ରାସ । ୧୮୬ । ନାଡ଼ିଛଡ଼ା ଖୁର ନାଡ଼ି ବନ୍ଦ ହୋଇଯିବା ସମସ୍ତ । ୧୮୭ । ଘଡଘଡ଼ିଆ ତୂରୀ—ଘଡ଼ଘଡ଼ି ପରି ଶବ୍ଦ କରୁଥିବା ତୂରୀ, ଅମଙ୍ଗଳ । ୧୮୮ । ଶିଶୁନାଶନ ନାଗରୀ—ଯେଉଁ ନାଗରୀ ବାଜିଲେ ଶିଶୁ ତୁଟିଯାଏ । । ୧୮୯ । ନାହୋର—ଲାହୋର । ୧୯୦ । ଅଗରା—ଆଗ୍ରା । ୧୯୧ । ଏଗୁଡ଼ିକ ବ୍ୟଙ୍ଗୋକ୍ତି । ୧୯୨ । ସପ୍ତାଙ୍ଗ—ପାଞ୍ଜିରେ ବର୍ଣ୍ଣିତ ବାର ତିଥି ନକ୍ଷତ୍ର ଇତ୍ୟାଦିର ବିବରଣ । ୧୯୩ । ଗାଏ—ମୋଟ । ୧୯୪ । ଠେକକ—ଘଡ଼ିକ । ୧୯୫ । ଭେଟଣା ଯୋଗ—ହାବୁଡ଼ିଯିବା ଯୋଗ, ଭୟ ପାଇବା ଯୋଗ । ୧୯୬ । ବିଛୁଆଡ ଯୋଗ—ବ୍ୟଙ୍ଗୋକ୍ତି । । ୧୯୭ । ଅଜ୍ଞ ··· ପରି—ବ୍ୟଙ୍ଗୋକ୍ତି, ଏହି ଯୋଗରେ ମନୁଷ୍ୟମାନେ ବଡ଼ କାମରେ

ଡମ୍ବର ହେବେ, ଦିନ ଦୁଇ ପହର ପର୍ଯ୍ୟନ୍ତ ସେମାନେ ବିଛଣାରେ ଶୋଇ ଶୋଇ ଅନ୍ନ ଧ୍ୱଂସ କରିବେ । ୧୯୮ । ରୋଦର ବ୍ୟାଧି—ଶନିଙ୍କର ମନ୍ଦ ଦୃଷ୍ଟି ଫଳରେ ଜଳୋଦରୀ ରୋଗ ହୁଏ । ୧୯୯ । ମେଷ ... ଖାଇଯାଉ ଅଛନ୍ତି—ବ୍ୟଙ୍ଗୋକ୍ତି, ମେଷ ଓ ବୃଷ ଅର୍ଥାତ୍ ମେଣ୍ଢା ଓ ଷଣ୍ଢମାନେ ରାଶି ଅର୍ଥାତ୍ ଖସା, ଢଳ ଆଦି ଫସଲକୁ ଖାଇ ନଷ୍ଟ କରି ଦେଉଛନ୍ତି । ୨୦୦ । ଦମ୍ଭରେ—ସମ୍ଭ୍ରମରେ, ବର୍ଷରେ । ୨୦୧ । ବଦ୍ୟମାନେ··· ଚାହିଁବେ—ବୈଦ୍ୟମାନେ ରୋଗୀର ମୂତ୍ର ପରୀକ୍ଷା କରିବା ପାଇଁ ମୂତ୍ରରେ ତେଲ ପକାଇ ପରୀକ୍ଷା କରନ୍ତି । ଏ ବର୍ଷ ତେଲ ଅଭାବ ଯୋଗୁଁ ସେମାନେ କିପରି ରୋଗୀମାନଙ୍କର ମୂତ୍ର ପରୀକ୍ଷା କରିବେ । ୨୦୨ । ଠକ୍କାଙ୍କ ଦେହ—ଗ୍ରହଣର ପରିମାଣ ବ୍ୟଙ୍ଗୋକ୍ତିରେ କୁହାଯାଇଛି । ୨୦୩ । ଉଇଲଗିଡିବ—ଚନ୍ଦ୍ର ପଶ୍ଚିମ ଦିଗରୁ ଗ୍ରାସ ହେବେ । ୨୦୪ । ଦାନ୍ତଘଷି ବସିଲଣି—ଦିବସ ପ୍ରକାଶର ସୂଚନା । ୨୦୫ । ଚଢ଼େଇଙ୍କ ପଡ଼ିଲଣି—ରାତି ପାହିବା ପୂର୍ବରୁ, ପାହାନ୍ତିରୁ । ୨୦୬ । କୁମ୍ଭାର ଚକ ··· ଡେଇଁଲଣି—ଜ୍ୟୋତିଷଶାସ୍ତ୍ର ବିଷୟରେ ବ୍ୟଙ୍ଗୋକ୍ତି । ୨୦୭ । ଗୋଦନ୍ତ ସୁରସ—ପୁରୁଣ ଶସ୍ୟ ପ୍ରତି ବ୍ୟଙ୍ଗୋକ୍ତି । । ୨୦୮ । ପିମ୍ପୁଡ଼ି ଗାଡ଼ ଖୋଳି—ପିମ୍ପୁଡ଼ି ଗାଡ଼ ପରି ଶ୍ରେଷ୍ଠ ଗାତ । ୨୦୯ । ମଙ୍ଗଳସ୍ଥାନ ବଂଶରେ—ଯେଉଁ ବଂଶ ସର୍ବଦା ଅମଙ୍ଗଳ । ୨୧୦ । କାଳ କୁଣ୍ଡଳୀ—କାଳସର୍ପ । ୨୧୧ । କଳ୍କଳ ··· ଗୋତ୍ର—କାଳାବର୍ତ୍ତ ତାର ପିତୃ ଓ ମାତୁଳ ଉଭୟ କୁଳର ଗୋତ୍ର, ବ୍ୟଙ୍ଗୋକ୍ତି । ୨୧୨ । ରଜକ ··· ନଅଇ—ନାପିତର ପତ୍ନୀ ଏପରି ଅମଙ୍ଗଳୀ ଯେ ସେ ଯାହାପାଇଁ ହୁଳହୁଳି ଦିଏ ସେ ସେହିଦିନ ମୃତ୍ୟୁ ବରଣ କରେ । ୨୧୩ । ଶୁଷ୍କମାଂସ··· ଲେଖଇ—ଅମଙ୍ଗଳ ସୂଚକ, ତନ୍ତ୍ରଶାସ୍ତ୍ରୋକ୍ତ ରୀତି । ୨୧୪ । କାଫଡ଼ ··· ଦିଅଇ—ଛିଙ୍କି ଦେବା ସମୟରେ ଛିଙ୍କିବା ଅମଙ୍ଗଳ ସୂଚକ, ମାତ୍ର ନାପିତୁଣୀ ଯେତେବେଳେ ଛିଙ୍କି ଦିଏ ସେତେବେଳେ ସେ ନାକରେ କାଫଡ଼ ଚୂର୍ଣ୍ଣ ଦେଇ ଛିଙ୍କ ଛିଙ୍କ କାର୍ଯ୍ୟ କରେ । ୨୧୫ । ବେତମାରି ··· ଖଣ୍ଡଇ—କଚ୍ଛା ମାରି ଲୁଗା ପିନ୍ଧି ହୁଳହୁଳି ଦେବା ବିଧି—ମାତ୍ର ନାପିତୁଣୀ କଚ୍ଛା ନ ମାରି ଲୁଗା ପିନ୍ଧି ହୁଳହୁଳି ଦେବା ଫଳରେ ଯାହାପାଇଁ ହୁଳହୁଳି ଦିଏ ତାର ଆୟୁଷକୁ ଖଣ୍ଡନ କରେ । ୨୧୬ । ଘୋଟିଁ—ଘୋଡ଼ାଇ ପକାଉଁ । ୨୧୭ । ଅପ୍ରବଳେ—ଧୀର ଭାବରେ । ୨୧୮ । ଅସ୍ଥି ଖଣ୍ଡ ଜଡ଼ିଗଲେ—ବିଳାପ ମୁଖୀର ଗଣ୍ଡଦେଶରେ ସାମାନ୍ୟ ମାତ୍ର ମାଂସ ନ ଥିଲା—ତାର ଓଠ ଯାଇ କର୍ଣ୍ଣରେ ଲାଗିବାରୁ ଜଣାଗଲା ସତେ ଯେପରି ଦୁଇଗୋଟି ଜୋକ ଅସ୍ଥି ଖଣ୍ଡ ଉପରେ ଜଡ଼ିଗଲେ । ୨୧୯ । ପାଏ ପର୍ଯ୍ୟନ୍ତ—ଚାରି ଭାଗରୁ ଭାଗେ, ଏକ ଚତୁର୍ଥାଂଶ । ୨୨୦ । କଜ୍ଜଳହାସୀ ଦୁହିତା—ହାସର ବର୍ଣ୍ଣ ହୋଇଛି ଶୁଭ୍ର, ମାତ୍ର ବିଳାପ ମୁଖୀର ହାସ ପ୍ରକାଶ ପାଇବାରୁ ଅନ୍ଧକାର ଘୋଟିଗଲା ; ତେଣୁ ତାକୁ କଜ୍ଜ୍ୱଳହାସୀ ବୋଲି ଗ୍ରହଣ କରାଯାଇଛି, ବ୍ୟଙ୍ଗୋକ୍ତି । ୨୨୧ । ଏତେକେ—ଏହା କରିବାରୁ । ୨୨୨ । ନିବର୍ତ୍ତିଲା—ଅପସରି ଗଲା ।

---

## ରସ ବିନୋଦ କଥା

। ୧ । କନ୍ଦର୍ପଦୀପ ଜଳୁଛୁ—କନ୍ଦର୍ପ ପ୍ରଭାବର ଜ୍ୱଳନ । ୨ । ଅଥଏ—ଅଥଚ । ୩ । ସାମ୍ୟହୁଅଇ ଯିନା—ସମାନ ହୋଇଯିବ, ଶୀତଳ ହୋଇଯିବ । ୪ । ଭବଃ···ସୁଖକରେ—ନିଖିଳ ସଂସାରରେ ପ୍ରାଣୀମାନଙ୍କର ପ୍ରାଣ ଅପେକ୍ଷା ରସ ଅଧିକ ସୁଖକର । ୫ । ରିପଙ୍କଡା··· ପଶୁଃ—ଛେଦନଯୋଗ୍ୟ ପଶୁ ଯେବେ ରସଜ୍ଞ ହୁଏ ତେବେ ସେ ସଂସାରରେ ଶ୍ରେଷ୍ଠ ତନୁଧାରୀ । ୬ । ରସଭ୍ୟାସୀ···ଗୁଣବାନ୍—ସର୍ବଦା ରସ ପ୍ରୟୋଗକାରୀ ମୂର୍ଖ ହେଲେ ମଧ୍ୟ ସଂସାରରେ ଗୁଣବାନ୍ । ୭ । ରସ···ମତଃ—ତେଣୁ ରସ ସ୍ୱର୍ଗ, ନର, ନାଗାଦି ଲୋକଙ୍କର ପ୍ରିୟ । ୮ । ସୁପକାର—ରନ୍ଧନକାରୀ । ୮ । କଳିତ ରହିଲ—କବଳ ହୋଇ, ଲଖି ରହିଲ । ୯ । ଜୋଡ଼ାଇବା ଆସ୍ୟରେ—ଆସ୍ୱାଦ କରିବା ଢ଼ଙ୍ଗରେ । ୧୦ । ଆସକତ—ଆସକ୍ତ । ୧୧ । ଅତନୁଜ୍ୱର—କନ୍ଦର୍ପଜ୍ୱର, କାମପୀଡ଼ା । ୧୨ । ବାତୁଳ—ପାଗଳ । ୧୩ । କୁମାରୀଚେଷ୍ଟା—କୁମାରୀର ବାତୁଳାବସ୍ଥା । ୪ । ଭର୍ତ୍ସନା—ଛଳନା । ୧୫ । ବ ଙ୍କପରେ ମୋ ଜୀବନ ନେଉଛୁ—ଅଶ୍ୱାରୋହ ମୋ ଜୀବନ ନେଉଛୁ । ୧୬ । ଠଅରାଇବ—ଅନୁମାନ କରିବ । ୧୭ । ଅନଙ୍ଗ ଶର ବୃଷ୍ଟି—କନ୍ଦର୍ପ ଶର ପ୍ରୟୋଗ । ୧୮ । କ ରଙ୍ଗ—କଳ୍ପନା । ୧୯ । ଅପାଙ୍ଗ—ଚକ୍ଷୁ । ।୨୦ । ରହିଏ ମାତ୍ର ଗୁଣ ନକଲ—ସାମାନ୍ୟ ମାତ୍ର କାର୍ଯ୍ୟକଲ ନାହିଁ । ୨୧ । ରୋଚକ ଦ୍ରବ୍ୟମାନ—ରୁଚିକର ଦ୍ରବ୍ୟ ସମୂହ । ୨୨ । ପିଠା—ମିଠା । ୨୩ । ଅରୁଚି ଛଡ଼ା ଘିଇ—ଯେଉଁ ଘିଇ ଖାଇଲେ ଅରୁଚି ଛୁଟିଯାଏ । ୨୪ । ଜିଭ୍ୟା ସରସା କାନ୍ତି—ଜିହ୍ୱାକୁ ସୁସ୍ୱାଦୁ ଲଗିବା କାନ୍ତି । ୨୫ । ପଥ ପନ୍ଥୀ ପିଠା—ଯେଉଁ ପିଠା ସାହାଯ୍ୟରେ ସହଜରେ ପଥ ଖାଇ ହୋଇଯାଏ । ୨୬ । ପଡରଚଟା ଡାଲି—ଯେଉଁ ଡାଲିର ସୁସ୍ୱାଦୁ ଯୋଗୁଁ ପଡର ଗୁଣ୍ଡି ଚାଟିବାକୁ ହୁଏ । ୨୭ । ପଲକହରା ପଖାଳ—ଯେଉଁ ପଖାଳକୁ ଦେଖିଲେ ଆଖିରେ ପଲକ ପଡ଼ିବ ନାହିଁ । ୨୮ । ତନୁତରଳା ତୋଡ଼ାଣି—ଯେଉଁ ତୋଡ଼ାଣି ତନୁକୁ ତରଳାଇ ଦିଏ । ୨୯ । ବାସମସଲ ପାଣି—ସୁଗନ୍ଧ ଜଳ, ମସଲ ମିଶ୍ରଣରେ ସୁଗନ୍ଧିତ ଜଳ । ୩୦ । ଚଞ୍ଚଚଞ୍ଚଳା ଚହ୍ଲା—ଯେଉଁ ଚହ୍ଲା ବା ଘୋଲଦହି ମନକୁ ଚଞ୍ଚଳ କରିଦିଏ । ୩୧ । ମନମଧୁର ଶାଗ—ଯେଉଁ ଶାଗ ମନକୁ ମଧୁର କରିଦିଏ । ୩୨ । ମନରମା ଶାକର—ଯେଉଁ ଶାକରେ ପ୍ରତି ମନ ଅକୃଷ୍ଟ ହୁଏ । ୩୩ । ନାସିକା ହର ମହୁର—ସୁଗନ୍ଧଯୁକ୍ତ ମହୁର । ୩୪ । ବିଚିତ୍ର ରସ ପାଚଲ—ସ୍ୱାଦୁପୂର୍ଣ୍ଣ ପାଚଲ ଫଳ । ୩୫ । କବଳଚର କଢ଼ି—ସ୍ୱାଦୁପୂର୍ଣ୍ଣ ଦହିକଢ଼ି । ୩୬ । ଘଟଣାରୂପାପଣ୍ଡା—ସୁନ୍ଦର ଦେଖାଯାଉଥିବା ପାଣ୍ଡ ତରକାରୀ । ୩୭ । ଭୋଗୀ ଭୋଜନ ଭଜା—ଭୋଗୀଲୋକମାନେ ବା ବିଳାସୀମାନେ ଯେଉଁ ଭଜା ଖାଆନ୍ତି । ୩୮ । ନାରଙ୍ଗ କମଳା ତୋକ୍ଷା—ଖଟାକମଳା ପାଟଡ଼ା । ୩୯ । କଟିତ୍ରିଅ ତେନ୍ତୁଳି ରସ—କଇଥ ଓ ତେନ୍ତୁଳିରସର ଚଟଣି । ୪୦ । କର୍କଟି—କାକୁଡ଼ି । ୫ । ନାଡ଼ି ନାଗବେଳ—ନାଲି ନଡ଼ିଆ । ୪୨ । ଷଡ଼ରସରେ—କଟୁ, ତିକ୍ତ କଷାୟ, ଲବଣ, ମଧୁର, ଅମ୍ଳ ।

। ୪୩ । ଆଶ୍ୱାସି — ଆଶ୍ୱାସନା କରି ବୁଝାଇସୁଝାଇ । ୪୪ । ଥାଉ ଖାଇବାର — ଖାଇବା ଦୂରେ ଥାଉ । ୪୫ । ନ ଜୀଇବ—ବଞ୍ଚିବ ନାହିଁ । ୪୬ । ଅପସରିଲେ— ଅପସରଗଲେ । ୪୭ । ଏକମଣ୍ଡଳୀ ହୋଇ—ଏକତ୍ର ହୋଇ । ୪୮ । ଖେଳନ୍ତେ—ବିଗ୍ରହ କରନ୍ତେ, ଚନ୍ଦ୍ରା କରନ୍ତେ । ୪୯ । ଦୁହେଁ—ଦ୍ୱିତୀୟରେ । ୫୦ । ଚଉରକ୍ଷ—ଚାରିଆଖି, ଅର୍ଥାତ୍ ଦୁହିଙ୍କର ଆଖି ମିଳନ୍ତେ । ୫୧ । କ୍ଷୀଣକର— କଣିକଅ, କଣାଗ୍ରକର କର । ୫୨ । ଅବଧାନ—ମନ ଦେଲେ । ୫୩ । କୃଷ୍ଣାଭିସାରୀ—ଯେଉଁ ନାରୀ କଳାବସ୍ତ୍ରର ବେଶରେ ସଜ୍ଜିତା ହୋଇ ପ୍ରେମିକକୁ ଭେଟିବା ନିମିତ୍ତ ସଙ୍କେତ ସ୍ଥଳକୁ ଗମନ କରେ । ୫୪ । ଅଭିସାର—ପ୍ରେମିକ ସହିତ ମିଳନ । ୫୫ । ଖଣ୍ଡ—ଖଣ୍ଡିତ । ୫୬ । ଖଦ୍ୟୋତମାନେ—ଜଳୁଜଳୁଥା ପୋକମାନେ । ୫୭ । ନିଶାଚରମାନେ—ପେଚା ଓ ଅନ୍ୟାନ୍ୟ ରାତ୍ରିଚର ଜୀବମାନେ । ୫୮ । କନ୍ଦର୍ପ—କେଳି—ଦ୍ୱନ୍ଦ୍ୱ—ଆନନ୍ଦ—ଚିତ୍ତରେ— କନ୍ଦର୍ପଲୀଳା ଯୁଦ୍ଧ ଜନିତ ଆନନ୍ଦ ମନରେ । ୫୯ । ମତ୍ତକରୀକରଣୀ—ମତ୍ତ ହସ୍ତୀ ଓ ହସ୍ତିନୀ । ୬୦ । ବମୁଖରେ—ବିରସରେ । ୬୧ । ଠକାଇଲା—ସମ୍ବରଣ କଲାପରି । ୬୨ । ମଉମୂଷିକେ—ଏକ ମତ୍ତ ମୂଷିକ । ୬୩ । ବିଷାଦହେଲେ—ବିଷଣ୍ଣ ହେଲେ । ୬୪ । ବିପତ୍ତିସୂଚକ—ବିପଦସୂଚକ । ୬୫ । ବିଟ ପୁରୁଷ ସଙ୍ଗ ପ୍ରୀତି—ଜାରକ ପୁରୁଷ ସହିତ ପ୍ରୀତି । ୬୬ । ଚଙ୍କିଜାନନ୍ତି ତଦ୍ ବିଦଃ—ଯେ ଯେଉଁ ପ୍ରକାର ସେ ସେହି ପ୍ରକାର ଜାଣନ୍ତି, ଅର୍ଥାତ୍ ନର୍ମଦାର·ଗୁପ୍ତକଥା ସେହି ସ୍ୱଭାବର ନାରୀ ମାଳତୀ ଜାଣିପାରିଲା । ୬୭ । ସଂପ···ପିନା—ଯେ ଯେଉଁ ପଥର ପଥିକ ସେ ସେ ପଥ ଜାଣିପାରେ । ୬୮ । ନାଗି— ଲାଗି । ୬୯ । ପାଳଡ଼ା—ପାଳିତା ସ୍ତ୍ରୀ । ୭୦ । ବାହାର ଅବକାଶ—ବାହାର ବିକେ । । ୭୧ । ହାଜର ଅଚ୍ଛି—ପ୍ରସ୍ତୁତ ଅଚ୍ଛି । ୭୨ । ତଲାସ—ଖୋଜା । ୭୩ । କେ ପଚ୍ଛରଇ— କିଏ ପଚ୍ଛରେ, ଅଥାତ୍ କେହି ପଚ୍ଛରନ୍ତି ନାହିଁ । ୭୪ । ଗହଣୀରେ ମାପ ହୁଅଇ— ବସ୍ତୁ ପରିମାଣରେ, ହାରି ମାଳା ଇତ୍ୟାଦି ଏତେ ପରିମାଣରେ ଥାଏ ଯେ ସେ ସବୁ ଗହଣୀରେ ମପାଯାଏ । ୭୫ । ଇନ୍ଦ୍ର······ଦଶନ୍ତି—ତାଙ୍କ ତୁଳନାରେ ଇନ୍ଦ୍ର ଭିକାରୀ । ୭୬ । ଝିକୁଟଇ—ଶୋଭାପାଏ । ୭୭ । ଶଚୀକ ଙ୍କେ ଲେଖିଛି—ଶଚୀଙ୍କୁ କେହି ନିମନ୍ତ୍ରଣ କରି ଆଣିଛି । ୭୮ । ଅମୋହ—ଅମୋଘ । ୭୯ । ନିବାଡ଼ିଛି—ଯତ୍ନରେ ନିର୍ମାଣ କରିଛି । । ୮୦ । ନାଗୁଆ କରି—ପ୍ରତିବନ୍ଧ ନିର୍ମିତ ଭାବରେ । ୮୧ । କଥାସନ୍ଧି ପାଇ—କଥାର ମର୍ମ ପାଇ । ୮୨ । ଅଙ୍ଗ ସମର୍ପିବି—ଦେହ ଦାନ କରିବ । ୮୩ । ପ୍ରାଣ ସରିକ ଦେବ— ପ୍ରାଣ ପର୍ଯ୍ୟନ୍ତ ଦେବ । ୮୪ । ଏ ମୋହର ପ୍ରମାଣ—ଏହା ମୋର ନିଶ୍ଚିତ ପ୍ରତିଜ୍ଞା । ୮୫ । ତୋ ଠାକୁ—ତୋନିକଟକୁ । ୮୬ । ଅଇଲି—ଆସିଲି । ୮୭ । କେତେ ଆସେ— କେତେ ଆସ୍ୟରେ । ୮୮ । ଧଇର୍ଯ୍ୟ—ଧୈର୍ଯ୍ୟ । ୮୯ । ତରଳ କରି ପାରଇ କାସ୍ଥ— ଶରୀରକୁ ତରଳାଇ ଦେଇପାରେ, ଅର୍ଥାତ୍ କାମ ଆଶାରେ ଚଞ୍ଚଳ କରିଦେଇପାରେ । ୯୦ । ମନସ୍ତ୍ୱ—ମନୁଷ୍ୟ । ୯୧ । ଯତ୍ର······କାମମନ୍ତ୍ର—ଏହି ଦ୍ରବ୍ୟଗୁଡ଼ିକ ସାହାଯ୍ୟରେ କାମମନ୍ତ୍ର ଯତ୍ର, ସନ୍ତମାନଙ୍କର ମନୋରଞ୍ଜନ କରି ସେମାନଙ୍କୁ ଚରଣତଳେ ଲୋଟାଇପାରେ

। ୯୨ । କାମକୁକ୍କୁର—କନ୍ଦର୍ପର କୁକୁର । ୯୩ । ନତ୍ୟାନ—ଦୈନିକ । ୯୪ । ତୋଟାପୁର—ପ୍ରମୋଦ ଉଦ୍ୟାନ । ୯୫ । ପଅର······ଫିଟିଯାଇରେ—ଯେଉଁ ଗହନ କଥାକୁ ସମାଧାନ କରିବା ଅସମ୍ଭବ ମନେହୁଏ, ତାହାକୁ ଚତୁରତା ବା କୌଶଳର ସହିତ ଅଳ୍ପାୟାସରେ ସମାଧାନ କରାଯାଇପାରେ । ୯୬ । ପହଲି—ପ୍ରହେଳିକା, ଢଗ । ୯୭। ଖଞ୍ଜନ ନୟନ—ଖଞ୍ଜନଶୋଭା ନୟନ । ୯୮ । ଧୃତଟଳଇ—ଧୈର୍ଯ୍ୟ ଟଳଯାଏ, ଧୈର୍ଯ୍ୟଚ୍ୟୁତ ଘଟେ । ୯୯ । ସମ୍ମତ—ସମ୍ମତ । ୧୦୦ । ରତି ଇଚ୍ଛାରେ—ମିଳନ ଇଚ୍ଛାରେ । ୧୦୧ । ଏକାନ୍ତ ପୁର—ନିର୍ଜ୍ଜନ ସ୍ଥାନ । ୧୦୨ । କାହାର ଗତାଗତ ନଥାଇ—ସେ ସ୍ଥାନକୁ କେହି ଯିବା ଆସିବା କରନ୍ତି ନାହିଁ । ୧୦୩ । ଅମଳ—ନିଶା । ୧୦୪ । ମେଳକରେ—ମିଳିତ ହୁଅ । ୧୦୫ । ମେଲଣି—ବିଦାୟ । ୧୦୬ । କଙ୍କଣ···ଏମାନଙ୍କ ଧ୍ୱନି—ନାୟକ ନାୟିକା ରତିକାଳରେ ନାୟିକା ଅଙ୍ଗର ଅଲଙ୍କାରାଦିର ଧ୍ୱନି । ୧୦୬ । ଅମୃତ···ନାହିଁ—ନାୟକ ସହିତ ରତି-କ୍ରିୟାରେ ମତ୍ତ ହୋଇ ମଧ୍ୟ ମନ ସନ୍ତୁଷ୍ଟ ହୋଇନାହିଁ । ୧୦୭ । କେତେ ଭଙ୍ଗୀ—କେତେ ବିଚିତ୍ର ଆଚରଣ । ୧୦୮ । ବଡ଼ମ୍ଭଣ—ହଟହଟା । ୧୦୯ । ମାତିଲ—ରତିକ୍ରିୟାରେ ମତ୍ତଲ । ୧୧୦ । ଭୁ···ବଳାରେ—ନାୟକର ଗୃହକୁ । ୧୧୧ । ଭଗାର ହେଲେ—ଶାନ୍ତ ହେଲେ । ୧୧୨ । ବୁକୁରେ କେ.ଡ଼ ହୋଇ—ଗ୍ରୀବାରେ ହାତ ପିଟି । ୧୧୩ । ହଟିବସି—ହଟଲଗାଇ । ୧୧୪ । ଉପଗ୍ରହ—ପ୍ରତିକାର, ବିରହ ଅବସ୍ଥାରୁ ନାୟକ ଓ ନାୟିକାମାନଙ୍କୁ ରକ୍ଷା କରିବା ନିମନ୍ତେ ଯେଉଁ ପ୍ରତିକାରମାନ ବିଧାନ କରାଯାଏ । ୧୧୫ । ଘୋଟିଲ—ବ୍ୟାପିଲା । ୧୧୬ । ସୁ ବୁଦ୍ଧିରନ୍ଧ୍ର—ଉତ୍ତମ ବୁଦ୍ଧିମାନଙ୍କ ମଧ୍ୟରେ ଯେ ରତ୍ନ ସଦୃଶ । ୧୧୭ । ବାଇକରି—ପାଗଲ କରି । ୧୧୮ । କଟାକ୍ଷ କାଣ୍ଡ—କଟାକ୍ଷରୂପକ ଶର । ୧୧୯ । ଚମ୍ବନ ଚୁମ୍ବକ—ଚୁମ୍ବନ ରୂପକ ଚୁମ୍ବକ । ୧୨୦ । ଗୋଚର ହେବ—ଜଣାଯିବ । ୧୨୧ । ବିଘଟଣ—ବିଷମ । ୧୨୨ । ମୋହନରୂପ—ଯେଉଁ ରୂପକୁ ଦେଖିଲେ ମୋହ ହୋଇଯାଏ । ୧୨୩ । ମନକ୍ଷ୍ୟ—ମନୁଷ୍ୟ । ୧୨୪ । କୁନ୍ଦନ···ବାଳୀ—ଜଡ଼ଉଦିସା ସୁନାପ୍ରତିମା, ଶୁକ୍ଳପକ୍ଷ ଦ୍ୱିତୀୟାର କ୍ଷୀଣଚନ୍ଦ୍ର, ଶାଣରେ ଉଜ୍ଜ୍ୱଳ କରାଯାଇଥିବା ମଣି, ସୁନାର ରେଖାସଦୃଶ, ଯୁବାଜନଙ୍କ ପାଇଁ ଯାହାର ନୟନ ପାଶ ସଦୃଶ, ଯାହାର ବେଶ ଯୁବାଜନଙ୍କୁ ମୁଗ୍ଧ କରେ, ଯେଉଁ ନାରୀ ଯୋଗୀଜନଙ୍କର ମନକୁ ଆବଦ୍ଧ କରେ, ଏହି ପ୍ରକାର ଜଣେ ନାରୀ ତରୁଣକାନ୍ତକୁ ଏତେ ଦଶା ଦେଲା । ୧୨୫ । ତପ୍ତି—ତପ୍ତ । ୧୨୬ । ଚକଗ୍ର—ଚକସ୍ତ । ୧୨୭ । ଦେବତା ବିକାର ମଧ୍ୟ ଅଛି—ଏହା କେବଳ ରୋଗ ନୁହେଁ, ଏଥିରେ କୌଣସି ଦେବତା ଅବତରିଛନ୍ତି । ୧୨୮ । ନେଉଗ୍ରୀଛି—ନେଉଛୁ । ୧୨୯ । ବେଦନା ଅନୁମାନ କରିବା—ରୋଗ ନିର୍ଣ୍ଣୟ କରିବା । ୧୩୦ । ଥାନମୁଦ୍ରା ନଶିଲ—ଆଖି ଓ କାନର ମଧ୍ୟବର୍ତ୍ତୀ ସ୍ଥାନ ଗୃପି କରି ଖାଲି କରିଦେଲା । ୧୩୧ । ଦେଅରୁ ବ୍ୟଥା ଖସନ୍ତା—ଦେହରୁ ବ୍ୟଥା ଦୂର ହୁଅନ୍ତା । ୧୩୨ । ପରମାନନ୍ଦ ରସଭୋଗ କଲା—ଅତ୍ୟନ୍ତ ଆନନ୍ଦିତ ହେଲା । ୧୩୩ । ନଗର ଉପାନ୍ତ ଦେବତା—ନଗର ଶେଷରେ ଥିବା

ଦେବତା । ୧୩୪ । ହୁଂବୋଳେ—ସମ୍ମୁଖରେ । ୧୩୫ । ମହାକୋପାନଳ—ଅତ୍ୟନ୍ତ କ୍ରୋଧ । ୧୩୬ । ବୋଧ କରନେଲେ—ସନ୍ତୁଷ୍ଟ କରଦେଲେ । ୧୩୭ । ହାଦୋଳାରେ—ହସାରରେ । ୧୩୮ । ବାସନାର ଝରି—ସୁଗନ୍ଧିତ ଜଳପୂର୍ଣ୍ଣ ପାତ୍ର । ୧୩୯ । ଅତର କସ୍ତୁରୀ ବିଳାସ ଦ୍ରବ୍ୟମାନ, ପୂଜାରେ ଆବଶ୍ୟକ ହୋଇଥାଏ; ଏଠାରେ ଯେଉଁ ପ୍ରକାର ପୂଜାର ଅବତାରଣା କରାଯାଇଛି, ତହିଁରେ ଏ ପ୍ରକାର ବିଳାସ ସାମଗ୍ରୀର ଆବଶ୍ୟକତା ଅନୁମେୟ ।୧୪୦। ରତିଔଷଧ—ରତି ରୂପକ ଔଷଧ ।୧୪୧ । ଅନ୍ତର ହୋଇ—ଦୂରେଇ । ୧୪୨ । ରତି କାମରତି—ରତି ଓ କନ୍ଦର୍ପଙ୍କର ରତି । ୧୪୩ । ଶଚୀ ଇନ୍ଦ୍ର ପ୍ରୀତି-ଶଚୀ ଓ ଇନ୍ଦ୍ରଙ୍କ ପ୍ରୀତିର ରୀତି । ୧୪୪ । ହର ଗଉରୀ ପ୍ରେମ—ଶିବ ପାର୍ବତୀଙ୍କ ପ୍ରୀତିର ରୀତି । ୧୪୫ । ଚନ୍ଦ୍ର ରୋହିଣୀ କାମ—ଚନ୍ଦ୍ର ଓ ରୋହିଣୀଙ୍କର ମିଳନ ରୀତି । ୧୪୬ । ଅନେକ କେଳି ବଢ଼ାଇ—ଅନେକ ପ୍ରକାର ସମ୍ଭୋଗ କିମ୍ବା ଶେଷ କରି । ୧୪୭ । ବିରହ ଜ୍ୱର ହରାଇ—ମିଳନ ଯୋଗୁଁ ବିରହ ବ୍ୟାଧିକୁ ଦୂର କରି । ୧୪୮ । କନ୍ଦର୍ପ ଘର ବୁଡ଼ାଇ—ଏମାନଙ୍କ ସମ୍ଭୋଗ ରୀତି ନିକଟରେ କନ୍ଦର୍ପର ଦର୍ପ ଚୂର୍ଣ୍ଣ ହେଲା । ୧୪୯ । ଚିର ପ୍ରେମକୁ ବଢ଼ାଇ—ପ୍ରେମର ଚିରକାଳୁ ପ୍ରଚଳିତ ରୀତିକୁ ବର୍ଦ୍ଧନ କରି । ୧୫୦ । ସମ୍ଭାବନା ରଖି—ଭବିଷ୍ୟତ ଆଶା ରଖି । ୧୫୧ । ସମାପତ—ସମାପ୍ତ ।

---

## ନୀତି ବିନୋଦ

। ୧ । ଶରଧା ବଳୁଛି—ଶ୍ରଦ୍ଧା ବଢ଼ୁଛି । ୨ । ନୀତି...ତୁଷ୍ଟସ୍ୱେ—ନୀତି ଧନବୃଦ୍ଧି କରେ, ଗୁଣ ଦାନ କରେ ଓ ସତ୍ୟଧର୍ମ ସମ୍ପାଦନ କରେ । ଏହା ସଂସାରକୁ ଆନନ୍ଦ ଦାନ କରେ ଏବଂ ଯଶ, ସୁଖ, ଦୟା, ପାଣ୍ଡିତ୍ୟ ଓ କୀର୍ତ୍ତିଦାନ କରେ । ଏହା ଭଲମନ୍ଦ, କାର୍ଯ୍ୟ ଅକାର୍ଯ୍ୟ ବିଗ୍ଭର କରିବାରେ ସହାୟକ ହୁଏ । ନୀତି ହେଉଛି ନରପତିଙ୍କର ଭୂଷଣ । ତେଣୁ ହେ ପଣ୍ଡିତମାନେ ତ୍ରିଭୁବନର ସନ୍ତୋଷ ନିମିତ୍ତ ନୀତିର ଉପାସନା କର । ୩ । ପ୍ରକଟ—ପ୍ରକାଶିତ । ୪ । ଦୁହିତା—କନ୍ୟା । ୫ । ବେଦ ପାରାୟଣ—ବେଦପାଠ । ୬ । ନଗ୍ର ଉପାନ୍ତ—ନଗର ଶେଷରେ । ୭ । କୁମ୍ଭ—ଘଟ, ମାଠିଆ । ୮ । କୁମ୍ଭ କଣ୍ଠରେ—ମାଠିଆ ବେକରେ । ୯ । ରଜ୍ଜୁ ବନ୍ଧନ କରି—ଦଉଡ଼ି ବାନ୍ଧି । ୧୦ । ଜଳ ଘଟେ—ମାଠିଏ ପାଣି । ୧୧ । ବୁଡ଼ିଲେ ବୁଡ଼ାଇ—ବୁଡ଼ିବା ଉଠିବା । ୧୨ । ପିତା...ସ୍ୱାତନ୍ତ୍ର୍ୟ-ମର୍ହତି—କୁମାରୀ ଅବସ୍ଥାରେ ପିତା, ଯୌବନ ଅବସ୍ଥାରେ ପତି ଓ ବାର୍ଦ୍ଧକ୍ୟ ଅବସ୍ଥାରେ ପୁତ୍ର ନାରୀକୁ ରକ୍ଷାକରେ, ନାରୀର ସ୍ୱାତନ୍ତ୍ର୍ୟ ନାହିଁ । ୧୩ । ପ୍ରାଣହାରକ—ଆତ୍ମହତ୍ୟା କରିବ । ୧୪ । ପ୍ରମାଣେ—ପ୍ରତିଜ୍ଞା । ୧୫ । ବ୍ୟାଧି ପୀଡ଼ିତ ହେଲା—ରୋଗରେ ପଡ଼ିଲା । ୧୬ । ପଠିଆଇବ—ପଠାଇବ । ୧୭ । ଆପଣା ଚରିତାର୍ଥ ଗଲା—ନିଜର ଦୈନିକ ଆବଶ୍ୟକତା ପୂରଣ କଲା । ୧୮ । ସମ୍ବତ୍ସରେ—ବର୍ଷରେ । ୧୯ । ଲଗ୍ନ ପ୍ରମାଣ କରିଅଛୁ—

ଲିପ୍ତ ସ୍ଥିର କରିଅଛୁ । ୨୦ । ଘୃଣତେଜନ୍ତି—ନିଶ୍ଚିତ ବାରଣ କଲା । ୨୧ । ଦ୍ଵନ୍ଦ୍ଵ କୁଅନ୍ତେ—କଳିକରନ୍ତେ । ୨୨ । ସ୍ଵଜାଙ୍କ ସମ୍ମୁଖକୁ—ସ୍ଵର୍ଗୀଙ୍କ ସମ୍ମୁଖକୁ । ୨୩ । ଗେହ୍ଵିତ ନ୍ୟାସ୍ଥ—ଗର୍ହିତ ନ୍ୟାସ୍ଥ, ନିନ୍ଦନୀୟ । ୨୪ । ବିଗ୍ରହଣା କର—ବିଗ୍ରହ କର । ୨୫ । ନ୍ୟାସ୍ଥ ଛିଣ୍ଡାଇ ନପାରିଲେ—ବିବାଦ ସମାଧାନ କରି ପାରିଲେ ନାହିଁ । ୨୬ । ଅହଙ୍କାର—ଅଶୁଦ୍ଧ । ୨୭ । କନ୍ୟା ପ୍ରବର୍ତ୍ତିବ—କନ୍ୟା ପାଇବା ଉପଯୁକ୍ତ ବିବେଚିତ ହେବ । ୨୮ । ଗ୍ଳାନିଶ୍ରିଆ ବ୍ରାହ୍ମଣ—ଗ୍ଳାନି ସ୍ଵୀକାର କରିଥିବା ବ୍ରାହ୍ମଣ । ୨୯ । ପୁଚ୍ଛନ୍ତେ—ପଚାରନ୍ତେ । ୩୦ । ଧର୍ମରେ ମୋର ପ୍ରାପତି—ଧର୍ମ ଅନୁସାରେ ବା ନୀତି ଅନୁସାରେ ମୋର ପାଇବାର କଥା । ୩୧ । ପୂର୍ବଜନ୍ମନ···ଧାତେ—ବିଦ୍ୟା, ଧନ ଓ କନ୍ୟା ପୂର୍ବଜନ୍ମର ଅର୍ଜନ ଅନୁସାରେ ପ୍ରାପ୍ତି ହୁଏ । ୩୨ । ନଗରକୋଶ ଦୁଇ ଅନ୍ତରେ—ନଗର ଠାରୁ ଦୁଇ କୋଶ ଦୂରରେ । ୩୩ । ମୁଦ୍ରାଗଣ୍ଡି—ଟଙ୍କା ଥଳି । ୩୪ । ଶର ସନ୍ଧନ୍ତେ—ଶର ସନ୍ଧାନ କରନ୍ତେ । ୩୫ । ଉକ୍ତୁର ହେବାକୁ—ବିଳମ୍ବ ହେବାରୁ । ୩୬ । ନନଛନ ହୋଇଛୁ—ଅସ୍ଥିର ହେଉଛୁ । ୩୭ । କଣ ମାଚ୍ଛିକା—ଘର କୋଣରେ ପଟା ଦ୍ଵାରା ନିର୍ମିତ ଥାକ । ୩୮ । ଆଟ୍ଟ ସନ୍ଧିର—ଘରର ଆଟ୍ଟ ଉପରେ । ୩୯ । କବାଟ କିଲା-କବାଟ ବନ୍ଦ । ୪୦ । ସୁରତି ଦେଇ ନ ଥିବାରୁ—ମିଳିତ ହୋଇ ନ ଥିବାରୁ, ଦେହ ଦାନ କରି ନ ଥିବାରୁ । ୪୧ । ଆନଠାରେ—ଅନ୍ୟ ସ୍ଥାନରେ । ୪୨ । ଗବାକ୍ଷ ସୁଣ୍ଡା—ଶ୍ରେଷ୍ଠ ଝରକା, କାନ୍ଥରେ ଲଗାଯାଇଥିବା ଶ୍ରେଷ୍ଠ କଣା । ୪୩ । ବ୍ୟେଶ. ଛିଣ୍ଡାଳୀ—ଗୈରୀ, ବ୍ୟଭିଚାର । ୪୪ । ଓଳିରେ—ଓଳି ତଳେ । ୪୫ । ସନ୍ଦେଶ—ଖବର, ସୂଚନା । ୪୬ । ଅଡ଼ଙ୍ଗ—ଶ୍ରେଷ୍ଠ ପିଣ୍ଡା । ୪୭ । ଛପି ରହିଲ—ଲୁଚି ରହିଲ । ୪୮ । ଚୂକିତ—ଚୁପ୍ ହୋଇ, ବନ୍ଦ ହୋଇ । ୪୯ । ସରକ—ପର୍ଯ୍ୟନ୍ତ । ୫୦ । ଅକୃତ ହୋଇ—କରି ନପାରିବା ହୋଇ, ଅକରଣୀୟ ହୋଇ । ୫୧ । ପ୍ରାଣକୁ ପାଞ୍ଚି ପାରକ—ପ୍ରାଣ ନେଇ ପାରଇ । ୫୨ । ମୁଖ କଳା ଚଳନ—ଲଜ୍ଜାରେ ମୁହଁ ପୋଡ଼ି ଚଳିଲି । ୫୩ । ଠଅରିଲ—ବିଗ୍ରହ ହେଲ, ଠିକ୍ ହେଲ । ୫୪ । ମାଚନ୍ତେ—ମଲ । ୫୫ । ମିତ୍ରତା ହୋଇଥାନ୍ତି—ମିତ୍ର ହୋଇଥାନ୍ତି । ୫୬ । ଚଳି ପଡ଼ିବେ ମୂଢ଼—ମୂଢ଼ମାନେ ମଧ୍ୟ ଯୋଗଗୁଡ଼ି ତାଙ୍କ ପ୍ରତି ଆସକ୍ତ ହୋଇ ପଡ଼ିବେ । ୫୭ । ସେ ସୁଦୃଢ଼ ହୋଇଥାନ୍ତି—ତାଙ୍କ ମିତ୍ର ଯୋଗ ମିତ୍ରତା ବନ୍ଧନରେ ଦୃଢ଼ ଭାବରେ ଆବଦ୍ଧ ହୋଇଥାନ୍ତି । ୫୮ । ଗିରିବର—ପର୍ବତ ଶ୍ରେଷ୍ଠ । ୫୯ । ଅଶ୍ଵରୁ ଉତୁରି—ଘୋଡ଼ାରୁ ଓହ୍ଲାଇ । ୬୦ । ମୁର୍ଚ୍ଛା—ମୂର୍ଚ୍ଛା । ୬୧ । ଲବଙ୍ଗ ପୁଷ୍ପିତ ଲତା—ମଧୁମାଳତୀ ଫୁଟିଥିବା ଲତା । ୬୨ । ମନୋହର ଗଜ—ଭଦ୍ରଗଜ ବଦନ୍ତି । ୬୩ । ସ୍ଫଟିକ—ସ୍ଵଚ୍ଛ ପଥର । ୬୪ । ଝିଣିବାସ—ସୂକ୍ଷ୍ମବସ୍ତ୍ର । ୬୫ । ଚାବ ପିତୁଳା—ଚାବ ପ୍ରତିମା, ଅଚଳାନ୍ତ ପ୍ରତିମା । ୬୬ । ମଳ୍ଲାନ ହୋଇ ରହିଲ—ଦ୍ରୁତ ରହିଲ । ୬୭ । ଗିରି—ଗାର । ୬୮ । ଧାନ ଭଜନ୍ତେ—ଧ୍ୟାନ ଭଙ୍ଗିବାରୁ । ୬୯ । କୃତାଞ୍ଜଳି—ହାତ ଯୋଡ଼ି । ୭୦ । କୃଷ୍ଣମଲ୍ଲିକା—କଳାମଲ୍ଲି । ୭୧ । ସୁବର୍ଣ୍ଣ କେତକୀ—ସୁନାର କେତକୀ । ୭୨ । ରଜତ ଦୁଦୁରା—ରୁପାର ଦୁଦୁରା । ୭୩ । ସୁମରଣା କର—ସ୍ମରଣ କର । ୭୪ । ପବନକୁ—ପବନ ଠାରୁ । ୭୫ । ମନମାଳା···ନ କର ହେ—ମୋର ମନ ରୂପକ

ବରଣମାଳା ଦେଇ ମୁଁ ତୁମକୁ ପତିପଦରେ ବରଣ କରୁଅଛୁ । ତୁମେ ଏଥିରେ କୌଣସି ସନ୍ଦେହ କର ନାହିଁ । ୭୬ । ଚତୁର୍ବେଦ—ଋକ୍‌ବେଦ, ସାମବେଦ, ଯଜୁର୍ବେଦ, ଅଥର୍ବ ବେଦ ।୭୭। ଛଅ ଶାସ୍ତ୍ର—ଷଡ଼୍ ଦର୍ଶନ, ଯଥା -ଗୌତମଙ୍କର ନ୍ୟାୟ, କପିଳଙ୍କର ସାଂଖ୍ୟ, ପାତଞ୍ଜଳଙ୍କର ପାତଞ୍ଜଳ, କଣାଦଙ୍କର ବୈଶେଷିକ, ଜୈମିନଙ୍କର ପୂର୍ବମୀମାଂସା ଓ ବ୍ୟାସଦେବଙ୍କର ଉତ୍ତର ମୀମାଂସା ବା ବେଦାନ୍ତ ।୭୮ । ନଅ ବ୍ୟାକରଣ—ମାହେଶ୍ୱର, ଐନ୍ଦ୍ର, ଚାନ୍ଦ୍ର, କାଶକୃଷ୍ଣ, ଅପିଶାଳ, ଶାକଟାୟନ, ପାଣିନି, ଅମର ଓ ଜୈନେନ୍ଦ୍ର । ୭୯ । ଅଷ୍ଟାଦଶ ପୁରାଣ—ବ୍ରାହ୍ମ୍ୟ, ପାଦ୍ମ୍ୟ, ବୈଷ୍ଣବ, ଶୈବ, ଭାଗବତ, ନାରଦୀୟ, ମାର୍କଣ୍ଡେୟ, ଆଗ୍ନେୟ, ଭବିଷ୍ୟ, ବ୍ରହ୍ମବୈବର୍ତ୍ତ, ଲିଙ୍ଗ, ବାରାହ, ସ୍କନ୍ଦ, ବାମନ, କୌର୍ମ, ମାତ୍ସ୍ୟ, ଗରୁଡ଼ ଓ ବ୍ରହ୍ମାଣ୍ଡ ପୁରାଣ । ୮୦ । ରଘୁବଂଶ, କୁମାର ସମ୍ଭବ, ଉତ୍ତରରାମ ଚରିତ, ଶିଶୁପାଳ ବଧ, କିରାତାର୍ଜ୍ଜୁନୀୟ, ନୈଷଧ । ୮୧ । ଆସକତ —ଆସକ୍ତ । ୮୨ । ଆକଟ କଲେ —ସାବଧାନ କରାଇଲେ । ୮୩ । ଫରଚ୍ଛ କରି ପ୍ରୀତି କରି ନପାରିବାରୁ—ଖୋଲଖୋଲି ଭାବରେ ପ୍ରୀତି କରି ନ ପାରିବାରୁ । ୮୪ । ଘେନ—ଗ୍ରହଣ କର । ୮୫ । କେମନ୍ତ ପତ୍ର କଣିଥିବା ପ୍ରମାଣ ପତ୍ର । ୮୬ । ଖେଦ—ତଡ଼ି ନେବା । ୮୭ । ଜଟଗ୍ଧ—ଚନ୍ଦ୍ରଶାଳାପୁର । ୮୮ । ଭଉଁର—ପାଣି ଭଉଁରି । ୮୯ । ମହାଦାରୁ—ବଡ଼ କାଠ, ବଡ଼ ଗଛ । ୯୦ । ଅଚଳ ସମାନ ମେରୁ—ପର୍ବତ ସମାନ ବଡ଼ ଗଛ । ୯୧ । ପାଟଳ—ମାଟିଆ । ୯୨ । ବାଳକୁଟିଏ—ବାଳକଟିଏ । ୯୩ । ଆରତ ହୋଇ—ବିକଳ ହୋଇ । ୯୪ । ମନିଷଟିଏ—ମଣିଷଟିଏ । ୯୫ । ବୋହିତ ଖଟାଇ—ବୋଇତ ବାନ୍ଧି । ୯୬ । ଢକଗ୍ଧ—ଢକସ୍ରା । ୯୭ । ସଞ୍ଚାର କିଛି ନ ଦିଶିଲା—କିଛି ଚିହ୍ନ ଦେଖାଗଲା ନାହିଁ । ୯୮ । ଠାର—ସଙ୍କେତ । ୯୯ । ନେଉଟି ଅଇଲା—ଫେରି ଆସିଲା । ୧୦୦ । ବୋହିତାଳ—ବୋଇତୁଆଳ । ୧୦୧ । ପଠିଆଇ ଥିଲଇ—ପଠାଇ ଥିଲା । ୧୦୨ । ଦଇବ ଯୋଗରେ—ଦୈବ ଯୋଗରେ । ୧୦୩ । ଗୋଳ—କଳହ, ଦ୍ୱନ୍ଦ୍ୱ । ୧୦୪ । ବାବୁର—ବାପର । ୧୦୫ । ଧର୍ମସୂକ୍ଷ୍ମ ପ୍ରମାଣେ—ସୂକ୍ଷ୍ମ ଧର୍ମ ବିଚାରରେ । ୧୦୬ । ସମ୍ବାଦ—ବିବରଣ । ୧୦୭ । ନିମିତ୍ତ—ସ୍ୱାର୍ଥ । ୧୦୮ । ନାଟ—ସମ୍ପର୍କ । ୧୦୯ । ସ୍ୱୟଂବରଣ—ସ୍ୱୟମ୍ବର ବିବାହ ।.

## ପ୍ରୀତି ବିନୋଦ

। ୧ । ପ୍ରୀତି ··· ଲୋକେଷୁ ଚ—ସଜ୍ଜନଠାରେ ଆଶ୍ରୟୀ ହେଲେ ପ୍ରୀତି ସମସ୍ତ ଦେବତାଙ୍କୁ ମୋହିତ କରେ । ନୀଚ ଲୋକଠାରେ ଆଶ୍ରୟୀ ହେଲେ ପ୍ରୀତି ଅମଙ୍ଗଳ କରେ । ଦୁଷ୍ଟ ଲୋକଠାରେ ଆଶ୍ରୟୀ ହେଲେ ପ୍ରୀତି ଦୁଃଖ ଦାନକରେ । ଶଠ ଲୋକଙ୍କଠାରେ ଆଶ୍ରୟୀ ହେଲେ ପ୍ରୀତି କଷ୍ଟରୁ କଷ୍ଟତର ଅବସ୍ଥା ପ୍ରଦାନ କରେ । ଧୀର ଲୋକଠାରେ ଆଶ୍ରୟୀ ହେଲେ ପ୍ରୀତି ମଙ୍ଗଳ କରେ । ତେଣୁ ଅମଙ୍ଗଳକର ପ୍ରୀତି ସ୍ତ୍ରୀ ଲୋକମାନଙ୍କଠାରେ ଓ ଲୋକରେ ମଧ୍ୟ ନ କରିବା ବିଧେୟ । ୨ । ଏକ ପ୍ରକାର ନୁହଇ—ଗୋଟିଏ ପ୍ରକାର ନୁହେଁ । ୩ । ଶଠପ୍ରୀତି—ହିତୋପଦେଶର ମୃଗକାକ ଶୃଗାଳ

କଥାର ଅବଲମ୍ବନରେ ଉକ୍ତି । ୪ । ବସା—ବସାଘର, ସାମୟିକ ବିଶ୍ରାମସ୍ଥଳ । ୫ । ପୂର୍ବଭାଗ୍ୟ ଦଶିଲ—ପୂର୍ବ ଭାଗ୍ୟ ଦେଖାଗଲା । ୬ । ପରତେ - ପରିଚୟ । ୭ । ବିଡ଼ମ୍ବଣ—ବିଡମ୍ବନା, ବିପଦ । ୮ । ଅଜାଣେ—ଅଜଣା, ଅଜ୍ଞାତ । ୯ । ପ୍ରଭାତ ରବିରଙ୍ଗ—ଉଦୟକାଳୀନ ସୂର୍ଯ୍ୟର ରଙ୍ଗ । ୧୦ । ଟେଖ ଆତୁର—କ୍ଷୁଧାତୁର । ୧୧ । ଲେଖି ସାମନ୍ତ ସତ—ଯେଉଁ ଲୋକ ଲେଖି ସେ ତାର କଥାର ସତ୍ୟତା ରକ୍ଷା କରି ପାରେ ନାହିଁ । ୧୨ । ମୂର୍ଖ ନାୟକ ଗୁଣ—ମୂର୍ଖ ଶିକ୍ଷକର ଗୁଣ । ୧୩ । ଆମ୍ବବାତୁଆ ନାଟ—ବାତ ରୋଗୀର ନାଟ । ୧୪ । କୃପଣଜନ ଭୋଗ—କୃପଣ ଲୋକର ଭୋଗ, ଅର୍ଥାତ୍ ଯେଉଁ ବ୍ୟକ୍ତି ଖର୍ଚ୍ଚ କରିବାରେ କୃପଣ ସେ ବା କି ପ୍ରକାର ଭୋଗ କରିବ । ୧୫ । ମୁଣ୍ଡ ବୋଝିଆ ପାଗ-ଯେଉଁ ବ୍ୟକ୍ତି ମୁଣ୍ଡରେ ବୋଝ ବହନ କରେ ତାର ମୁଣ୍ଡରେ ପାଗ ବାନ୍ଧିବାର ବା କି ଫଳ । ୧୬ । ସଦ ଋଣିଆ ଗୃପ—ସଦା ଋଣଗ୍ରସ୍ତ ଲୋକ କପରି ବା ଖୁସି କରିବ । ୧୭ । ନଈକୂଳିଆ ବାସ—ନଈକୂଳରେ ଘର କରି ରହିଲେ ବନ୍ୟା ଭୟ ରହିଥାଏ । ୧୮ । ଅମଲଟିଆ—ଲୁଣ ଖିଆ । ୧୯ । ବିଧବା ନାରୀ ବେଶ—ବିଧବା ନାରୀର ବେଶ ଭୂଷା ଅଶୋଭନ । ୨୦ । ଦାନ୍ତୁରି ମୂର୍ଖୀହାସ—ଦାନ୍ତୁରି ମୂର୍ଖୀର ହସ ବିଚିତ୍ର । ୨୧ । ବୃଦ୍ଧନାୟକ ବାଳା—ବୃଦ୍ଧ ସ୍ୱାମୀର ଯୁବତୀ ସ୍ତ୍ରୀ । ୨୨ । ଦରିଦ୍ର ପୁଅ ଲୀଳା—ଦରିଦ୍ର ପୁଅର ଲୀଳା ହାସ୍ୟାସ୍ପଦ । ୨୩ । ଝୀଣା ସେବକ କୋପ—କ୍ଷୀଣ ସେବକର କ୍ରୋଧ ମୂଲ୍ୟହୀନ । ୨୪ । ପୁରୁଣା ଲୁଣ ଗୁପ—ପୁରୁଣା ଲୁଣଥିବା ଧନୁ, ପୁରୁଣା ଲୁଣ ସହଜରେ ଛିଣ୍ଡିଯାଏ । ୨୫ । ସିଂହ ଦୁଆର ତେଲ—ସିଂହଦ୍ୱାରରେ ତେଲ ଦେଖିବା ଅମଙ୍ଗଳ ସୂଚକ । ୨୬ । ଗୁହାଳ ପାଖ ବଲ୍ଲୀ—ଗୁହାଳ ପାଖରେ ଥିବା ବୃକ୍ଷଲତା ଗୋରୁମାନଙ୍କ ଦ୍ୱାରା ନଷ୍ଟ ହୋଇଥାଏ । ୨୭ । କପଟୀ ମିତ୍ର ପ୍ରୀତି—କପଟୀ ମିତ୍ରର ପ୍ରୀତିରେ ଆନ୍ତରିକତା ନ ଥାଏ । ୨୮ । ବାଟ ଚଲାଇ ବଣା—ବାଟରେ ଯଦି ଚଳେଇ ବଣା କରିଥାଏ ତେବେ ତାହା ସହଜରେ ନଷ୍ଟ ହୋଇଥାଏ । ୨୯ । ଅପାକ ହେଲେ—ଜୀର୍ଣ୍ଣ ନ ହେଲେ । ୩୦ । ମନେ ନ ଥିଲା ସୁଖ—ଯେଉଁ ସୁଖ କଥା ମଣିଷ କେବେହେଲେ ଭାବି ନ ଥାଏ । ୩୧ । ଝେଡ—ଝାମ୍ପୁଡ଼ି । ୩୨ । ପିଚ୍ଛ—ମୟୂର ପୁଚ୍ଛ । ୩୩ । ବାଂଶଗି—ବଂଶୀ । ୩୪ । ଭୁଞ୍ଜୁଥାଇ—ଭୋଗ କରୁଛୁ । ୩୫ । ଦୁହେଁ ଦୁହିଙ୍କ ପରି ହୁଅ—ପରସ୍ପର ପରସ୍ପରର ଭାଗ୍ୟକୁ ପାଅ । ୩୬ । ବିମୁଖ—ଦୁଃଖିତ । ୩୭ । ମୃତ୍ୟୁ ମଣ୍ଡଳ—ମୃତଲୋକ । ୩୮ । ସୁମୁଖ—ସଦୟ । ୩୯ । ପେଟ୍ ବଡ଼ା ଦୁଖ୍ ଦେଉଛି—ପେଟ ବଡ଼ କଷ୍ଟ ଦେଉଅଛି । ୪୦ । ଉଦର କେ ବାତ୍ ମୁଁ ଦଉଡ଼ତ୍—ଉଦର କଥାରେ ଦଉଡ଼ୁଛୁ । ୪୧ । ଅବସଙ୍କଟ ଜାନକୀ ରାମ ହରେ—ବର୍ତ୍ତମାନର ବିପଦ ବା ଦୁଃଖ ସୀତାରାମ ହରଣ କରନ୍ତୁ । ୪୨ । ମୁଦା—ପରୀକ୍ଷା କରିବା ପାଇଁ ହାତମୁଠା ଭିତରେ ଲୁଚାଇ ରଖିଥିବା ଜିନିଷ । ୪୩ । ଖେଳାଇବ ଭୁଲ-ବୋଝେଇ ସନ୍ତ୍ରାମ । ୪୪ । ଜଡ଼ା—ପାଦର ଅଳଙ୍କାର । ୪୫ । ତାମ୍ଭୁଳ ବଳୁଆ ବଟା—ପାନବଟା । ୪୬ । ଭୁସୁମ୍ବା ଘୋଡା—ଗଞ୍ଜେଇ ଘୋଟିବାର ପାତ୍ର । ୪୭ । ମୋହନାଗଞ୍ଜା

ଖଟଇ—ଗଣ୍ଡି'ଇ ଚଳିମ ଢ଼ିଆଣ କଣ ଯୋଗାଇ ଦେଉଛ । ୪୮ । ତମାଖ ବିଡ଼ା—ଧୂଆଁ-ପତ୍ର ବିଡ଼ା । ୪୯ । କଲି ଭଡ଼କା—ଗୁଡ଼ାଙ୍କୁ ହୁକା । ୫୦ । ସନ୍ତନ—ମାକିନ ଲୁଗା । ୫୧ । କୁଠୀ—କୁଷ୍ଠରୋଗଗ୍ରସ୍ତ । ୫୩ । କାମଲୀ—କାମଲ ରୋଗଗ୍ରସ୍ତ । ୫୪ । ବିମଙ୍କା—ଦୁର୍ବଳ । ୫୫ । ରୋଦଗ୍ରା—ଜଳୋଦର ରୋଗ ଗ୍ରସ୍ତ । ୫୬ । ଏକୁଆପଣ—ପାଳିଜ୍ୱର ଗ୍ରସ୍ତ । ୫୭ । ପିତ୍ତ ପାଗେଳା—ପାଗଳ । ୫୮ । ଆଁଆଁ ଗ୍ରନ୍ଥିକା—ମୂଣ୍ଡବୁଲା ରୋଗୀ । ୫୯ । କମଳ ଖସା—ହତଶ୍ରୀ । ୬୦ । କାନକୁଟର—କାନରେ ପୋକ କାଟୁଥିବା ରୋଗୀ । ୬୧ । ଦୁଲଣା—ଝିଅ । ୬୨ । ନିଜ ଆତ୍ମ ମେଳ କଥା କହୁ ଦେଇଯାଏ—ଯଦ୍ୱ ଆମ ମେଳ କଥା କହୁ ଦିଏ । ୬୩ । ପାଦତଳରେ—ତଳି ତଳି । ୬୪ । ଗୋସାଇଁ ନିଜ ଆତ୍ମ ମେଳ କହୁ ଦେଇଥାଇ—ଗୋସାଇଁ ଆତ୍ମ ମେଳ କଥା କହୁ ଦେଇଛନ୍ତି । ୬୫ । ଦଳ ଖାତରଜଣ—ମନବୋଧ । ୬୫ । ଦାରୁ ନିର୍ମାଣ ଭାଗ—ଜଗନ୍ନାଥ ମୂର୍ତ୍ତି ନିର୍ମାଣଭାଗ, ମଦ'ପ୍ରସ୍ତୁତଭାଗ । ୬୬ । ସୁରବଳଗ—ଦେବତାମାନଙ୍କର ଅଙ୍ଗପ୍ରତ୍ୟଙ୍ଗର ଭାଗମାପ, ମଦ୍ୟ ପ୍ରସ୍ତୁତ କରିବାପାଇଁ ଉପକରଣର ଭାଗମାପ । ୬୭ । ଅନୁରୂପ ଜାଣ—ଅନୁସାରେ । ୬୮ । ଦେବୀ-ପୂଜ—ତାନ୍ତ୍ରିକ । ୬୯ । ଉପାସନା ମାର୍ଗ—ପୂଜାର ପ୍ରଣାଳୀ । ୭୦ । ଝୀନବସନ—ପତଳା ଲୁଗା । ୭୧ । ନଅନ୍ତାଇଁ—ନଅନ୍ତେ । ୭୨ । ବାହାରକୁ ଯାଇଥିଲି—ଝାଡ଼ାଫେରିବା ନିମିତ୍ତ ଯାଇଥିଲି । ୭୩ । ବାହାର କରି ଦିଅଇ—ବାହାର କରିଦେବ । ୭୪ । ଉଠକା ହୋଇ—କାବାହୋଇ । ୭୫ । ଆପଣ ବଜେ କର—ଆପଣ ବଜେ କରନ୍ତୁ (ପ୍ରାଚୀନ ପ୍ରୟୋଗ) । ୭୬ । ଗୁଡ଼ିଆସେ—ଗୁଡ଼ିଆ । ୭୭ । ତରନ୍ତୁ—ଶୀଘ୍ର । ୭୮ । ନେହୁଟିବ—ଲେହୁଟିବ । ୭୯ । ଆମଞ୍ଜନ କରିବାକୁ—ଟାଣିବାକୁ । ୮୦ । ସେ ପଥ ନ ଚଳିଲା—ପଥ ବନ୍ଦ ହୋଇଗଲା । ୮୧ । ଆତଯାତ—ଯିବା ଆସିବା । ୮୨ । ସଜ—ସୁବିଧା । ୮୩ । ସାରଣା କରି—ବାଣ୍ଟି କରି । ୮୪ । ପ୍ରତିଷ୍ଠାପଣ ହେଲା—ପ୍ରତିଷ୍ଠା ସ୍ଥାପିତ ହେଲା । ୮୫ । ଖୁଣ୍ଟା—ଅପବାଦ । ୮୬ । ଜାତି ପଦ୍ମିନୀ—ପଦ୍ମିନୀ ଜାତୀୟା ସ୍ତ୍ରୀ । ୮୭ । ନିତ୍ୟାନ—ପ୍ରତିଦିନ । ୮୮ । ସମ୍ପୂର୍ଣ୍ଣ ମାସରେ—ମାସ ପୂରିବାରେ, ସନ୍ତୁଷ୍ଟ ହେବାରୁ । ୮୯ । କୁଆଁଏ—ଅଳ୍ପ ପରିମାଣରେ । ୯୦ । ମଧୁର ଲେବେ—ଦୁଗ୍ଧର ମଧୁରତା ଲୋଭରେ । ୯୧ । ଓଲିଳା—ଅମାନିଆ । ୯୨ । ସହ୍ୱ ନକଲା—ସମ୍ମତ ହେଲାନାହିଁ । ୯୩ । ଗୃହଡ଼ାଘର—ଚନ୍ଦ୍ରାଘର । ୯୪ । ଆତଯାତ କରିବୁ—ଦେବାନେବା କରିବୁ । ୯୫ । ଶାଢ଼ି ବାନ୍ଧେ—ପ୍ରାଚୀନ କାଳରେ ରାଜା ରାଜୁଡ଼ା ଶାସନରେ କୌଣସି ବ୍ୟକ୍ତିକୁ କୌଣସି ଦାୟିତ୍ୱ ଦିଆଯିବା ସମୟରେ ତା ମୁଣ୍ଡରେ ଏକ ଶାଢ଼ି ବନ୍ଧାଯାଏ । ୯୬ । ମେଳାପ କରି—ଘନିଷ୍ଠ ଭାବରେ ମିଳିକରି । ୯୭ । ଭିଆଣ—ବିଧାନ, ନିର୍ମାଣ । ୯୮ । ଦୁଃଖିତ ଜନେ—ଜଣେ ଦୁଃଖୀ । ୯୯ । ଭୂଷଣ ହୋଇ—ଭୂଷିତ ହୋଇ । ୧୦୦ । ଭୂଷଣମାଳ—ଅଳଙ୍କାର ସମୂହ । ୧୦୧ । ଅନୁଭବ୍ୟରେ—ସହଜରେ । ୧୦୨ । ବ୍ୟାପାର—ବ୍ୟବସାୟ । ୧୦୩ । ଗ୍ରନ୍ଥ ପ୍ରକାଶ ହେଲା—ଗ୍ରନ୍ଥ ଶେଷ ହେଲା ।